# ବିଚ୍ଛିନ୍ନାଞ୍ଚଳ ଓଡ଼ିଶାର ପୁନର୍ଗଠନ

ଡକ୍ଟର ଜନ୍ମେଜୟ ଚୌଧୁରୀ

ଯେଉଁ ମହାନ୍ ଐତିହ୍ୟ ଓ ସମୃଦ୍ଧ ସଂସ୍କୃତିର ଅଧିକାରୀ ଏହି ଉତ୍କଳ, ଏକଦା କେବଳ ଭାରତବର୍ଷରେ ନୁହେଁ, ସମଗ୍ର ପ୍ରାଚ୍ୟ ଭୂଖଣ୍ଡରେ ମହାଭାରତୀୟ ସଂସ୍କୃତିର ଭାବଧାରା ପ୍ରଚାର ଏବଂ ପ୍ରସାର କରିଥିଲା ଓ ଯେଉଁ ମାଟିର ଓଡ଼ିଆ ସାଧବପୁଅଙ୍କ ନୌବାଣିଜ୍ୟର ଗୌରବମୟ ସ୍ମୃତି ଏବେ ମଧ ଉଜ୍ଜୀବିତ, ସେହି ଉତ୍କଳ ୧୫୬୮ ଖ୍ରୀଷ୍ଟାବ୍ଦରେ ଆଫଗାନ୍‌ମାନଙ୍କ ଦ୍ୱାରା ଅଧିକୃତ ହେବା ଫଳରେ ତା'ର ସ୍ୱାଧୀନତା ପରାହତ ହୋଇଥିଲା । ପରେ ଯଥାକ୍ରମେ ମୋଗଲ ଓ ମରହଟ୍ଟାମାନେ ଏହାର ଶାସନ ଦାୟିତ୍ୱ ଗ୍ରହଣ କରିଥିଲେ । ୧୮୦୩ ମସିହାରେ ଏହା ଇଂରେଜମାନଙ୍କ ଦ୍ୱାରା ଅଧିକୃତ ହୋଇଥିଲା । ଓଡ଼ିଶାର ଶେଷ ସ୍ୱାଧୀନ ରାଜା ମୁକୁନ୍ଦ ଦେବଙ୍କ ପରେ ଓଡ଼ିଆ ଜାତିର ସ୍ୱାଧୀନତା ରବି ଅସ୍ତମିତ ହୋଇଯାଇଥିଲା । ପର୍ଯ୍ୟାୟକ୍ରମେ ଓଡ଼ିଶାକୁ ଏକ ସ୍ୱତନ୍ତ୍ର ପ୍ରଦେଶ ଓ ଓଡ଼ିଆକୁ ଏକ ସ୍ୱତନ୍ତ୍ର ଭାଷାର ମର୍ଯ୍ୟାଦା ଦେବାପାଇଁ ଓଡ଼ିଶାର ଯେଉଁ କୃତୀ ସନ୍ତାନ ନିରବଚ୍ଛିନ୍ନ ସଂଗ୍ରାମ କରିଥିଲେ, ସେମାନଙ୍କ ମଧ୍ୟରେ ଅଗ୍ରଗଣ୍ୟ ଥିଲେ ଉତ୍କଳଗୌରବ ମଧୁସୂଦନ ଦାସ, ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସ, ଶ୍ରୀଯୁକ୍ତ ଶଶୀଭୂଷଣ ରଥ, ବ୍ୟାସକବି ଫକୀର ମୋହନ ସେନାପତି, ପଣ୍ଡିତ ନୀଳମଣି ବିଦ୍ୟାରତ୍ନ, ସ୍ୱଭାବକବି ଗଙ୍ଗାଧର ମେହେର, ବାଗ୍ମୀ ବିଶ୍ୱନାଥ କର, ଶ୍ରୀଯୁକ୍ତ ଗୋପାଳ ଚନ୍ଦ୍ର ପ୍ରହରାଜ, ପାରଳାଖେମୁଣ୍ଡିର ମହାରାଜା କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବ, ମୟୂରଭଞ୍ଜର ମହାରାଜ ଶ୍ରୀରାମଚନ୍ଦ୍ର ଭଞ୍ଜ ଓ ପଣ୍ଡିତ ଗୋଦାବରୀଶ ମିଶ୍ର ପ୍ରଭୃତି । କର୍ମବୀର ଗୌରୀଶଙ୍କର ରାୟ ଓ ଉତ୍କଳଗୌରବ ମଧୁସୂଦନ ଦାସଙ୍କ ଉଦ୍ୟମକ୍ରମେ ବିଖଣ୍ଡିତ ଉତ୍କଳର ସୁରକ୍ଷା ଓ ଉନ୍ନତିକଳ୍ପେ ୧୮୬୮ ମସିହାରେ 'ଉତ୍କଳ ସଭା' ନାମରେ ଏକ ଅନୁଷ୍ଠାନ ଗଢ଼ି ଉଠିଥିଲା । ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ପାଇଁ ନବଜାଗରଣ ସୃଷ୍ଟି କରିବା ଥିଲା ଏହାର ଆଭିମୁଖ୍ୟ । ଏହାପରେ ଉତ୍କଳ ଗୌରବ ମଧୁସୂଦନ ଦାସଙ୍କର ପ୍ରଚେଷ୍ଟାରେ ଉତ୍କଳୀୟମାନଙ୍କର ଭାଷା ଓ ସଂସ୍କୃତିର ସୁରକ୍ଷା ପାଇଁ କଟକଠାରେ ୧୯୦୩ ମସିହାରେ ପ୍ରତିଷ୍ଠା କରାଗଲା 'ଉତ୍କଳ ସମ୍ମିଳନୀ' ଯାହାର ପରିସର 'ଉତ୍କଳ ସଭା'ଠାରୁ ସର୍ବବ୍ୟାପକ ଥିଲା । ୧୯୦୩ ମସିହାରୁ ୧୯୩୪ ମସିହା ପର୍ଯ୍ୟନ୍ତ ସମସ୍ତଙ୍କ ଆନ୍ତରିକ ପ୍ରଚେଷ୍ଟା ଫଳରେ ପ୍ରତ୍ୟେକ ଓଡ଼ିଆ ପ୍ରାଣରେ ଜାତିପ୍ରୀତିର ସ୍ୱାଭିମାନ ଭରି ଦେବା ତଥା ସମାଜରେ ନବଜାଗରଣ ଆଣିବା ଥିଲା ଏହି ସମ୍ମିଳନୀର ମୂଳ ଲକ୍ଷ୍ୟ । ଓଡ଼ିଶାର ବିଭିନ୍ନ ପ୍ରାନ୍ତରେ 'ଉତ୍କଳ ସମ୍ମିଳନୀ'ର ବାର୍ଷିକ ଅଧିବେଶନମାନ ଅନୁଷ୍ଠିତ ହୋଇ ଓଡ଼ିଆ ଭାଷାକୁ ବିଲୋପ କରିବାକୁ ଚକ୍ରାନ୍ତ କରୁଥିବା କେତେକ ସ୍ୱାର୍ଥନ୍ୱେଷୀଙ୍କ ହୀନ ଉଦ୍ୟମକୁ ପରାହତ କରି ଇଂରେଜ ପ୍ରଶାସନ ନିକଟରେ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ଦାବି ଉପସ୍ଥାପନ କରିବା ପାଇଁ ଏହି ସମ୍ମିଳନୀ ଯୋଜନା ପ୍ରସ୍ତୁତ କରୁଥିଲା ।



ଏହି ପରିପ୍ରେକ୍ଷୀରେ ୧୯୧୯ ମସିହାରେ ପାରଳାଖେମୁଣ୍ଡି ମହାରାଜା କୃଷ୍ଣଚନ୍ଦ୍ର ଗଜପତି ମଣ୍ଟେଗୁ-ଚେମସ୍‌ଫୋର୍ଡ଼ କମିଟିକୁ ସାକ୍ଷାତ କରି ମାନ୍ଦ୍ରାଜ ପ୍ରଦେଶରେ ଥିବା ଓଡ଼ିଆମାନଙ୍କୁ ସ୍ୱତନ୍ତ୍ର ମତଦାନର ସୁବିଧା ଦେବା ପାଇଁ ଦାବି ଉପସ୍ଥାପନ କରିଥିଲେ । ଏହାର ଫଳ ସ୍ୱରୂପ ମାନ୍ଦ୍ରାଜ ପ୍ରଦେଶରେ ଥିବା ଓଡ଼ିଆମାନେ ମାନ୍ଦ୍ରାଜ ଆସେମ୍ବ୍ଲିକୁ ୧୦ ଜଣ ପ୍ରତିନିଧିଙ୍କୁ ନିର୍ବାଚିତ କରିବା ପାଇଁ ସକ୍ଷମ ହେଲେ, କିନ୍ତୁ ଓଡ଼ିଆମାନଙ୍କୁ ଏକ ପ୍ରଦେଶାଧୀନ କରାଯିବା ଦାବିକୁ ମାନ୍ଦ୍ରାଜ ସରକାର ବିରୋଧ କଲେ । ୧୯୨୨ ମସିହାରେ ଉତ୍କଳଗୌରବ ମଧୁସୂଦନ ଦାସ ବିହାର-ଓଡ଼ିଶା ପ୍ରଦେଶର ମନ୍ତ୍ରୀ ଥିଲାବେଳେ ବିହାର-ଓଡ଼ିଶା ପ୍ରାଦେଶିକ କାଉନ୍‌ସିଲ୍‌ରେ ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ଏକ ପ୍ରଦେଶାଧୀନ କରାଯିବା ସପକ୍ଷରେ ଏକ ପ୍ରସ୍ତାବ ଗୃହୀତ ହୋଇଥିଲା । ତେଣୁ ୧୯୨୪ ମସିହାରେ ଭାରତ ସରକାର ତତ୍କାଳୀନ ଓଡ଼ିଶାର ପଲିଟିକାଲ୍ ଏଜେଣ୍ଟ ସି.ଆଇ. ଫିଲିପ୍ ଏବଂ ବିଶାଖାପାଟଣା ଜିଲ୍ଲାର କଲେକ୍ଟର ଏ.ସି. ଡଫ୍‌ଙ୍କୁ ନେଇ ଫିଲିପ୍ ଡାଫ୍ କମିଟି ଗଠନ କରିଥିଲେ । ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ଏକ ପ୍ରଦେଶାଧୀନ କରାଯିବା ସମ୍ଭାବନାର ସମୀକ୍ଷା କାର୍ଯ୍ୟ ଏହି କମିଟି ଉପରେ ନ୍ୟସ୍ତ କରାଗଲା । ବିଶାଖାପାଟଣା

ଓ ଗଞ୍ଜାମ ଜିଲ୍ଲାକୁ ଏହି କମିଟି ଗସ୍ତ କରି ପାରଳାଖେମୁଣ୍ଡି ମହାରାଜାଙ୍କୁ ସାକ୍ଷାତ କଲେ । ଗଜପତି କୃଷ୍ଣଚନ୍ଦ୍ର ସେମାନଙ୍କୁ ମଣ୍ଟେଗୁ-ଚେମ୍ସଫୋର୍ଡ କମିଟିର ସୁପାରିଶକ୍ରମେ ସମସ୍ତ ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ଏକ ପ୍ରଦେଶରେ ମିଶ୍ରଣ କରିବା ସପକ୍ଷରେ ପ୍ରଭାବିତ କରିଥିଲେ । ଜୟପୁର, ମଞ୍ଜୁଷା, ଟେକେଲି ଓ ଜଳନ୍ତରାର ରାଜାମାନେ ଗଜପତିଙ୍କ ସହିତ ଏକମତ ହୋଇ କମିଟିଙ୍କଠାରେ ଏଭଳି ଦାବି କଲେ । ଏହାର ଯଥାର୍ଥତା ହୃଦୟଙ୍ଗମ କରି କମିଟି ମାନ୍ଦ୍ରାଜ ପ୍ରଦେଶରେ ଥିବା ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ଏକତ୍ର କରିବାକୁ ମତ ପ୍ରଦାନ କରିଥିଲେ । ଏହା ଥିଲା ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ଏକତ୍ର କରାଯିବା ପାଇଁ ପ୍ରାଥମିକ ସରକାରୀ ସୁପାରିଶ ।

୧୯୨୮ ମସିହା ଫେବୃଆରୀ ମାସରେ ସାଇମନ୍ କମିଶନ ଭାରତ ପରିଦର୍ଶନ କରିଥିଲେ । ଉତ୍କଳଗୌରବ ମଧୁସୂଦନ ଦାସ ପାଟଣାଠାରେ ଏହି କମିଶନଙ୍କୁ ସାକ୍ଷାତ କରି ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ନେଇ ଏକ ପ୍ରଦେଶ ଗଠନ କରିବାକୁ ଦାବି ଉପସ୍ଥାପନ କରିଥିଲେ । ସେହି ବର୍ଷ ପାରଳାଖେମୁଣ୍ଡିର ମହାରାଜା କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବ ମାନ୍ଦ୍ରାଜଠାରେ ଏହି କମିଶନ୍ ନିକଟରେ ଅନୁରୂପ ଦାବି ଉପସ୍ଥାପନ କରିଥିଲେ ଏବଂ କମିଶନଙ୍କ ସହିତ ସହଯୋଗ କରିବା ପାଇଁ ଓଡ଼ିଆ ଜାତିକୁ ଆହ୍ୱାନ ଦେଇଥିଲେ । ମହାରାଜା କୃଷ୍ଣଚନ୍ଦ୍ର ଗଜପତିଙ୍କ ପରାମର୍ଶକ୍ରମେ ଶଶୀଭୂଷଣ ରଥ ଏବଂ ବ୍ରଜସୁନ୍ଦର ଦାସ ମଧ କମିଶନ୍‌ଙ୍କଠାରେ ଅନୁରୂପ ସ୍ମାରକପତ୍ର ପ୍ରଦାନ କରିଥିଲେ । କମିଶନ୍ ଓଡ଼ିଆବାସୀଙ୍କର ପ୍ରକୃତ ଦାବିର ପରୀକ୍ଷାନିରୀକ୍ଷା କରି ତାଙ୍କ ମତାମତରେ ଉଲ୍ଲେଖ କଲେ ଯେ, ଓଡ଼ିଆ ଭାଷାଭାଷୀ ଅଞ୍ଚଳମାନଙ୍କର ଏକତ୍ରିକରଣରେ ଏକ ସ୍ୱତନ୍ତ୍ର ପ୍ରଦେଶ ଦାବି ଯଥାର୍ଥ, ଓଡ଼ିଆ ଭାଷାଭାଷୀ ସମସ୍ତ ଜମିଦାରୀ ଓ ଗଡ଼ଜାତ ରାଜାମାନଙ୍କୁ ମଧ ପରିକଳ୍ପିତ ଓଡ଼ିଆ ପ୍ରଦେଶ ସହିତ ମିଶ୍ରଣ କରାଯିବା ଉଚିତ । ଏହି କମିଶନର ସୁପାରିଶକ୍ରମେ ଓଡ଼ିଶାର ସୀମା ନିର୍ଦ୍ଧାରଣ ପାଇଁ ଏକ କମିଟି ସି.ଆର୍. ଅଟଲୀଙ୍କ ଅଧ୍ୟକ୍ଷତାରେ ଗଠନ କରାଯାଇଥିଲା ଯାହାକି ଅଟଲୀ ସବ୍‌କମିଟି ନାମରେ ପ୍ରସିଦ୍ଧ ଥିଲା । ସ୍ୱତନ୍ତ୍ର ଉତ୍କଳପ୍ରଦେଶ ଗଠନ ପାଇଁ ଏହି କମିଟି ଅନୁକୂଳ ମତପ୍ରଦାନ କରି ଅନୁଗୁଳ, ବଙ୍ଗପ୍ରଦେଶର ମିଦିନାପୁର ଆଦି ଅଞ୍ଚଳ, ମାନ୍ଦ୍ରାଜ ପ୍ରେସିଡେନ୍‌ସିର ଗଞ୍ଜାମ ଏବଂ ମଧ୍ୟପ୍ରଦେଶ ସରକାରଙ୍କ ଅଧୀନସ୍ଥ ଖଡ଼ିଆଳ ଆଦି ଅଞ୍ଚଳ ଓଡ଼ିଶା ସହିତ ମିଶିବା ଉଚିତ ବୋଲି ଦର୍ଶାଇଥିଲେ । ତତ୍‌ସହିତ ଓଡ଼ିଶାର ସୀମା ନିର୍ଦ୍ଧାରଣ କରିବା ପାଇଁ ଏହି କମିଟି ଇଂରେଜ ସରକାରଙ୍କୁ ପ୍ରସ୍ତାବ ଦେଇଥିଲା । ଅନ୍ୟ ସମସ୍ତ ପ୍ରାଦେଶିକ ସରକାରମାନେ ଅଟଲୀ ସବ୍‌କମିଟିର ପ୍ରସ୍ତାବକୁ ମାନି ଏହାକୁ କାର୍ଯ୍ୟକାରୀ କରିବାକୁ ମନସ୍ଥ କରିଥିଲାବେଳେ ମାନ୍ଦ୍ରାଜ ସରକାର ଏହାକୁ ବିରୋଧ କରିଥିଲେ । ଅଟଲୀ ସବ୍‌କମିଟି ବିବରଣୀ ଓଡ଼ିଆବାସୀଙ୍କ ମନରେ ନୂତନ ଉନ୍ମାଦନା ସୃଷ୍ଟି କରିଥିଲା ।

ଆଇନଅମାନ୍ୟ ଆନ୍ଦୋଳନ ପରେ ୧୯୩୦ ମସିହାରେ ଲଣ୍ଡନଠାରେ ଆୟୋଜିତ ପ୍ରଥମ ଗୋଲଟେବୁଲ ବୈଠକରେ ଓଡ଼ିଆମାନଙ୍କ ପ୍ରତିନିଧିତ୍ୱ କରିବା ପାଇଁ ବିହାର-ଓଡ଼ିଶା ସରକାର ପାରଳାଖେମୁଣ୍ଡିର ରାଜା ମହାରାଜା କୃଷ୍ଣଚନ୍ଦ୍ର ଗଜପତିଙ୍କୁ ମନୋନୀତ କରିଥିଲା । ଏହି ବୈଠକରେ ଓଡ଼ିଆମାନଙ୍କ ନ୍ୟାଯ୍ୟ ଦାବିକୁ ଦୃଢ଼ ଭାବରେ ଉପସ୍ଥାପନ କରି ମହାରାଜା ଏକ ଆବେଗପୂର୍ଣ୍ଣ ବିବୃତ୍ତି ପାଠ କରିଥିଲେ । ଯାହାର ଫଳ ସ୍ୱରୂପ ୧୯୩୧ ମସିହାରେ ଅନୁଷ୍ଠିତ ଦ୍ୱିତୀୟ ଗୋଲଟେବୁଲ ବୈଠକରେ ଓଡ଼ିଶାକୁ ଏକ ସ୍ୱତନ୍ତ୍ର ପ୍ରଦେଶ ରୂପେ ଗଠନ କରିବା ପ୍ରସ୍ତାବ ଗୃହୀତ ହୋଇଥିଲା । ଏଥି ଅନୁଯାୟୀ ଭାରତ ସରକାର ଓଡ଼ିଶା ପ୍ରଦେଶର ସୀମା ନିର୍ଦ୍ଧାରଣ କରିବା ପାଇଁ ଓଡେନେଲ୍ କମିଟି ଗଠନ କଲେ, ଯେଉଁ କମିଟି ୧୯୩୨ରେ କଟକ, ପୁରୀ, ସମ୍ବଲପୁର, ଅନୁଗୁଳ, ଖଡ଼ିଆଳ, ଗଞ୍ଜାମ ଓ ବିଶାଖାପାଟଣା ଜିଲ୍ଲାର ବିସ୍ତୃତ ଅଞ୍ଚଳ ମିଶ୍ରଣର ଓଡ଼ିଶା ପ୍ରଦେଶ ଗଠନ ସପକ୍ଷରେ ମତ ଦେଲେ କିନ୍ତୁ ଇଣ୍ଡିଆ ଅଫିସ୍ ତରଫରୁ ପ୍ରକାଶିତ ଶ୍ୱେତପତ୍ରରେ ଜୟପୁର ଓ ପାରଳାଖେମୁଣ୍ଡି ଜମିଦାରୀଙ୍କୁ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ପରିକଳ୍ପନାରୁ ବାଦ୍ ଦିଆଯାଇଥିଲା । ତେଣୁ ଗଜପତି କୃଷ୍ଣଚନ୍ଦ୍ରଙ୍କ ଅବିରତ ନିଷ୍ଠାପର ଉଦ୍ୟମ ଫଳରେ ବିଲାତରେ ଗୃହ ମନ୍ତ୍ରୀ ସାମୁଏଲ ହୋରେ ଓଡ଼ିଆ ଆନ୍ଦୋଳନର ଯଥାର୍ଥତା ହୃଦୟଙ୍ଗମ କରି ଜଏଣ୍ଟ ପାର୍ଲାମେଣ୍ଟ ଗଠନ କରାଇ ପରିକଳ୍ପିତ ଓଡ଼ିଶା ପ୍ରଦେଶ ଗଠନର ପୁନର୍ବିଚାର କରାଇଲେ । ଜୟପୁର ଜମିଦାରୀ, ପାରଳାଖେମୁଣ୍ଡି ଓ ଜଳନ୍ତରା ଜମିଦାରୀ ଅଞ୍ଚଳ, ପାରଳାଖେମୁଣ୍ଡି ସହର ସମେତ କିଛି ଅଂଶର ସମ୍ମିଶ୍ରଣରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ହେବ ବୋଲି ୧୯୩୨ ମସିହାରେ କମିଟି ମତ ଦେଲେ । ଫଳରେ ନୂତନ ଓଡ଼ିଶା ପ୍ରଦେଶ ପରିକଳ୍ପନା ବାସ୍ତବ ରୂପ ଧାରଣ କଲା । ୧୯୩୫ ମସିହାରେ ପ୍ରଣୀତ 'ଭାରତ ଶାସନ ଆଇନ'ର ୨୮୯ ଧାରାରେ ଓଡ଼ିଶା ଏବଂ ସିନ୍ଧୁ ପ୍ରଦେଶ ଦ୍ୱୟକୁ ଦୁଇଟି ନୂତନ ପ୍ରଦେଶ ଭାବରେ ସ୍ୱୀକୃତ ପ୍ରଦାନ କରାଯାଇଥିଲା । ମାନ୍ଦ୍ରାଜ, ସେଣ୍ଟ୍ରାଲ ପ୍ରୋଭିନ୍ସ ଓ ବିହାରର ଓଡ଼ିଆ ଭାଷା ଅଞ୍ଚଳମାନଙ୍କର ମୂଳ ଓଡ଼ିଶା ଭୂଖଣ୍ଡର ସମ୍ମିଶ୍ରଣରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠିତ ହେଲା । କଟକ, ପୁରୀ, ବାଲେଶ୍ୱର, ସମ୍ବଲପୁର, ଗଞ୍ଜାମ ଓ କୋରାପୁଟ ଜିଲ୍ଲାଗୁଡ଼ିକ ଏଥିରେ ସାମିଲ ହେଲା । ୧୯୩୬ ମସିହା ଜାନୁଆରୀ ୨୧ ତାରିଖରେ ଭାରତ ସରକାରଙ୍କ ଆଦେଶ ଓଡ଼ିଶା ପ୍ରଦେଶ ଗଠନ ସଂକ୍ରାନ୍ତୀୟ ଇଂଲଣ୍ଡ ପାର୍ଲାମେଣ୍ଟରେ ଉପସ୍ଥାପିତ ହୋଇ ଗୃହୀତ ହେବା ପରେ ପୁନଃ ପାର୍ଲାମେଣ୍ଟର ଉଭୟ ଗୃହରେ ଗୃହୀତ ହେଲାପରେ ୧୯୩୬ ମସିହା ମାର୍ଚ୍ଚ ୭ ତାରିଖରେ ବିଲାତ ସମ୍ରାଟଙ୍କର ଅନୁମୋଦନ ନିମନ୍ତେ ଉପସ୍ଥାପନ କରାଗଲା । ଏଠାରୁ ଅନୁମୋଦନ ଲାଭ ହେଲା ପରେ ଏହା ୧୯୩୬ ମସିହା ଏପ୍ରିଲ ୧ ତାରିଖରେ କାର୍ଯ୍ୟକାରୀ ହେଲା ଏବଂ ସେହି ଦିନ 'ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ' ଆତ୍ମପ୍ରକାଶ କଲା ।

ଓଡ଼ିଆ ଭାଷାଭାଷୀ ଲୋକଙ୍କର ଅନେକ ଦିନର ଆଶା ଓ ଆକାଂକ୍ଷା ପୂରଣ ହେଲା ।

ମହାରାଜା କୃଷ୍ଣଚନ୍ଦ୍ର ଗଜପତିଙ୍କର ସ୍ୱପ୍ନ ବାସ୍ତବରେ ପରିଣତ ହୋଇଥିଲା । ଓଡ଼ିଶା ଏକ ସ୍ୱତନ୍ତ୍ର ପ୍ରଦେଶରେ ପରିଣତ ହୋଇଥିଲା । ୧୯୩୬ ମସିହାରେ ନିର୍ବାଚନରେ କଂଗ୍ରେସ ସଂଖ୍ୟାଗରିଷ୍ଠ ହାସଲ କରିଥିଲା ମାତ୍ର ପୂର୍ବ ନିର୍ଦ୍ଧାରିତ ନୀତି ଦୃଷ୍ଟିରୁ ଏହା ସରକାର ଗଠନ କରିନଥିଲା । କଂଗ୍ରେସ ପାର୍ଟି ସହିତ ଆଲୋଚନା ବିଫଳ ହେଲାପରେ ରାଜ୍ୟପାଳ ଜାତୀୟ ପାର୍ଟିର ସଭାପତି କୃଷ୍ଣଚନ୍ଦ୍ର ଗଜପତିଙ୍କୁ ସରକାର ଗଠନ ପାଇଁ ଆମନ୍ତ୍ରଣ କରିଥିଲେ, ଯେ ଥିଲେ ନବ ଉତ୍କଳର ପ୍ରଥମ ପ୍ରଧାନମନ୍ତ୍ରୀ । ନବଉତ୍କଳର ନିର୍ମାଣ ନିମିତ୍ତ ସେ ନିଜର ମନପ୍ରାଣ ଢାଳି ଦେଇଥିଲେ ।

ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନର ଇତିହାସ ବାସ୍ତବିକ ସଂଘର୍ଷମୟ । ଏହି ସଂଘର୍ଷମୟ ଗରୀୟାନ ଅତୀତର ସ୍ମୃତି ପ୍ରତ୍ୟେକ ଓଡ଼ିଆ ପ୍ରାଣରେ ଉନ୍ମାଦନା ସୃଷ୍ଟି କରି ଚାଲିଥିବ ଅନନ୍ତକାଳ ପାଇଁ । ଓଡ଼ିଆ ନେତାମାନଙ୍କ ପ୍ରାଣମୂର୍ଚ୍ଛା ଉଦ୍ୟମ ଫଳରେ ସ୍ୱତନ୍ତ୍ର ଓଡ଼ିଶାର ଗଠନ କାର୍ଯ୍ୟ ସମ୍ଭବ ହୋଇପାରିଥିଲା । ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ଓ ଓଡ଼ିଆ ଭାଷା, ସାହିତ୍ୟ ଓ ସଂସ୍କୃତିର ବିକାଶ ଦିଗରେ ଉତ୍କଳମାତାଙ୍କର ଯେଉଁ ବରପୁତ୍ରମାନେ ଅସୀମ ତ୍ୟାଗ ଓ ସାହସର ପରିଚୟ ଦେଇଛନ୍ତି, ଉତ୍କଳ ଜନନୀଙ୍କର ସେହି କୃତୀ ସନ୍ତାନ ଆମର ବନ୍ଦନୀୟ ଓ ଚିରସ୍ମରଣୀୟ ।

ଇତିହାସ ବିଭାଗ
ଶ୍ରୀଜଗନ୍ନାଥ ମହାବିଦ୍ୟାଳୟ
କାଇପଦର, ଖୋର୍ଦ୍ଧା

---

# 'ବନ୍ଦେ ଉତ୍କଳ' ସାରସ୍ୱତ ଶୁଭଲଗ୍ନରେ

ପଣ୍ଡିତ ଜଗନ୍ନାଥ ଶତପଥୀ

କଳା-କଳପନା-ମଞ୍ଜୁଳ କଳ କଲ୍ଲୋଳ ମଧୁସ୍ରାବିଣୀ
ଭାରତୀ-ବଲ୍ଲକୀ-ଧ୍ୱନି-ବିଧୂନିତ ବନ୍ଦିତ ବିଶ୍ୱ-ଭାବିନୀ
ଭାଷା ଜନନୀ,
ରସହାସ ଭାସ ଭାବ ବିଳାସରେ ମଣ୍ଡିତା ସର୍ବମୋହିନୀ ॥
ସ୍ୱାଭିମାନ ପାଇଁ ରାଷ୍ଟ୍ର ନିରିମାଣ ଥିଲା ଯା ଦର୍ପିତ ଆହ୍ୱାନ
ଭାଷା ଭିତ୍ତିରେ ସ୍ୱତନ୍ତ୍ର ଓଡ଼ିଶା ଥିଲା ଯା ମାନସ ମନ୍ଥନ
ନବ ସ୍ପନ୍ଦନ
ମନ୍ଦ୍ରିତ ସ୍ୱରେ ଝଙ୍କାର ତୋଳି ବିଶ୍ୱକୁ କଲା ସମ୍ମୋହନ ॥
ପଞ୍ଚସଖାଠାରୁ ଭଞ୍ଜ ରବି କବି କେତେ ଯେ ଭାରତୀ ନନ୍ଦନ
ଗଙ୍ଗାଧର ମଧୁ ନନ୍ଦକିଶୋର ମାନସିଂହ ରାଧାମୋହନ
ବିଶ୍ୱବନ୍ଦନ,
ଭାଷା ବିନ୍ୟାସରେ ଜନମାନସରେ ଯାହାଙ୍କ କୀରତି ଅମ୍ଳାନ ॥
ବାଣୀ ବଇଭବେ କଳା ସଉରଭେ ଗିରି-ଦରୀ ଯାର ମୁଖର
ସେହି ମା ଉତ୍କଳ କାନ୍ତ ଛବିଳ ମହିମା ଯା ଚିର ବର୍ଣ୍ଣିଳ,
ଭବେ ଅତୁଳ,
ମହୋଦଧି କୂଳେ ଶ୍ରୀମନ୍ଦିର ଚୂଳେ ଉଡ଼େ ବାନା ଯାର ଉତ୍ତାଳ ॥
ସ୍ମୃତିପଟେ ଭାସେ ଆଜିର ଦିବସେ କୁଳବୃଦ୍ଧ ଗୌରୀ ଶଙ୍କର
ଫକୀରମୋହନ ରାଜା କୃଷ୍ଣଚନ୍ଦ୍ର, ଅବଦାନ ଯା'ଙ୍କ ଭାସ୍ୱର,
ନୁହେଁ ବିସ୍ମର,
କେତେ ମହାରଥୀ ସାରସ୍ୱତ ରଥୀ ସାଧନା ତାଙ୍କ ଦୁର୍ବାର ॥
ଏ ଜାତିର ସ୍ୱପ୍ନ ତଥାପି ଅଧୁରା ଆଜିର ଏ ପୁଣ୍ୟ ବାସରେ
ଆସ ଆସ ମୋର ଭାଇ ଓ ଭଉଣୀ ଏ ତିଥିର ଭବ୍ୟ ଆସରେ,
ଐକ୍ୟ ତାନରେ
ଗାଇବା ଜନନୀ 'ବନ୍ଦେ ଉତ୍କଳ', ସାରସ୍ୱତ ଶୁଭ ଲଗ୍ନରେ ॥

ଚନ୍ଦ୍ରାଳୟ, ସେକ୍ଟର ଛକ, କଟକ-୮

# ଭାରତୀୟ ପ୍ରେକ୍ଷାପଟରେ ଆମ ମାତୃଭାଷା

ଗୁରୁକଲ୍ୟାଣ ମହାପାତ୍ର

ଆମ ଓଡ଼ିଆମାନଙ୍କର ମାତୃଭାଷା ସେହି ଓଡ଼ିଆ ତ ? ଆମେ ଏବେ ଏକବିଂଶ ଶତାବ୍ଦୀର ପାଦଦେଶରେ ଥିବା ସମୟରେ ଆପଣା ମାତୃଭାଷାର ସୁରକ୍ଷା ଓ ଉନ୍ନତି ବିଷୟରେ ଚିନ୍ତା କରିବା ସ୍ୱାଭାବିକ । ମାତ୍ର ଏ କଥା ଚିନ୍ତା କରିବା ସମୟରେ ଆମ ଦେଶ ବା ରାଷ୍ଟ୍ର ଭାରତବର୍ଷର ରାଷ୍ଟ୍ରଭାଷା ହିନ୍ଦୀ, ଅନ୍ୟାନ୍ୟ ରାଜ୍ୟର, ବିଶେଷ କରି ପଡ଼ୋଶୀ ରାଜ୍ୟଗୁଡ଼ିକର ମାତୃଭାଷା କିମ୍ବା ଆମେ ଅଧିକ ନିର୍ଭରଶୀଳ ହୋଇ ପଡ଼ିଥିବା ଇଂରାଜୀ ଭାଷାର କଥା ମଧ୍ୟ ଆମର ସାଧାରଣତଃ ଦୃଷ୍ଟି ପଥାରୂଢ଼ ହୋଇଥାଏ ।

ଆମ ସମ୍ବିଧାନର ଅଷ୍ଟମ ସୂଚୀରେ ପ୍ରଥମେ ୧୫ଟି ଆଞ୍ଚଳିକ ଭାରତୀୟ ଭାଷା ସନ୍ନିବିଷ୍ଟ ଥିଲା । ସେଗୁଡ଼ିକ ହେଲା - ଆସାମୀ, ବଙ୍ଗଳା, ଗୁଜରାଟୀ, ହିନ୍ଦୀ, କାନାଡ଼ା, କାଶ୍ମୀରୀ, ମାଲୟାଲାମ, ମରାଠୀ, ଓଡ଼ିଆ, ପଞ୍ଜାବୀ, ସଂସ୍କୃତ, ତାମିଲ, ତେଲୁଗୁ, ଉର୍ଦ୍ଦୁ ଓ ସିନ୍ଧି । ମାତ୍ର ୧୯୯୨ରେ ୭୧ତମ ସମ୍ବିଧାନ ସଂଶୋଧନ ପରେ କୋନ୍‌କୋନି, ମଣିପୁରୀ ଓ ନେପାଳୀ ଏହି ତିନୋଟି ଭାଷାକୁ ପୁଣି ସମ୍ବିଧାନର ଅଷ୍ଟମ ସୂଚୀରେ ଅନ୍ତର୍ଭୁକ୍ତ କରାଗଲା । ଅନୁରୂପ ଭାବେ ଗତ ତିନିବର୍ଷ ତଳେ ଅର୍ଥାତ୍ ୨୦୦୩ରେ ଆଉ ଚାରୋଟି ଭାଷା ଯଥା- ବୋଡ଼ୋ, ମୈଥିଲି, ଡୋଗ୍ରି ଓ ସାନ୍ତାଳୀକୁ ମଧ୍ୟ ସେହି ଅଷ୍ଟମ ସୂଚୀରେ ସଂଯୁକ୍ତ କରାଯାଇଥିଲା । ତେଣୁ ଭାରତରେ ଏବେ ସ୍ୱୀକୃତିପ୍ରାପ୍ତ ଆଞ୍ଚଳିକ ଭାଷାଗୁଡ଼ିକର ସଂଖ୍ୟା ୨୨ । ମୂଳରୁ ସ୍ୱୀକୃତିପ୍ରାପ୍ତ ଭାଷା ଭାବେ ଓଡ଼ିଆ ରହି ଆସିଛି ।

ଆମର ଶାସନ ବିଧାୟକ ସଭାରେ ସମ୍ବିଧାନ ପ୍ରଣେତାମାନଙ୍କ ମଧ୍ୟରେ ଭାରତର ରାଷ୍ଟ୍ରଭାଷା ହିନ୍ଦୀ ହେବ ନା ଇଂରାଜୀ ହେବ, ସେ ନେଇ କୁଆଡ଼େ ତୀବ୍ର ମତଭେଦ ସୃଷ୍ଟି ହୋଇଥିଲା । ସେ ଯାହା ହେଉ, ସମ୍ବିଧାନର ୩୪୩ ଅନୁଚ୍ଛେଦ ଅନୁଯାୟୀ ଉଲ୍ଲେଖ ରହିଛି ଯେ ଦେବନାଗରୀ ଲିପିରେ ଲିଖିତ ହିନ୍ଦୀ ହିଁ ଭାରତର ରାଷ୍ଟ୍ରଭାଷା । କିନ୍ତୁ ସମ୍ବିଧାନ ପ୍ରଚଳିତ ହେବାର ପନ୍ଦର ବର୍ଷ ପର୍ଯ୍ୟନ୍ତ ଇଂରାଜୀ ସରକାରୀ ଭାଷା ଭାବରେ ବ୍ୟବହାର କରାଯିବାକୁ ମଧ୍ୟ ସୂଚନା ଦିଆଯାଇଥିଲା । ସରକାରୀ କାର୍ଯ୍ୟରେ ବ୍ୟବହୃତ ସଂଖ୍ୟାଗୁଡ଼ିକ ଭାରତୀୟ ସଂଖ୍ୟାର ଆନ୍ତର୍ଜାତୀୟ ରୂପ ପରିଗ୍ରହ କରିବା ବିଷୟରେ ମଧ୍ୟ ସମ୍ବିଧାନରେ ସୂଚନା ରହିଛି ।

ସେ ଯାହା ହେଉ, ଆମ ମାତୃଭାଷା ଓଡ଼ିଆ ହୋଇଥିଲେ ମଧ୍ୟ ସହରବାସୀ ଶିକ୍ଷିତ ଓଡ଼ିଆମାନେ ହିନ୍ଦୀ ସିନେମା ପ୍ରଭାବରୁ ହିନ୍ଦୀ କିମ୍ବା ଇଂରାଜୀ ମାଧ୍ୟମ ଶିକ୍ଷାଦାନ କାରଣରୁ ଇଂରାଜୀ ଭାଷା ଉପରେ ଅତ୍ୟଧିକ ନିର୍ଭରଶୀଳ ହୋଇ ପଡ଼ିଥିବା ପରିଲକ୍ଷିତ ହୋଇଥାଏ । ଏପରିକି ଏବେ ସହର ବଜାରରେ ଅନୁଷ୍ଠିତ ପୁସ୍ତକମେଳାମାନଙ୍କରେ ଶିକ୍ଷିତ ଓଡ଼ିଆ ଲୋକଙ୍କର ଭିଡ଼ ପରିଲକ୍ଷିତ ହୋଇଥିଲେ ମଧ୍ୟ ବୁଲି ବୁଲି ସେହି ଶିକ୍ଷିତ ଓଡ଼ିଆମାନେ ଇଂରାଜୀ ଓ ବୈଷୟିକ ବା ବିଜ୍ଞାନ ସମ୍ମତ ପୁସ୍ତକ ଏପରିକି ପାଠ୍ୟପୁସ୍ତକ କ୍ରୟ କରୁଥିବା ଦେଖାଯାଏ । ଓଡ଼ିଆ ଭାଷାରେ ପ୍ରକାଶିତ ସାହିତ୍ୟ ପୁସ୍ତକର ବିକ୍ରୀ ବିଶେଷ ଭାବେ ପୁସ୍ତକମେଳାମାନଙ୍କରେ ହୋଇ ନଥାଏ - ଯଦିଓ ଶିକ୍ଷିତ ଓ ଆଭିଜାତ୍ୟ ଗୋଷ୍ଠୀର କେହି କେହି ଓଡ଼ିଆ ଲେଖକ ବା ଅଧ୍ୟାପକ ଓଡ଼ିଆ ଭାଷାର ପୁସ୍ତକ ସେହି ମେଳାରୁ କ୍ରୟ କରିଥାନ୍ତି ।

କିନ୍ତୁ ଭାରତର ରାଷ୍ଟ୍ରଭାଷା ହିନ୍ଦୀ ବା ଆନ୍ତର୍ଜାତୀୟ ସ୍ତରରେ ଏପରିକି ଜାତୀୟ ସ୍ତରରେ ସଂଯୋଗକାରୀ ଭାଷା ଇଂରାଜୀ ସହିତ ସଂପର୍କ ରକ୍ଷା କରି ଶିକ୍ଷିତ ଓଡ଼ିଆ ଛାତ୍ରଛାତ୍ରୀମାନେ ବିଭିନ୍ନ ଜାତୀୟ ଓ ଆନ୍ତର୍ଜାତୀୟ ପ୍ରତିଯୋଗିତାରେ ସଫଳ ହୋଇଥିବା ଏକ ଶୁଭ ଲକ୍ଷଣ । ଆମ ସମ୍ବିଧାନର ୩୫୧ ଅନୁଚ୍ଛେଦ ଅନୁଯାୟୀ ଭାରତରେ ଏକ ମିଶ୍ରିତ ସଂସ୍କୃତି ଓ ଭାଷାପ୍ରତି ଦୃଷ୍ଟି ଦେଇ ଭାରତ ସରକାର ହିନ୍ଦୀ ଭାଷାର ଉନ୍ନତି କରିବା ଦରକାର । ଏଥିପାଇଁ ଭାରତ ସରକାର ସଂସ୍କୃତ ଓ ଆଞ୍ଚଳିକ ଭାଷାଗୁଡ଼ିକରୁ ଶବ୍ଦ ପ୍ରଭୃତି ଆହରଣ କରି ରାଷ୍ଟ୍ରଭାଷା ହିନ୍ଦୀକୁ ସମୃଦ୍ଧ କରିବା ବିଷୟ ମଧ୍ୟ ଏହି ଅନୁଚ୍ଛେଦରେ ସୂଚିତ ହୋଇଛି । କିନ୍ତୁ ଓଡ଼ିଶାରେ ଥିବା ଭାରତ ସରକାରଙ୍କର ପ୍ରତ୍ୟକ୍ଷ ବା ପରୋକ୍ଷ ସଂସ୍ଥାଗୁଡ଼ିକ ହିନ୍ଦୀ ବା ରାଷ୍ଟ୍ରଭାଷା ସପ୍ତାହ ପାଳନ ନାମରେ ଅର୍ଥ ବ୍ୟୟ କରି ଆସୁଥିଲେ ମଧ୍ୟ ହିନ୍ଦୀ ବା ଓଡ଼ିଆ ଭାଷାର ଉନ୍ନତି କ୍ଷେତ୍ରରେ ତାହା ସହାୟକ ହେଉ ନାହିଁ ବୋଲି ପ୍ରାୟ ଅଧିକାଂଶ ଅନୁଭବ କରିଥିବେ ।

ଅନୁଧ୍ୟାନରୁ ଜଣାଯାଇଛି ଯେ ଭାରତରେ ରାଷ୍ଟ୍ରଭାଷା ହିନ୍ଦୀକୁ ବାଦ ଦେଲେ ଏବେ ପ୍ରାୟ ୧୬୫୨ଟି ମାତୃଭାଷା ରହିଛି । ମାତ୍ର ସେଥିମଧ୍ୟରୁ ୩୩ଟି ଭାଷାକୁ ଲକ୍ଷେ ବା ତଦୁର୍ଦ୍ଧ୍ୱ ଲୋକେ କଥିତ ଭାଷା ଭାବେ ବ୍ୟବହାର କରିଥାନ୍ତି । କିନ୍ତୁ ଓଡ଼ିଶା ସମେତ ଭାରତର ଅଧିକାଂଶ ଶିକ୍ଷିତ ଲୋକେ ପାଠ୍ୟପୁସ୍ତକର ଭାଷା ବା ସଂଯୋଗକାରୀ ଭାଷା ଭାବେ ଇଂରାଜୀ ଭାଷାର ଅଧିକ ପ୍ରଚଳନ କରିଥିବା ଦେଖାଯାଏ । ଏପରିକି ଅତୀତରେ କେହି କଲିକତା ମହାନଗରରେ 'ହିନ୍ଦୀ' ବା ଇଂରାଜୀ ଭାଷାରେ କିଛି ପଚାରୁଥିଲେ ଘୋର ଅସୁବିଧାର ସମ୍ମୁଖୀନ ହେଉଥିଲେ । ଏବେ ଆଉ ସେ ପରିସ୍ଥିତି ନାହିଁ । କଲିକତା ଏବେ କୋଲକାତା । ସେଠି ବଙ୍ଗଳା ସମେତ ହିନ୍ଦୀ ଓ ଇଂରାଜୀ ଭାଷାର ପ୍ରଚଳନ ଏବେ ଅଧିକ ।

୧୯୯୧ ମସିହାର ଜନଗଣନାରୁ ଜଣାଯାଇଛି ଯେ ଭାରତରେ କେବଳ ହିନ୍ଦୀ ଭାଷା ବ୍ୟବହାର କରୁଥିବା (ଲେଖି ଜାଣିଥିବା ଅର୍ଥରେ) ୩୩ କୋଟି ୭୨ ଲକ୍ଷ ୭୨ ହଜାର ୧୧୪ ଲୋକଙ୍କ ସଂଖ୍ୟା ସର୍ବାଧିକ, ଅର୍ଥାତ୍ ୩୯ ଦଶମିକ ୮୫ ପ୍ରତିଶତ । ସେହିପରି ସଂସ୍କୃତ ଭାଷା ବ୍ୟବହାର କରୁଥିବା (ଲେଖି ଜାଣିଥିବା ଅର୍ଥରେ) ଲୋକଙ୍କ ସଂଖ୍ୟା ହେଲା ସର୍ବନିମ୍ନ ୪୯ ହଜାର ୭୩୬ । (୦ ଦଶମିକ ୦୧ ପ୍ରତିଶତ) ଆଞ୍ଚଳିକ ଭାଷାଗୁଡ଼ିକ ମଧ୍ୟରେ ମଣିପୁରୀ ଭାଷା ବ୍ୟବହାର କରୁଥିବା (ଲେଖି ଜାଣିଥିବା ଅର୍ଥରେ) ଲୋକଙ୍କ ସଂଖ୍ୟା ସର୍ବନିମ୍ନ ପର୍ଯ୍ୟାୟର ଉପରେ ୧୨ ଲକ୍ଷ ୭୦ ହଜାର ୨୧୬ (୦ ଦଶମିକ ୧୫ ପ୍ରତିଶତ) । କିନ୍ତୁ ଓଡ଼ିଆ ଭାଷା ବ୍ୟବହାର କରୁଥିବା (ଲେଖି ଜାଣିଥିବା ଅର୍ଥରେ) ଲୋକଙ୍କ ସଂଖ୍ୟା ହେଉଛି ୨ କୋଟି ୮୦ ଲକ୍ଷ ୬୧ ହଜାର ୩୧୩, ଅର୍ଥାତ୍ ୩ ଦଶମିକ ୩୨ ପ୍ରତିଶତ ଥିବାସ୍ଥଳେ ପଡ଼ୋଶୀ ବଙ୍ଗଳା ଭାଷା ବ୍ୟବହାରକାରୀଙ୍କ ସଂଖ୍ୟା (ଲେଖି ଜାଣିଥିବା ଅର୍ଥରେ) ୬ କୋଟି ୯୫ ଲକ୍ଷ ୯୫ ହଜାର ୭୩୮ (୮ ଦଶମିକ ୨୨ ପ୍ରତିଶତ) ଅର୍ଥାତ୍ ଓଡ଼ିଆ ଭାଷାଠାରୁ ପ୍ରାୟ ତିନିଗୁଣା ଅଧିକ । ସେହିପରି ଅନ୍ୟ ଏକ ପଡ଼ୋଶୀ ରାଜ୍ୟ ଆନ୍ଧ୍ରପ୍ରଦେଶରେ ତେଲୁଗୁ ଭାଷା ବ୍ୟବହାରକାରୀଙ୍କ ସଂଖ୍ୟା (ଲେଖି ଜାଣିଥିବା ଅର୍ଥରେ) ୬ କୋଟି ୬୦ ଲକ୍ଷ ୧୭ ହଜାର ୬୧୫ ଅର୍ଥାତ୍ ୭ ଦଶମିକ ୮୦ ପ୍ରତିଶତ, ଯାହାକି ଓଡ଼ିଆ ଭାଷାଭାଷୀଙ୍କ ଅପେକ୍ଷା ଦ୍ୱିଗୁଣିତ ବୋଲି ମନେ ହୋଇଥାଏ ।

ଗତ ୨୦୦୧ ଜାନୁଆରୀ ମାସରେ ଆନ୍ଧ୍ରପ୍ରଦେଶର ରାଜଧାନୀ ହାଇଦ୍ରାବାଦ ସହରରେ ବିଶ୍ୱଭାଷା ଉପରେ ଯେଉଁ ଆନ୍ତର୍ଜାତୀୟ ସମ୍ମିଳନୀ ହାଇଦ୍ରାବାଦର କେନ୍ଦ୍ରୀୟ ଇଂରାଜୀ ଓ ବିଦେଶୀ ଭାଷା ପ୍ରତିଷ୍ଠାନ ଆନୁକୂଲ୍ୟରେ ଅନୁଷ୍ଠିତ ହୋଇଥିଲା, ସେଠାରେ ଉପସ୍ଥିତ ପ୍ରତିନିଧିବୃନ୍ଦ ସମଗ୍ର ବିଶ୍ୱରେ ଭାଷାର ଭବିଷ୍ୟତ ନେଇ ଚିନ୍ତିତ ହୋଇ ପଡ଼ିଥିଲେ । କାରଣ ଜଗତୀକରଣ ପ୍ରକ୍ରିୟାରେ ୯୦ ପ୍ରତିଶତ ବିଶ୍ୱର ଭାଷା ଆଗାମୀ ଶହେ ବର୍ଷ ମଧ୍ୟରେ ଲୋପ ପାଇଯିବ ବୋଲି ସେହି ପ୍ରତିନିଧିମାନେ ସେତେବେଳେ ଆଶଙ୍କା ପ୍ରକାଶ କରିଥିଲେ । ଆଉ ଗୋଟିଏ ଗୁରୁତ୍ୱପୂର୍ଣ୍ଣ କଥା ଉପରେ ମଧ୍ୟ ସେଠାରେ ଆଲୋଚନା ହୋଇଥିଲା, ତାହା ହେଲା ଯେ ଇଂରାଜୀ ଭାଷା କ୍ରମଶଃ ଭାରତୀୟ ଭାଷାକୁ ରୂପାନ୍ତରିତ ହେଉଥିବାର ସମ୍ଭାବନା (The discussion rounded off on possibility of English becoming Indianised) ।

ଇତିହାସକୁ ଅନୁଧ୍ୟାନ କଲେ ଜଣାଯାଇଥାଏ ଯେ ଅତୀତରେ ଷୋଡ଼ଶ ଶତାବ୍ଦୀର ମଧ୍ୟଭାଗରୁ ଓଡ଼ିଶା ତାହାର ସ୍ୱାତନ୍ତ୍ର୍ୟ ଓ ସ୍ୱାଧୀନତା ହରାଇଥିଲା । ଏପରିକି ଊନବିଂଶ ଶତାବ୍ଦୀରୁ ଓଡ଼ିଶାର ଭୌଗୋଳିକ ସୀମା ସରହଦ କ୍ରମଶଃ ଲୋପପାଇ ଓଡ଼ିଶାର କିଛି ଅଂଶ ମାନ୍ଦ୍ରାସରେ ଆଉ କିଛି ଅଂଶ ବଙ୍ଗଳାରେ ଓ ବିହାରରେ ମିଶି ରହିଥିଲା । ଯଦିଓ ସେତେବେଳେ ଓଡ଼ିଶା ପାଇଁ ଜଣେ କମିଶନର ନିଯୁକ୍ତ ହୋଇଥିଲେ, ତଥାପି ଓଡ଼ିଶାରେ ଶାସନ ପରିଚାଳନା ଠିକ୍ ଭାବେ ହେଉନାହିଁ ବୋଲି ୧୮୬୬ରେ ଓଡ଼ିଶାର ନଅଙ୍କ ଦୁର୍ଭିକ୍ଷ କାଳରେ ତତ୍କାଳୀନ ବ୍ରିଟିଶ ସରକାର ଅନୁଭବ କରିଥିଲେ ଏବଂ ସେବେଠାରୁ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନର ଚିନ୍ତାଧାରା ଓଡ଼ିଶାର ନେତାମାନଙ୍କୁ ଅସ୍ଥିର କରି ପକାଇଥିଲା । ଭୌଗୋଳିକତା ଦୃଷ୍ଟିରୁ ଓଡ଼ିଶା ଖଣ୍ଡ ଖଣ୍ଡ ହୋଇଥିଲେ ହେଁ ଓଡ଼ିଶାର ଭାଷା ଓଡ଼ିଆ ଖଣ୍ଡ ବିଖଣ୍ଡିତ ହୋଇ ନଥିଲା । ଅବଶ୍ୟ ୧୮୯୫ ମସିହା ଜାନୁଆରୀ ୧୫ ତାରିଖରେ ସମ୍ବଲପୁରରେ ଓଡ଼ିଆ ଭାଷା ପରିବର୍ତ୍ତେ ହିନ୍ଦୀକୁ ସରକାରୀ ଭାଷା କରାଯାଇଥିଲା । ପ୍ରଥମେ ତାହାର ପ୍ରତିବାଦ କରିଥିଲେ କର୍ମବୀର ଗୌରୀଶଙ୍କର ରାୟଙ୍କ ପରି ଜଣେ ଅଣଓଡ଼ିଆ ଓ ଉତ୍କଳଗୌରବ ମଧୁସୂଦନ ଦାସଙ୍କ ପରି ଜଣେ ଓଡ଼ିଆ ନେତା । ଏଥିପାଇଁ ସର୍ବପ୍ରଥମେ 'ଉତ୍କଳ ସଭା' ଗଠିତ ହୋଇ ପରେ ତାହା ଉତ୍କଳ ସମ୍ମିଳନୀକୁ ରୂପାନ୍ତରିତ ହୋଇଥିଲା । ସେହି ସମ୍ମିଳନୀ ଓଡ଼ିଆ ଭାଷାକୁ ଓ ଓଡ଼ିଆମାନଙ୍କୁ ଏକତ୍ର କରି ଯେଉଁ ଆନ୍ଦୋଳନ କରିଥିଲା, ତାହାର ଫଳଶ୍ରୁତି ହେଉଛି ୧୯୩୬ ଅପ୍ରେଲ ପହିଲାରେ ଭାଷାଭିତ୍ତିରେ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଆମର ।

ଓଡ଼ିଆ ଭାଷାର ସୁରକ୍ଷା ଓ ଉନ୍ନତି ପାଇଁ ଓଡ଼ିଆ ନେତା, କବି ଓ ସାହିତ୍ୟିକଙ୍କ ସମେତ ଅଣ ଓଡ଼ିଆମାନଙ୍କର ମଧ୍ୟ ଯଥେଷ୍ଟ ଅବଦାନ ରହିଛି । ମାତ୍ର ଓଡ଼ିଆ ଭାଷାର ଭବିଷ୍ୟତକୁ ନେଇ ସାହିତ୍ୟିକ ଓ ଭାଷାବିତ୍‌ମାନେ ଆଶଙ୍କା ପ୍ରକାଶ କରିଛନ୍ତି । ବିଚ୍ଛିନ୍ନାଞ୍ଚଳରେ, ସୀମାନ୍ତ ଅଞ୍ଚଳରେ ଏପରିକି ପ୍ରବାସୀ ଓଡ଼ିଆଙ୍କ ନିକଟରେ ଓଡ଼ିଆ ଭାଷା, ସାହିତ୍ୟ ଓ ସଂସ୍କୃତିର ଉନ୍ନତି ପାଇଁ ଏବେ ରାଜ୍ୟ ସରକାର ତତ୍ପର ଥିଲେ ହେଁ, ଆମ ମନୋବୃତ୍ତି ଓ ଦୃଷ୍ଟିଭଙ୍ଗୀରେ ପରିବର୍ତ୍ତନ ନହେଲେ ଆମ ମାତୃଭାଷାର ସୁରକ୍ଷା ଓ ଉନ୍ନତି ସମ୍ଭବ ନୁହେଁ ବୋଲି ମୁଁ କହିବି ।

ଡି-୧୦/୫
ୟୁନିଟ-୮, ଭୁବନେଶ୍ୱର-୧୨

# ଓଡ଼ିଶାର ଅତୀତ, ବର୍ତ୍ତମାନ ଓ ଭବିଷ୍ୟତ

ଡକ୍ଟର ସିଦ୍ଧାର୍ଥ କାନୁନ୍‌ଗୋ

ମହାକାଳ ବକ୍ଷରେ ଗୋଟିଏ ଜାତି କିପରି ଉତ୍ଥାନ ବା ପତନ ଦେଇ ଗତି କରେ, ଏହାର ଏକ ନିଚ୍ଛକ ପ୍ରତିଛବି ହେଉଛି, ଓଡ଼ିଶା ବା ଓଡ଼ିଆ ଜାତି । ଶତାବ୍ଦୀ ଶତାବ୍ଦୀ ଧରି ଓଡ଼ିଶା ସାଂସ୍କୃତିକ, ସାମାଜିକ ତଥା ରାଜନୈତିକ ଚେତନାର ଅଗ୍ରଭାଗରେ ଥିଲା । ଆଜି ମନେପଡ଼େ ହଜିଲା ଉତ୍କଳର ସେହି ଗୌରବମୟ କଥା, ଯେଉଁ ଦିନ ଉତ୍କଳର ସୀମା ଗଙ୍ଗାଠାରୁ ଗୋଦାବରୀ ନଦୀ ପର୍ଯ୍ୟନ୍ତ ବିସ୍ତୃତ ଥିଲା । କପିଳେନ୍ଦ୍ର ଦେବଙ୍କ ସମୟରେ ତ ଏହା କାବେରୀ ନଦୀ ପର୍ଯ୍ୟନ୍ତ ବିସ୍ତୃତ ହୋଇଥିଲା । ଓଡ଼ିଆ ସାଧବ ପୁଅର ନୌଯାତ୍ରାରେ କୋଳାହଳମୟ ହୋଇଉଠିଥିଲା ପାଲୁର, ତାମ୍ରଲିପ୍ତ ଓ ଚେଲିତୋଲା ବନ୍ଦର । ଓଡ଼ିଆ ଶିଳ୍ପୀ ନିହାଣ ଗତିର ତାଳେ ତାଳେ ସୃଷ୍ଟି କରିଥିଲା ମାଦକ ଭରା ସଙ୍ଗୀତ ଯାହା ଏବେ ମଧ୍ୟ ଜଗନ୍ନାଥ ମନ୍ଦିର, ଲିଙ୍ଗରାଜ ମନ୍ଦିର, ରାଜାରାଣୀ ମନ୍ଦିର, ମୁକ୍ତେଶ୍ୱର ମନ୍ଦିର ଓ କୋଣାର୍କ ମନ୍ଦିର ଗାତ୍ରରେ ଝଙ୍କୃତ । ପ୍ରାୟ ୭୦୦ ବର୍ଷ ତଳେ ନିର୍ମିତ ଭଗ୍ନ କୋଣାର୍କକୁ ଦେଖି ବିସ୍ମୟରେ ଅଭିଭୂତ ହୋଇ ଗୁରୁଦେବ ରବୀନ୍ଦ୍ରନାଥ ଠାକୁର କହିଗଲେ, 'ଏଠାରେ ପ୍ରସ୍ତରର ଭାଷା ଆଗରେ ମଣିଷର ଭାଷା ପରାଜୟ ବରଣ କରିଛି ।' ପ୍ରେମ, ସଦ୍‌ଭାବ, ସଂପ୍ରୀତି, ସେବା ଓ ସୃଜନଶୀଳ ବ୍ୟକ୍ତିତ୍ୱର ପରିବେଶ ମଧ୍ୟରେ କିପରି ଏକ ଜାତି ବଞ୍ଚିରହେ, ଏହାର ଜ୍ୱଳନ୍ତ ନିଦର୍ଶନ ହେଉଛି କୋଣାର୍କ ମନ୍ଦିର ।

ସେହିପରି ଏହି ଓଡ଼ିଶା ମାଟିରେ ଓଡ଼ିଆ ସୈନିକର ବୀରତ୍ୱ ଓ ସାହସରେ ମୁଗ୍ଧହୋଇ ସମ୍ରାଟ ଅଶୋକ ହିଂସା ଓ ତରବାରୀକୁ ପରିତ୍ୟାଗ କରି ପ୍ରେମ ଓ ଅହିଂସାକୁ ଆପଣେଇ ନେଇଥିଲେ । ପରେ ସେ ବୌଦ୍ଧଧର୍ମ ଗ୍ରହଣ କରି ଶାନ୍ତି ଓ ଅହିଂସାର ଗାଥା ପ୍ରଚାର କରିଥିଲେ ।

ଏକଥା ଶୁଣିଲେ ଆଶ୍ଚର୍ଯ୍ୟ ଲାଗିବ ଯେ ଆମ 'ଭାଗବତ ଟୁଙ୍ଗୀ' ଦ୍ୱାରା ପ୍ରଭାବିତ ହୋଇ ଶଙ୍କରଦେବ ଆସାମରେ 'ନାମଘର' ପ୍ରତିଷ୍ଠା କରିଥିଲେ । ଓଡ଼ିଆ ଜାତିକୁ ପାଠୁଆ ଓ ସୁସଂସ୍କୃତ କରିବାରେ ଜଗନ୍ନାଥ ଦାସଙ୍କ ଭାଗବତର ଭୂମିକା ଅତୁଳନୀୟ ବୋଲି ପ୍ରଖ୍ୟାତ ବଙ୍ଗୀୟ ସମାଲୋଚକ ତଥା ପ୍ରଫେସର ଡକ୍ଟର ବିଜୟ ଚନ୍ଦ୍ର ମଜୁମ୍‌ଦାର ମୁକ୍ତ କଣ୍ଠରେ ସ୍ୱୀକାର କରିଯାଇଛନ୍ତି । ତାଙ୍କ ଭାଷାରେ -

'I cannot too highly speak of what Jagannath Das has done to raise his countrymen to a higher level of moral existence. No poet of old times enjoys so much popularity as poet Jagannath Das does. When the people learnt that Bhagbat which is the most sacred of all sacred books was within their easy reach, they took to the practice of vernacular with uncommon zeal and energy. This is why the art of reading and writing was known and practiced more extensively in Orissa than Bengal. Long ago, Bhudev Mukhopadhyaya as Inspector of Schools duly observed this mass education and reported the matter in his public report.' ଏଠାରେ ଆଉ ଏକ କଥା କହିବାକୁ ଉଚିତ ମନେ କରୁଛି । ସୁର ଦାସ ୧୫୫୦/୧୫୬୦ ମସିହା ବେଳକୁ ହିନ୍ଦୀଭାଷାରେ ସୁର ସାଗର ଗ୍ରନ୍ଥ ରଚନା କରିଥିଲେ । ଏହା ଦଶମ ସ୍କନ୍ଦ ଭାଗବତର ଅନୁବାଦ ମାତ୍ର । ହିନ୍ଦୀ ଭାଗବତ ରଚନାର ୫୦/୬୦ ବର୍ଷ ପୂର୍ବରୁ ଏହି ମାଟିର କବି ଜଗନ୍ନାଥ ଦାସ ଓଡ଼ିଆ ଭାଷାରେ ସମ୍ପୂର୍ଣ୍ଣ ଭାଗବତ ରଚନା କରିଯାଇଛନ୍ତି । ଏଠାରେ ଉଲ୍ଲେଖଯୋଗ୍ୟ ଯେ ଓଡ଼ିଆ ଭାଗବତ ରଚନାର ୧୫୮ ବର୍ଷ ପରେ ଅର୍ଥାତ୍ ୧୬୫୮ ମସିହାରେ ସନାତନ ଚକ୍ରବର୍ତ୍ତୀ ବଙ୍ଗଳାରେ ଭାଗବତ ରଚନା କରି ମଧ୍ୟ ଏହି ଦୁରୁହ କାର୍ଯ୍ୟରେ ସଫଳ ହୋଇ ନପାରି ବିଶେଷ କରି ଦଶମ ସ୍କନ୍ଦ ଭାଗବତ ରଚନା ବେଳକୁ ନିଜର ଅକ୍ଷମତା ପ୍ରକାଶ କରି ଓଡ଼ିଆ ଭାଗବତର ଆଶ୍ରୟ ଗ୍ରହଣ କରିଥିଲେ । ନିଜେ ସନାତନ ଚକ୍ରବର୍ତ୍ତୀ ଏ କଥା ସ୍ୱୀକାର କରି କହିଛନ୍ତି -

'ଶୁନ ଶୁନ ଶ୍ରୋତାଗନ କରି ନିବେଦନ,
ପ୍ରଥମ ହଇତେ ଗ୍ରନ୍ଥ ଲେଖିଲୁ ଆପନ ।
ଦଶମେର ଶେଷ ଖଣ୍ଡ ଭାଷା ନ ପାଇଲ,
ଅନେକ ତ ପାଶି ଗ୍ରାମେ ଗ୍ରାମେ ବେଡାଇଲ ।
ଏ ହେତୁ ଉତ୍କଳ ଭାଷା କରିଲ ଲିଖନ,
ଜଗନ୍ନାଥ ଦାସ କୃତ ଅପୂର୍ବ ବର୍ଣ୍ଣନ ।
ଗ୍ରନ୍ଥ ସମାପନ ହେତୁ ଉତ୍କଣ୍ଠା ହଇୟା,
ବଙ୍ଗଜ ଭାଷାୟ ଉତ୍କଳ ମିଶଇୟା ।
ଇଥେ ସାଧୁ ଜନ ମୋର ଦୋଷ ନ ଲାଇବେ,
ଭାଗବତ ସାଧୁବାକ୍ୟ ଆନନ୍ଦେ ଶୁନିବେ ।'

ସେହିପରି ବିରାଟ ମହାଭାରତ ରଚନା କରି ଏ ମାଟିର ପୁଅ ସାରଳା ଦାସ ବେଦବ୍ୟାସ ପାଲଟି ଯାଇଛନ୍ତି । ତୁଳସୀ ଦାସଙ୍କ ବହୁ ପୂର୍ବରୁ ଏ ମାଟିର କବି ବଳରାମ ଦାଶ ରାମାୟଣ ରଚନା କରିଯାଇଛନ୍ତି । କାନ୍ତ କୋମଳ ଲଳିତ ପଦାବଳୀର କବି ତଥା ଗୀତଗୋବିନ୍ଦ କାବ୍ୟର ପ୍ରଣେତା ଜୟଦେବ, ରସବାଦର ବିଶିଷ୍ଟ ପ୍ରବକ୍ତା ବିଶ୍ୱନାଥ କବିରାଜ ଏବଂ ସିଦ୍ଧାନ୍ତ ଦର୍ପଣର ରଚୟିତା ପଠାଣି ସାମନ୍ତ ଯେ ଏ ମାଟିର ସନ୍ତାନ ଥିଲେ ଏ କଥା କିଏ ବିଶ୍ୱାସ କରିବ ? ଉପେନ୍ଦ୍ର ଭଞ୍ଜଙ୍କ କାବ୍ୟ କୋଣାର୍କ ଓ ଫକୀର ମୋହନଙ୍କ କଥା ସାହିତ୍ୟ ସମଗ୍ର ଭାରତୀୟ ଭାଷା ସାହିତ୍ୟରେ ମଧ୍ୟ ଦୁର୍ଲ୍ଲଭ ।

ମାତ୍ର ଓଡ଼ିଶାର ଶେଷ ସ୍ୱାଧୀନ ନରପତି ଗଜପତି ମୁକୁନ୍ଦ ଦେବଙ୍କ ୧୫୬୮ ଖ୍ରୀଷ୍ଟାବ୍ଦରେ ପରାଜୟ ଓ ନିଧନ ପରେ ଆମର ଭାଗ୍ୟରବି ଅସ୍ତମିତ ହୋଇଗଲା ବୋଲି କହିଲେ କିଛି ଭୁଲ ହେବ ନାହିଁ । ୧୫୬୮ ମସିହାଠାରୁ ୧୯୪୭ ମସିହା ପର୍ଯ୍ୟନ୍ତ ଆଫଗାନ, ମୋଗଲ, ମରହଟ୍ଟା ଓ ଇଂରେଜ ଶାସନ ସମୟରେ ଏ ଜାତି ବାଉଳ ବାଉଳ ହୋଇଯାଇଛି । ବିଦେଶୀ ଶାସକର ଅତ୍ୟାଚାର ଓ ଲୁଣ୍ଠନରେ ଏ ରାଜ୍ୟର ସାମାଜିକ, ରାଜନୈତିକ ତଥା ଆର୍ଥିକ ବିଧି ବ୍ୟବସ୍ଥା ଦୋହଲି ଗଲା ।

୧୫୬୮ ମସିହାଠାରୁ ୧୮୦୩ ମସିହା ପର୍ଯ୍ୟନ୍ତ ଓଡ଼ିଶା ପର୍ଯ୍ୟାୟକ୍ରମେ ମୁସଲମାନ ଓ ମରହଟ୍ଟା ଶାସକଙ୍କ ଅତ୍ୟାଚାର ତଥା ଶୋଷଣର ଶିକାର ହେଲା । କଳାପାହାଡ଼, କେଶୋ ଦାସ, ଟୋଡ଼ର ମଲ୍ଲଙ୍କ ପୁଅ କଲ୍ୟାଣ ସିଂହ, ମୁକ୍ରାମ ଖାଁ, ବାକର ଖାଁ ଇତ୍ୟାଦିଙ୍କ ଓଡ଼ିଶା ଆକ୍ରମଣ ଓ ବାରମ୍ବାର ଜଗନ୍ନାଥ ମନ୍ଦିର ଲୁଣ୍ଠନ ଏ ରାଜ୍ୟର ଧାର୍ମିକ, ସାମାଜିକ ତଥା ସାମାଜିକ ପରିବେଶକୁ ଖିନ୍‌ଭିନ୍ କରିଦେଲା । ମରହଟ୍ଟା ଶାସନ କଥା ନକହିଲେ ଭଲ । ମରହଟ୍ଟା ଶାସନ କହିଲେ ଏବେ ମଧ୍ୟ ଲୋକେ ଅତ୍ୟାଚାରର ଏକ ପ୍ରତିଶବ୍ଦ ବୋଲି ଭାବନ୍ତି । କଥିତ ଅଛି ମରହଟ୍ଟା ବର୍ଗୀ ଆସିଲେ ଗାଁରେ ତାଟି କବାଟ ପଡ଼ିଯାଏ ।

୧୮୦୩ ମସିହାରେ ଇଂରେଜମାନଙ୍କ ଓଡ଼ିଶା ଆଗମନ । ନିଜର ବ୍ୟକ୍ତିଗତ ଫାଇଦା ପାଇଁ ଇଂରେଜ ଶାସକ ଓଡ଼ିଶାକୁ ବିଖଣ୍ଡିତ କରି ଏହାର କିଛି ଅଂଶ ବିହାର, ବଙ୍ଗଳା, ମାଦ୍ରାଜ ଓ ମଧ୍ୟପ୍ରଦେଶରେ ରଖିଲେ । ମାତ୍ରାଧିକ ସ୍ୱେଚ୍ଛାଚାରୀ ଶାସନ, ହିଂସା ଓ ଉତ୍ପୀଡ଼ନ ଦ୍ୱାରା ଶସ୍ୟ ଶ୍ୟାମଳା ଓଡ଼ିଶା ଧ୍ୱଂସ ପାଇବାକୁ ବସିଲା । ବଙ୍ଗାଳୀ ଜମିଦାର ଓ ଅମଲାମାନଙ୍କ ମିଳିତ ଚକ୍ରାନ୍ତ ଦ୍ୱାରା ଓଡ଼ିଶାର ବହୁ ଜମିଦାରୀ ଶାଗ ମାଛ ଦରରେ ନିଲାମ ହୋଇଗଲା । ଓଡ଼ିଆ ଜମିଦାର ଦାଣ୍ଡର ଭିକାରୀ ହୋଇଗଲେ । ପୁଣି ଓଡ଼ିଆମାନଙ୍କ ଏକଚାଟିଆ ଲୁଣ ବ୍ୟବସାୟକୁ ବ୍ରିଟିଶ ସରକାର ନିଜ ହାତକୁ ନେବା ଦ୍ୱାରା ଲୁଣର ଦାମ ବଢ଼ିଗଲା ଏବଂ ଏହାର ପ୍ରଭାବ ଓଡ଼ିଶାର ଅର୍ଥନୀତି ଉପରେ ପଡ଼ିଲା ।

ତ୍ରୁଟିପୂର୍ଣ୍ଣ ରାଜସ୍ୱ ନୀତି ଓ ଜମିରେ ଜଳସେଚନ ବ୍ୟବସ୍ଥା ନଥିବାରୁ ବ୍ରିଟିଶ ଶାସନ ସମୟରେ କୃଷି ଅର୍ଥନୀତି ଅତ୍ୟନ୍ତ ଦୁର୍ବଳ ଥିଲା । ଏଣେ ବ୍ରିଟିଶ ସରକାରଙ୍କ ଅନୁସୃତ ନୀତିଦ୍ୱାରା ଓଡ଼ିଶାରୁ କୁଟୀର ଶିଳ୍ପ ଲୋପ ପାଇବାକୁ ଲାଗିଲା । ଏ ଦେଶରୁ କଞ୍ଚାମାଲ ଯାଇ ବିଦେଶରେ ପ୍ରସ୍ତୁତ ଦ୍ରବ୍ୟ ଆଣି ବଜାରରେ ଚଢ଼ା ଦରରେ ବିକ୍ରି ହେଲା । ବୟନ ଶିଳ୍ପର ଅଧୋଗତି ଯୋଗୁଁ ତନ୍ତୀମାନେ ଜୀବିକା ହରାଇ ବସିଲେ । ଏହି ସମୟର ଆଉ ଉଲ୍ଲେଖନୀୟ ଘଟଣା ହେଲା ୨୬ଟି ଦେଶୀୟ ରାଜ୍ୟ ବା ଗଡ଼ଜାତ ଅଞ୍ଚଳ ପ୍ରତ୍ୟକ୍ଷ ଭାବେ ବ୍ରିଟିଶ ଶାସନାଧୀନ ନ ହୋଇ ନାମକୁ ମାତ୍ର ଇଂରେଜ ସରକାରଙ୍କ ତତ୍ତ୍ୱାବଧାନରେ ରହି ରାଜାମାନଙ୍କ ଦ୍ୱାରା ଶାସିତ ହେଲା । ଏହି ରାଜାମାନଙ୍କ ବିଳାସବ୍ୟସନରେ ସୀମା ନଥିଲା । ସେମାନଙ୍କ ଅତ୍ୟାଚାର ଓ ଶୋଷଣର ପ୍ରତିକୂଳ ପ୍ରଭାବ ଜନସାଧାରଣଙ୍କ ଅର୍ଥନୈତିକ ଜୀବନକୁ ବହୁମାତ୍ରାରେ ପ୍ରଭାବିତ କଲା ।

ଏହାପରେ ଆସନ୍ତୁ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ କଥା ଚିନ୍ତା କରିବା । ବହୁ ନିବେଦନ, ଆନ୍ଦୋଳନ ଓ ପ୍ରତୀକ୍ଷା ପରେ କଟକ, ପୁରୀ, ବାଲେଶ୍ୱର, ଗଞ୍ଜାମ, କୋରାପୁଟ ଓ ସମ୍ବଲପୁର ଏହି ୬ଟି ଜିଲ୍ଲାକୁ ନେଇ ୩୨,୬୯୫ ବର୍ଗ ମାଇଲ ପରିମିତ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଏପ୍ରିଲ ପହିଲା, ୧୯୩୬ ମସିହାରେ ଆତ୍ମପ୍ରକାଶ କଲା । ଠିକ୍ ଏହିଦିନ ମଧ୍ୟ ସିନ୍ଧୁ ପ୍ରଦେଶ ଗଠିତ ହେଲା । ଏଠାରେ ଉଲ୍ଲେଖଯୋଗ୍ୟ ଯେ, ଆଞ୍ଚଳିକ ବୈଷମ୍ୟ ଓ ଅନଗ୍ରସରତାକୁ ଦୂର କରିବା ଉଦ୍ଦେଶ୍ୟରେ ଭାରତ ସରକାରଙ୍କ ଆମନ୍ତ୍ରଣକ୍ରମେ ବ୍ରିଟିଶ କୋଷାଗାର ନିର୍ଦ୍ଦେଶକ ସାର୍ ଅଟୋନମର ଯେଉଁ ଆର୍ଥିକ ଅନୁଦାନ ସୁପାରିଶ କରିଥିଲେ, ସେଥିରେ ମଧ୍ୟ ଓଡ଼ିଶା ଉପେକ୍ଷିତ ହୋଇଥିଲା । ସିନ୍ଧୁ ପ୍ରଦେଶର ଲୋକ ସଂଖ୍ୟା ଓଡ଼ିଶାର ଲୋକ ସଂଖ୍ୟାର ଅର୍ଦ୍ଧେକ ହୋଇଥିଲେ ମଧ୍ୟ ଓଡ଼ିଶାକୁ ସୁପାରିଶ କରାଯାଇଥିବା ଅର୍ଥ ଅନୁଦାନ ସିନ୍ଧୁ ପ୍ରଦେଶ ପାଇଁ କରାଯାଇଥିବା ଅର୍ଥ ଅନୁଦାନ ତୁଳନାରେ ଅର୍ଦ୍ଧେକରୁ ମଧ୍ୟ କମ୍ ଥିଲା ।

୧୯୪୭ ମସିହାରେ ଦେଶ ସ୍ୱାଧୀନ ହେଲା । ୧୯୪୭ ମସିହାଠାରୁ ୨୦୦୫ ମସିହା - ଦୀର୍ଘ ୫୮ ବର୍ଷର ଇତିହାସ । ଆମ ପରେ ଆନ୍ଧ୍ରପ୍ରଦେଶ, ହରିଆନା ଆଦି ରାଜ୍ୟ ସୃଷ୍ଟି ହୋଇଥିଲେ ମଧ୍ୟ ବିଭିନ୍ନ କ୍ଷେତ୍ରରେ ଏମାନଙ୍କ ଅଗ୍ରଗତି ଦେଖିଲେ ଆମକୁ ଆଶ୍ଚର୍ଯ୍ୟ ହେବାକୁ ଲାଗେ ।

ଦରିଦ୍ରତମ ରାଜ୍ୟ ଓଡ଼ିଶାର ଆର୍ଥିକ ପରିସ୍ଥିତି ଆଜି ଗଭୀର ଚିନ୍ତା ଓ ଉଦ୍‌ବେଗର କାରଣ ହୋଇଛି । ଅଣଯୋଜନା ରାଜସ୍ୱ ଆୟ ଓ ଅଣଯୋଜନା ରାଜସ୍ୱ ବ୍ୟୟ ମଧ୍ୟରେ ଥିବା ବ୍ୟବଧାନ ଅର୍ଥାତ୍ ଚଳିତ ରାଜସ୍ୱର ଅବଶେଷ ବା ଯାହାକୁ ସଂକ୍ଷେପରେ ଇଂରାଜୀରେ ବି.ସି.ଆର୍. କୁହାଯାଏ ତାହା କେବଳ ଋଣାତ୍ମକ ଋଣ ନୁହେଁ । ବରଂ ଏହାକୁ ସମ୍ଭାଳିବା ଏକ କଷ୍ଟକର ବ୍ୟାପାର ଅଟେ । ପ୍ରତିବର୍ଷ ସୁଧଦେୟ ବଢ଼ିଚାଲିଛି । ତେଣୁ ଉନ୍ନୟନମୂଳକ କାର୍ଯ୍ୟ ପାଇଁ ଅର୍ଥ ଯୋଗାଡ଼ କରିବା ଏକ କଷ୍ଟକର ବ୍ୟାପାର ହୋଇପଡୁଛି ।

ଏକ ସଂଘୀୟ ବ୍ୟବସ୍ଥାରେ ଆର୍ଥିକ ଓ ସାମାଜିକ କାରଣ ଯୋଗୁଁ ଦୁର୍ବଳ ତଥା ଅନଗ୍ରସର ରାଜ୍ୟ ପ୍ରତି କେନ୍ଦ୍ର ସରକାର ଦୃଷ୍ଟିଦେବା ଆବଶ୍ୟକ । ଏ ଦୃଷ୍ଟିରୁ ବିଚାର କଲେ ସ୍ୱାଧୀନତା ପରେ କେନ୍ଦ୍ରର ସାମନ୍ତବାଦୀ ଚିନ୍ତାଧାରାରେ କୌଣସି ପରିବର୍ତ୍ତନ ଆସିନାହିଁ । ଆଫଗାନ, ମୋଗଲ, ମରହଟ୍ଟା ଓ ବ୍ରିଟିଶ ସରକାରଙ୍କ ଦ୍ୱାରା ଆର୍ଥିକ ଦୃଷ୍ଟିରୁ ଓଡ଼ିଶା ଶୋଷିତ ହେଉଥିଲା । ରେଳପଥର ବିକାଶ କଥା ହେଉ ଅଥବା ସ୍ୱତନ୍ତ୍ର ରାଜ୍ୟ ପାହ୍ୟା ପ୍ରସଙ୍ଗ କିମ୍ବା ମହାବାତ୍ୟା କ୍ଷେତ୍ରରେ ମଧ୍ୟ ଓଡ଼ିଶା କେନ୍ଦ୍ର ଦ୍ୱାରା ଉପେକ୍ଷିତ । ବହୁ କେନ୍ଦ୍ରୀୟ ପ୍ରକଳ୍ପ ଅନ୍ୟ ରାଜ୍ୟକୁ ଚାଲିଯାଉଛି । ଓଡ଼ିଶାର ଦାରିଦ୍ର୍ୟ ଆଜିର ନୁହେଁ, ଏହା ହେଉଛି କ୍ରମାଗତ ଅବହେଳା ଓ ଶୋଷଣର । ବାରମ୍ବାର ଅନୁରୋଧ ପରେ ମଧ୍ୟ କେନ୍ଦ୍ରର ଆମପ୍ରତି ଆଭିମୁଖ୍ୟ ବଦଳି ନାହିଁ । ବିହାର ରାଜ୍ୟ ପାଇଁ ସ୍ୱତନ୍ତ୍ର ଅନୁଦାନ ଘୋଷଣା ଓ ମହାରାଷ୍ଟ୍ରକୁ ୫୦୦ କୋଟି ଟଙ୍କା ପ୍ରଦାନ ପରେ ଆମର ଦାବି ଉପସ୍ଥାପନ କଲାବେଳକୁ ଏହା ଫଳପ୍ରସୂ ହେଉ ନାହିଁ ।

ସର୍ବଭାରତୀୟ ସ୍ତରରେ ଓଡ଼ିଆର ପରିଚୟ ଅତି ନଗଣ୍ୟ । କୋଣାର୍କ ମନ୍ଦିର, ଜଗନ୍ନାଥ ମନ୍ଦିର, ଲିଙ୍ଗରାଜ ମନ୍ଦିରର କାରୁକାର୍ଯ୍ୟ, ସମ୍ବଲପୁରୀ ଶାଢ଼ୀ ଓ ବ୍ରହ୍ମପୁର ପାଟଶାଢ଼ୀ ମଧ୍ୟରେ ଏ ଜାତି ସତେ ଯେପରି ଆତ୍ମରକ୍ଷା କରିବା ପାଇଁ ଚେଷ୍ଟା କରୁଛି । ସ୍ୱାଧୀନତାର ୫୮ ବର୍ଷ ପରେ ମଧ୍ୟ ଜଣେ ହେଲେ ଓଡ଼ିଆ ରାଜ୍ୟସଭାର ମନୋନୀତ ସଦସ୍ୟ ପଦ ମଣ୍ଡନ କରିପାରିଲେ ନାହିଁ, ଅଥଚ ଏ ରାଜ୍ୟରେ ଡକ୍ଟର ପ୍ରାଣକୃଷ୍ଣ ପରିଜା ବା ସଂଯୁକ୍ତା ପାଣିଗ୍ରାହୀଙ୍କ ଭଳି ଆନ୍ତର୍ଜାତିକ ଖ୍ୟାତିସଂପନ୍ନ ବ୍ୟକ୍ତିବିଶେଷଙ୍କ ଅଭାବ ନଥିଲା ଏବଂ ବର୍ତ୍ତମାନ ମଧ୍ୟ ନାହିଁ । ନିକଟରେ ଘଟିଥିବା ଆଉ ଏକ ଘଟଣା ସମ୍ପର୍କରେ କହିବାକୁ ଉଚିତ ମନେ କରୁଛୁ । ପଡ଼ୋଶୀ ଝାଡ଼ଖଣ୍ଡ ରାଜ୍ୟରେ ସଂଖ୍ୟାଧିକ ଓଡ଼ିଆ ଥିଲେ ମଧ୍ୟ ଓଡ଼ିଆ ପରିବର୍ତ୍ତେ ବଙ୍ଗଳା ଭାଷାକୁ ଦ୍ୱିତୀୟ ସରକାରୀ ଭାଷାର ମାନ୍ୟତା ମିଳିଛି । ଏପରି ବହୁ କ୍ଷେତ୍ରରେ ଓଡ଼ିଶା ପ୍ରତି ଅନ୍ୟାୟ ହୋଇଛି ବୋଲି ଆମର ମନେହୁଏ । କିନ୍ତୁ ଏପରି କାହିଁକି ହେଉଛି ? ଏହାର କାରଣ ହେଲା ସବୁକ୍ଷେତ୍ରରେ ଆମର ଉପଯୁକ୍ତ ପ୍ରତିବାଦର ସ୍ୱର କ୍ଷୀଣ । ସମସ୍ତେ ପରସ୍ପରର ଗୋଡ଼ି କଟାକଟି ନେଇ ବ୍ୟସ୍ତ । ତେଣୁ ଓଡ଼ିଶା କଥା ଚିନ୍ତା କରୁଛି କିଏ ? ସାଧାରଣ ଜନତା ମଧ୍ୟ ଏ ଦିଗରେ ସଚେତନ ନୁହନ୍ତି ।

ଆମ ଭିତରେ ଯୋଗ୍ୟ ଲୋକଙ୍କର ଅଭାବ ନାହିଁ । କେବଳ ଯାହା ଅଭାବ ରହିଛି ଆମ ମାନସିକତାରେ । ସମାଜର ସବୁବର୍ଗର ଲୋକ ଅର୍ଥାତ୍ ରାଜନେତା, ପ୍ରଶାସକ ଓ ବୁଦ୍ଧିଜୀବୀ ନିଜକୁ ନିଜେ ଏହି ପ୍ରଶ୍ନ ପଚାରିବା ଉଚିତ୍ ଯେ ରାଜ୍ୟର ଏ ଶୋଚନୀୟ ପରିସ୍ଥିତି ପାଇଁ ସେମାନେ ନିଜେ କେତେ ପରିମାଣରେ ବ୍ୟକ୍ତିଗତ ଭାବେ ଦାୟୀ ? ଆମେ ଯେପରି କପିଳେନ୍ଦ୍ର ଦେବ, ମଧୁସୂଦନ ଦାସ ଅଥବା ଗୋପବନ୍ଧୁ ଦାସଙ୍କ ପରି ପୂର୍ବପୁରୁଷଙ୍କ କୀର୍ତ୍ତି ପାଇଁ ଗର୍ବ ଅନୁଭବ କରୁ, ଠିକ୍ ସେହିପରି ଆମର କାର୍ଯ୍ୟକଳାପ ଦ୍ୱାରା ଆମ ଉତ୍ତର ପୁରୁଷମାନେ ଯେପରି ଗର୍ବ ଅନୁଭବ କରିବେ, ଏ କଥା ମଧ୍ୟ ଆମେ ଅନୁଭବ କରିବା ଉଚିତ୍ । ଏଥିପାଇଁ ଆମ ଚିନ୍ତା ଚେତନା ଓ ଆଭିମୁଖ୍ୟରେ ପରିବର୍ତ୍ତନ ଆବଶ୍ୟକ ।

ଅନୁଶାସନ ସଚିବ
ଅର୍ଥ ବିଭାଗ, ଓଡ଼ିଶା ସେକ୍ରେଟେରିଏଟ୍
ଭୁବନେଶ୍ୱର



# ଉତ୍କଳ ସମ୍ମିଳନୀକୁ ଭାଙ୍ଗି ଓଡ଼ିଶାରେ କଂଗ୍ରେସ ଦଳ ୧୯୨୦ରେ କିପରି ଜନ୍ମ ଲାଭ କରିଥିଲା ସେ ବିସ୍ମୃତ ଇତିହାସରୁ କେତେ ପୃଷ୍ଠା

ସଂକଳନ : ଆର୍.ପି. ଶାସ୍ତ୍ରୀ

ଗତ ବଡ଼ ଖାନା ଛୁଟିରେ ସିଂହଭୂମି - ଚକ୍ରଧରପୁରଠାରେ 'ଉତ୍କଳ ସମ୍ମିଳନୀ'ର ଷୋଡଶ ଅଧିବେଶନ ନିର୍ବିଘ୍ନରେ ନିର୍ବାହିତ ହୋଇଯାଇଅଛି । ଗତ ପୁରୀ ଅଧିବେଶନ ମଣ୍ଡପରେ ଯେତେବେଳେ ସିଂହଭୂମିବାସୀ ଉତ୍କଳ ସମ୍ମିଳନୀକୁ ଆହ୍ୱାନ କରନ୍ତି, ସେତେବେଳେ ସମସ୍ତଙ୍କ ମନରେ ଉତ୍ସାହ ଓ ସନ୍ଦେହ ଯୁଗପତ୍ଭ ଉଦିତ ହୁଏ । ସିଂହଭୂମି ଯେ ଆମମାନଙ୍କର, ଓଡ଼ିଆ ଭାଇମାନଙ୍କର ବାସଭୂମି, ଏହି କଥା ବୋଧହୁଏ ଦଶବର୍ଷ ପୂର୍ବେ ଆମ୍ଭମାନଙ୍କ ମଧ୍ୟରୁ ଅଧିକାଂଶ ସ୍ୱପ୍ନରେ ସୁଦ୍ଧା ଜାଣି ନଥିଲେ । ଏଥିମଧ୍ୟରେ ସିଂହଭୂମିର ଅବସ୍ଥା ଓଡ଼ିଆମାନଙ୍କର ଭାବନାକୁ ଆସିଅଛି । ସିଂହଭୂମିରେ ଆମ୍ଭମାନଙ୍କର ଓଡ଼ିଆ ଭାଇମାନେ ରହିଅଛନ୍ତି, ବର୍ତ୍ତମାନ ଅନେକ ବୁଝିପାରିଅଛନ୍ତି, ସିଂହଭୂମିର ରାଜାମାନେ ଓଡ଼ିଆ । ସିଂହଭୂମିର ଅଧିକାଂଶ ଜନସାଧାରଣ ଓଡ଼ିଆ, ଏବେ ସଂପୂର୍ଣ୍ଣ ରୂପେ ଜଣା ପଡ଼ିଅଛି । ସିଂହଭୂମିର ଅଧିକାଂଶ ଅଧିବାସୀଙ୍କର ମାତୃଭାଷା ଓଡ଼ିଆ ଏହା ମଧ୍ୟ ଜାଣିବାକୁ ଆଉ କାହାରି ବାକି ନାହିଁ । ସିଂହଭୂମି ଓଡ଼ିଆ ରକ୍ଷା ପାଣି ସେଠାରେ ବିଶେଷ କାର୍ଯ୍ୟ କରି ପାରିଅଛି । ଶ୍ରୀଯୁକ୍ତ ଗୋପବନ୍ଧୁ ଦାସଙ୍କର ଏକାନ୍ତ ଉଦ୍ୟମରେ ସିଂହଭୂମିରେ ଆଜି ଓଡ଼ିଆ ଜାତିର ଜୀବନୀ ଶକ୍ତି ସଞ୍ଚାରିତ ହୋଇଅଛି । ସିଂହଭୂମିରେ କେତେକ କେନ୍ଦ୍ରରେ ଓଡ଼ିଆ ସ୍କୁଲ ବସିଅଛି । ଚକ୍ରଧରପୁରରେ ହାଇ ଇଂଲିଶ ସ୍କୁଲ ପ୍ରତିଷ୍ଠିତ ହୋଇଅଛି । ଅଧିକ କି ସେପରି ସ୍ଥାନରେ ଆଜି ଓଡ଼ିଆ ଜାତିର ମହାସଭା ହୋଇଯାଇଅଛି । ଗତବର୍ଷ ସିଂହଭୂମିର ନିମନ୍ତ୍ରଣରେ ଯେଉଁ ସନ୍ଦେହର ଉଦୟ ହୋଇଥିଲା, ଏବେ ତାହା ସାକ୍ଷାତରେ ଦୂରୀଭୂତ ହୋଇଯାଇଅଛି । ଆଜ ସିଂହଭୂମିରେ ଉତ୍କଳ ଜାତୀୟ ମହା ସମିତିପୂର୍ଣ୍ଣ ଉତ୍ସବରେ ଓ ନିରାପଦରେ ସୁସମ୍ପନ୍ନ ହୋଇ ଯାଇଅଛି ।

ଆମ୍ଭମାନଙ୍କର ପାଠକଗଣ ଜାଣନ୍ତି, ସମ୍ମିଳନୀରେ ସମୟ ନେଇ ବଡ଼ ଗୋଳମାଳ ହୋଇଥିଲା । ଆଗେ ପୂଜା ଛୁଟିରେ ସମୟ ନିର୍ଦ୍ଧାରିତ ହୋଇଥିଲା, ତାହା ବନ୍ଦ କରି ଡିସେମ୍ବର ୨୫-୨୬ ତାରିଖ ଧାର୍ଯ୍ୟ କରା ହେଲା ପୁଣି ସେହି ସମୟ ପରିବର୍ତ୍ତିତ ହୋଇ ୩୦-୩୧ ତାରିଖକୁ ଗଲା । ଏହିପରି ବାର ବାର ସମୟ ପରିବର୍ତ୍ତନରେ ଅନେକଙ୍କ ମନରେ ସଂଶୟ ଓ ନୈରାଶ୍ୟ ଜାତ ହୋଇଥିଲା । ଏଥିମଧ୍ୟରେ ଆଉ ଗୋଟିଏ ମହାବିପଦ ଅକସ୍ମାତ ହାବୋଡ଼ି ପଡ଼ିଲା । ସେହି କଥା ଯେ ଶୁଣିଲା, ସେ ସିଂହଭୂମି ଭାଗ୍ୟରେ ସମ୍ମିଳନୀ ବସିବାର ଯୋଗ ନାହିଁ ବୋଲି ମନେ କରିବା ସହଜ ହୋଇପଡ଼ିଲା ଏତେ ଦିନଯାଏ ଜନସାଧାରଣଙ୍କ ନେତ୍ରରେ ଓଡ଼ିଆ ଜାତିର ଏକମାତ୍ର ନେତାରୂପେ ପରିଦୃଷ୍ଟ ମାନ୍ୟବର ଶ୍ରୀ ମଧୁସୂଦନ ଦାସ ସି.ଆଇ.ଇ. ମହାଶୟ ହଠାତ୍ ରୂପାନ୍ତର ହୋଇ ପରିଦୃଶ୍ୟ ହୁଅନ୍ତି । ସେ ମହାଶୟ ସଭାପତି ହେବାକୁ ଜବାବ ଦେଇଥିବାରୁ ପ୍ରାକୃତିକ ଓଡ଼ିଶାରେ ଗୋଟିଏ ମହାଉତ୍ସାହ ସଞ୍ଚାରିତ ହୋଇଥିଲା । ବିଶେଷତଃ ସିଂହ ଭୂମିବାସୀ ଦାସ ଆପଣଙ୍କୁ ସଭାପତି ରୂପେ ପାଇ ଆପଣାକୁ ପରମ ସୌଭାଗ୍ୟବାନ୍ କରିବେ ବୋଲି କେତେ ସୁଖ ସ୍ୱପ୍ନର ବିଳାସରେ ଭାସୁ ଥିଲେ । କିନ୍ତୁ ହଠାତ୍ ରୂପାନ୍ତର ହୋଇ ପରିଦୃଶ୍ୟ ହୁଅନ୍ତି । କିନ୍ତୁ ହଠାତ୍ ସ୍ୱପ୍ନର ଡଙ୍ଗା ବୁଡ଼ିଗଲା । ଅଧିବେଶନ ହେବାକୁ ଠିକ୍ ଦୁଇଟି ସପ୍ତାହ ମାତ୍ର ସମୟ ଅଛି, ଦାସ ଆପଣେ ଜବାବ୍ ଦେଇ ଖସି ଗଲେ । ସିଂହଭୂମିର ସମସ୍ତ ଉତ୍ସାହ ଯୁଗପତ୍ଭ ଭାଙ୍ଗି ପଡ଼ିଲା । ସଂଗେସଂଗେ ଦେଶରେ ଚହଳ ପଡ଼ିଗଲା । କନିକା ରାଜା ସାହେବଙ୍କୁ ଧରିବାକୁ ହେଲା କନିକା ମଧ୍ୟ ଓଡ଼ିଆ ଜାତିର ଶରଣ ସମ୍ଭାଳିବାକୁ ସାହସୀ ହେଲେ ନାହିଁ । ପୁଣି ଅତିଶୀଘ୍ର ଆଉ ତିନିଜଣଙ୍କ ନାମ ପଡ଼ିଲା । ସର୍ବଶେଷରେ ଜଗବନ୍ଧୁ ବିନା ଓଡ଼ିଆ ଜଗତର ବୋଝ କେହି ମୁଣ୍ଡାଇଲେ ନାହିଁ । ସିଂହଭୂମିରେ ଜାତୀୟ ମହାସଭାର ସିଂହାସନରେ ସିଂହ ଜଣେ ବସାଇବାକୁ ପ୍ରଭୁଙ୍କର ଇଚ୍ଛା ଥିଲା । ଈଶ୍ୱର ଇଚ୍ଛା ଏଡ଼ିବାକୁ ସାଧ୍ୟ କାହାର ? ଉତ୍କଳ ସମ୍ମିଳନୀର ସ୍ଥାୟୀ ସଭାର ସଂପାଦକ ପୁରୀର ଅନ୍ୟତମ ଓକିଲ ଶ୍ରୀ ଜଗବନ୍ଧୁ ସିଂହ ଉତ୍କଳ ମାତାଙ୍କ ଡାକରାରେ ଆଉ ନାସ୍ତି କରିପାରିଲେ ନାହିଁ । ପ୍ରଶଂସିତ ମହୋଦୟ କଂଗ୍ରେସରୁ ଶୀଘ୍ର ପଳାଇ ଆସି ମାତୃଯଜ୍ଞର ପଟୁ ପୁରୋହିତ ହୋଇ ଓଡ଼ିଆ ଜାତିର ବିଶେଷରେ ସିଂହଭୂମି ଓଡ଼ିଆମାନଙ୍କର ମାନ ରକ୍ଷା କଲେ ।

ଆଶା-ନିରାଶା, ଉତ୍ସାହ-ଔଦାସୀନ୍ୟ, ଉଦ୍‌ବେଗ-ଆବେଗ ମଧ୍ୟରେ ନିକ୍ଷେପିତ ହୋଇ କାର୍ଯ୍ୟ ନିର୍ବାହିକା ଓ ଅଭ୍ୟର୍ଥନା ସମିତି କାର୍ଯ୍ୟ କରି କୌଣସିମତେ ସଭାମଣ୍ଡପ ଠିଆ କରି ଦେଲେ । ସାଜସଜ୍ଜା, ଶୋଭା ସଂପଦ ଓ ଶୃଙ୍ଖଳାରେ ସଭାସ୍ଥଳୀ କୌଣସି ଅଂଶରେ ନ୍ୟୁନ

ନଥିଲା । ଅବସ୍ଥା ଦୃଷ୍ଟିରେ ସେ ସମସ୍ତ କାର୍ଯ୍ୟ ଆଶା ତିକ୍ତ ହୋଇଥିଲା । ସ୍ୱେଚ୍ଛାସେବକମାନେ ସଂପୂର୍ଣ୍ଣ ନୂତନ ବିଶେଷତଃ ସାନ ସାନ ସ୍କୁଲ ଛାତ୍ର ଯେଉଁମାନେ ଜୀବନରେ କେବେ ସଭାସମିତି ଦେଖି ନାହାନ୍ତି, ସେମାନଙ୍କର ଉପରେ ଉତ୍କଳ ମହାଜାତୀୟ ମହାସଭା ପରି ମହାପର୍ବତର ବୋଝ ମାଡ଼ି ପଡ଼ିଲା କିନ୍ତୁ ଉତ୍କଳ ଜନନୀଙ୍କ କୃପାରେ ସେମାନେ ସମସ୍ତ ବୋଝ ସମ୍ଭାଳି ନେଲେ କୌଣସି ବିଶୃଙ୍ଖଳା ନାହିଁ । ଯେଉଁଠାରେ ସମସ୍ତ ପ୍ରକାର ଅଭାବ ଓ ଅସୁବିଧା ପୂର୍ଣ୍ଣମାତ୍ରାରେ ପୂରି ରହିଅଛି, ମଜୁରି ଦେଲେ ସୁଦ୍ଧା କୁଲି ଜଣେ ମିଳିବା ଦୁର୍ଘଟ, ସେପରି ସ୍ଥାନରେ ଜଣେ ଅତିଥିକୁ ସତ୍କାର କରିବା ବଡ଼ ମୁସକିଲ, କିନ୍ତୁ ସ୍ୱେଚ୍ଛାସେବକମାନେ ଗଉଡ଼, ପାଚକର କାର୍ଯ୍ୟକରି କୌଣସି ରୂପେ ଯେ କାମ ନିର୍ବାହକରି ନେଲେ ଏହା ସେମାନଙ୍କ ପକ୍ଷେ କମ୍ ପ୍ରଶଂସାର ବିଷୟ ନୁହେଁ ।

ବିଭିନ୍ନ ସ୍ଥାନରୁ ସମାଗତ ପ୍ରତିନିଧି ଓ ଦର୍ଶକମାନେ ଅବଶ୍ୟ କଷ୍ଟ ଓ ଅସୁବିଧା ଭୋଗ କରିଅଛନ୍ତି, କିନ୍ତୁ ଦେଶ-କାଳ-ପାତ୍ର ଦୃଷ୍ଟିରେ କେହି ଅସନ୍ତୁଷ୍ଟ ବା ବିରକ୍ତ ନହୋଇ ମାତୃଯଜ୍ଞରେ ଲାଗି ପଡ଼ିଥିଲେ । ଅଭ୍ୟର୍ଥନା ସଭା ଅତିଥିମାନଙ୍କର ଅଭ୍ୟର୍ଥନା ଯଥାଶକ୍ତି କରିଥିଲେ । ସେମାନେ ଏତିକି ଭୁଲ କଲେ ଯେ ସେହି ସ୍ଥାନ ଦୃଷ୍ଟିରେ ପଡ଼ୋଶୀ ଭାଇମାନଙ୍କୁ ସାହାଯ୍ୟ ମାଗିଥିଲେ ଏବଂ ସ୍ଥାନୀୟ ଅବସ୍ଥା ଆଗରୁ ସ୍ପଷ୍ଟ ପ୍ରକାଶ କରି ଦେଇଥିଲେ ବଡ଼ ଭଲ ହୋଇଥାନ୍ତା, ମଧ୍ୟ ଅନେକ ସୁବିଧା କରାଯାଇପାରିଥାନ୍ତା । ସେସବୁ ଯାହା ହେଉ ଉଦ୍ୟୋକ୍ତାମାନେ ଅସୁବିଧାମୟ କ୍ଷେତ୍ରରେ କାର୍ଯ୍ୟ କରି ଯେ ଏଡ଼େ ବଡ଼ କାର୍ଯ୍ୟ ଚଳାଇ ନେଲେ ଏଥିସକାଶେ ଆମ୍ଭେମାନେ ସେମାନଙ୍କୁ ଆନ୍ତରିକ ଧନ୍ୟବାଦ ପ୍ରଦାନ କରୁଅଛୁ ।

୩୦ ତାରିଖର ପ୍ରାତଃକାଳ ପୂର୍ବରୁ ପ୍ରାକୃତିକ ଉତ୍କଳର ପ୍ରତିନିଧି ଓ ଦର୍ଶକମାନେ ଚକ୍ରଧରପୁରରେ ଉପସ୍ଥିତ ହୋଇଯାଇଥିଲେ । ଡେରାଡଙ୍ଗା ଧରୁ ଧରୁ ସମୟ ଟିକିଏ ବଳି ପଡ଼ିଲା । ଏଣୁ ସଭାର କାର୍ଯ୍ୟ ୧୨ଟା ପରେ ହୋଇଥିଲା । ସମ୍ମିଳନୀ ମଣ୍ଡପରେ ପ୍ରତିନିଧି ଓ ଦର୍ଶକମାନେ ସମବେତ ହୋଇ ଯେଝା ଆସନରେ ଉପବିଷ୍ଟ ହେଲେ । ପ୍ରାୟ ଗୋଟାଏ ସମୟରେ ପ୍ରସ୍ତାବିତ ସଭାପତି ମହୋଦୟ ସମ୍ମିଳନୀ ମଣ୍ଡପରେ ସ୍ୱେଚ୍ଛାସେବକମାନଙ୍କ ଗହଣରେ ବିରାଜ କଲେ । ସଭାସ୍ଥ ଜନମଣ୍ଡଳୀ ଦଣ୍ଡାୟମାନ ହୋଇ ସଭାପତିଙ୍କର ସମ୍ମାନ ପ୍ରଦର୍ଶନ କଲେ । ସଭାପତି ଆସନରେ ଆସୀନ ହେବା ମାତ୍ରକେ 'ଭାରତ ଗୀତିକା' ସଙ୍ଗୀତ ହାରମୋନିୟମ ଯନ୍ତ୍ର ସାହାଯ୍ୟରେ ଗୀତ ହେଲା ସଭାଜନମାନେ ଦଣ୍ଡାୟମାନ ମାତୃପୂଜାରେ ଜନନୀର ବନ୍ଦନା କଲେ । ଉଦ୍‌ବୋଧନ ଗୀତ ହେଲା ।

ଅଭ୍ୟର୍ଥନା ସଭାପତି ଆନନ୍ଦପୁରରେ ରାଜା ଠାକୁର ଉଦିତ ନାରାୟଣ ସିଂହ ଦେବ ଅସୁସ୍ଥତା ନିବନ୍ଧନ ଅନୁପସ୍ଥିତ ଥିବା ହେତୁ ତାଙ୍କର ଲିଖିତ ସୁଦୀର୍ଘ ଅଭିଭାଷଣ ସିଂହଭୂମିର ପୁରୁଷ ସିଂହ ପଣ୍ଡିତ ଶ୍ରୀକୃଷ୍ଣ ଆଚାର୍ଯ୍ୟ ପାଠ କରିଥିଲେ । ସେଥିରେ ଉତ୍କଳର ପ୍ରାଚୀନ ଗୌରବ ବର୍ଣ୍ଣନ, ପୁରୀ ଅଧିବେଶନର କଥା, ସିଂହଭୂମି ଚକ୍ରଧରପୁରର ଭୌଗୋଳିକ ଓ ଐତିହାସିକ ପରିଚୟ, ସିପାହୀ ବିଦ୍ରୋହରେ ଚକ୍ରଧରପୁର ବିଶେଷତ୍ୱ, ଉକ୍ତ ବିଦ୍ରୋହରେ ସଂଶ୍ଳିଷ୍ଟ ଚକ୍ରଧରପୁରର ଭୂତପୂର୍ବ ରାଜାଙ୍କର ସ୍ମୃତିର ପରିଚୟ, ସିଂହଭୂମିରେ ଶତକଡ଼ା ୪୦ ଜଣ ଓଡ଼ିଆ ଥିବା ତଥା ଆଦିମ ଅଧିବାସୀ 'ହୋ' ଜାତିଙ୍କ ଛଡ଼ା ଅନ୍ୟାନ୍ୟ ଅଧିବାସୀମାନଙ୍କ ମଧ୍ୟରେ ଓଡ଼ିଆ ସଂଖ୍ୟା ଶତକଡ଼ା ୯୦ ଥିବା କଥା ବିଶଦ୍‌ଭାବରେ ବିବୃତ ଥିଲା ।

ତତ୍ପରେ ଅଭ୍ୟର୍ଥନା ସଭାର ସଂପାଦକ ଶ୍ରୀ ବ୍ରଜମୋହନ ତ୍ରିପାଠୀ ପୂର୍ବ ପ୍ରଥାନୁସାରେ ସମ୍ମିଳନୀରେ ଯୋଗ ଦେଇ ନ ପାରିଥିବା ବ୍ୟକ୍ତିମାନଙ୍କଠାରୁ ଆସିଥିବା ସହାନୁଭୂତି ସୂଚକ ଟେଲିଗ୍ରାଫ ଓ ପତ୍ର ପାଠ କରିବାକୁ ଛିଡ଼ା ହୁଅନ୍ତେ, ଅନେକେ ସେପରି ପତ୍ର ପଢ଼ା ହେବା ଓ ତାହା ଶୁଣିବାକୁ ଅନିଚ୍ଛା ପ୍ରକାଶ କରି ଆପତ୍ତି କରିଥିଲେ । ବାସ୍ତବରେ ଏପରି ଅନେକ ଦେଶହିତୈଷୀ ବ୍ୟକ୍ତି ଅଛନ୍ତି, ଯେଉଁମାନେ ଶକ୍ତି ସାମର୍ଥ୍ୟ ଓ ସମସ୍ତ ସୁବିଧା ସତ୍ତ୍ୱେ ସମ୍ମିଳନୀକୁ ନଆସି କେବଳ ନାମ ଓ ମହତ୍ୱ ରକ୍ଷା ସକାଶେ ଗୋଟାଏ ଉପଯୁକ୍ତ ପରି ଦେଶ ହିତୈଷଣା ଦେଖାଇ ତାରଟିଏ ବା ପତ୍ର ଖଣ୍ଡିଏ ପଠାଇ ଦେଇଥାନ୍ତି । ତେବେ ମି. ଦାସଙ୍କ ପତ୍ର ପାଠ ହୋଇଥିଲା । ସେତେବେଳେ 'ଲଜ୍ଜା' 'ଲଜ୍ଜା' ଧ୍ୱନି ଉଠୁଥିଲା ।

ଅନନ୍ତର ସଭାପତି ନିର୍ବାଚିତ ହୋଇଥିଲେ ଶ୍ରୀ କୃଷ୍ଣଚନ୍ଦ୍ର ଆଚାର୍ଯ୍ୟ, ଶ୍ରୀ ଚନ୍ଦ୍ରଶେଖର ବେହେରା, ଶ୍ରୀ ବ୍ରଜସୁନ୍ଦର ଦାସ, ଶ୍ରୀ ମୁକୁନ୍ଦ ପ୍ରସାଦ ଦାସ, ଶ୍ରୀ ଶ୍ରୀଚନ୍ଦ୍ର ଘୋଷ, ଶ୍ରୀ ଲାଲମୋହନ ପତି, ଶ୍ରୀ ବୀର ରାଘବ ଆଚାରୀ ମହାଶୟମାନେ ପ୍ରସ୍ତାବକ, ଅନୁମୋଦକ ଓ ସମର୍ଥକ ରୂପେ ବକ୍ତୃତା କରି ସଭାପତି ନିର୍ବାଚନ କାର୍ଯ୍ୟ ସୂଚାରୁରୂପେ ନିର୍ବାହିତ କରିଥିଲେ ।

ଏଥି ଉତ୍ତାରେ ସଭାପତି ମହୋଦୟଙ୍କର ଅନୁଜ୍ଞାକ୍ରମେ ଶ୍ରୀ ଗୋପବନ୍ଧୁ ଦାସ 'ସମ୍ମିଳନୀର ଅଧିବେଶନ ରିପୋର୍ଟ ପାଠ କରିଥିଲେ । ଏହି ରିପୋର୍ଟ ମୁଦ୍ରିତ ହୋଇ ପୁସ୍ତକାକାରରେ ପ୍ରକାଶିତ ମୂଲ୍ୟର ଦୁଇଅଣା । ସଭାସ୍ଥଳରେ ପୁସ୍ତକ ବିକ୍ରି ହେବା ପାଇଁ ଗଚ୍ଛିତ ହୋଇଥିଲା । ଆମ୍ଭେମାନେ ଦୁଇଅଣା ଦେଇ ଖଣ୍ଡିଏ ପୁସ୍ତକ ପାଇଥିଲୁ ।

ଉକ୍ତ ରିପୋର୍ଟରୁ ଜଣାଗଲା ଯେ ପୁରୀରେ ଦୁର୍ଭିକ୍ଷ ସାହାଯ୍ୟରେ ବ୍ୟାପୃତ ଥିବା ହେତୁ ସ୍ଥାୟୀ ସଭା ଅନ୍ୟ ଦିଗରେ କାର୍ଯ୍ୟ କରିପାରିନାହାନ୍ତି । ଚରଖା ପ୍ରଚାର କରିବାର ଚେଷ୍ଟା କରାଯାଇଅଛି । ପୁରୀ ଜିଲ୍ଲାରେ ଅନେକ କପା ଚାଷ କରିଥିଲେ । ସ୍ଥାୟୀ ସଭାର ବୈଠକ ୩ ଥର ହୋଇଥିଲା । ସ୍ଥାୟୀ ସଭାର ମେମ୍ବରମାନେ ବୈଠକରେ ଯୋଗ ଦେଇ ନାହାନ୍ତି । ଅନେକ ସଭ୍ୟ ପତ୍ରର ଉତ୍ତର ସୁଦ୍ଧା ଦେଲେ ନାହିଁ । ଯୁଦ୍ଧ ଡାକ୍ତର ଫଣ୍ଡରେ କେବଳ ଟ.୧୫୬୩/-ଙ୍କା ଆଦାୟ

ହୋଇଅଛି । ଜିଲ୍ଲା ସମିତିମାନଙ୍କଠାରୁ ବାର୍ଷିକ ରିପୋର୍ଟ ସୁଦ୍ଧା ମିଳି ନାହିଁ । ପୂର୍ବ ସଂପାଦକ ଶ୍ରୀ ବ୍ରଜସୁନ୍ଦର ଦାସଙ୍କଠାରେ ଥିବା ସମ୍ମିଳନୀର ଟଙ୍କା ସେ ଦେଇ ନାହାନ୍ତି ।

ତଦନନ୍ତର ସଭାପତି ମହୋଦୟ ତାଙ୍କର ଲିଖିତ ଦୀର୍ଘ ଅଭିଭାଷଣ ଦେଢ଼ ଘଣ୍ଟା ବ୍ୟାପି ପାଠ କରିଥିଲେ । ସମୟାଭାବରୁ ସଭାପତି ଅଭିଭାଷଣ ମୁଦ୍ରିତ ହୋଇପାରି ନାହିଁ । ସଭାପତି ମହୋଦୟ ଏହି ଅଳ୍ପ ସମୟ ମଧ୍ୟରେ ନାନା ଚିନ୍ତାପୂର୍ଣ୍ଣ କରି ଅଭିଭାଷଣଟି ଲେଖିଥିଲେ । ସେ ଉତ୍କଳ ସାହିତ୍ୟ ଜଗତରେ ସୁପରିଚିତ । ଏବେ ଉତ୍କଳ ଜାତୀୟ ମହାସଭାରେ ଯେଉଁ ରାଜନୈତିକ ସମସ୍ୟାର ଛଟା ଦେଖାଇ ଗଲେ ତାହା ବାସ୍ତବରେ ଅନନ୍ୟ ସାଧାରଣ । ତାଙ୍କର ଅଭିଭାଷଣ ସମୟୋଚିତ ରୂପେ ଲିଖିତ ହୋଇଥିଲା । ଆମ୍ଭେମାନେ ସଦମ୍ଭରେ କହିପାରୁ ଯେ ମାନ୍ୟବର ଦାସ ମହୋଦୟଙ୍କ ସଭାପତିତ୍ୱରେ ଏପରି ଶକ୍ତିଶାଳୀ ସଭାପତି ଅଭିଭାଷଣ ଉତ୍କଳ ସମ୍ମିଳନୀ ପାଇ ନଥାନ୍ତେ । ତାଙ୍କର ଅଭିଭାଷଣର ସାରାଂଶ ନିମ୍ନରେ ପ୍ରଦତ୍ତ ହେଲା ।

କୃତଜ୍ଞତା ଜ୍ଞାପନ, ଅଭ୍ୟର୍ଥନା ସଭାକୁ ଧନ୍ୟବାଦ, ଆତ୍ମକଥା ପ୍ରକାଶ, ଭଗବାନଙ୍କ ଧ୍ୟାନ, ତିଳକଙ୍କ ମୃତ୍ୟୁରେ ଦୁଃଖ ପ୍ରକାଶ, ତିଳକଙ୍କ ଗୁଣକୀର୍ତ୍ତନ, ଗୁଣ ପୂଜାର ଆବଶ୍ୟକତା ବର୍ଣ୍ଣନ, ପ୍ରତିଭା ପୂଜାରେ ଉତ୍କଳର ମମତା ଜନ୍ମିଥିବା ଦେଖି ଆଶାର ସଞ୍ଚାର ଓ ଆନନ୍ଦ ପ୍ରକାଶ, ପୁରୀ ଦୁର୍ଭିକ୍ଷର ଚିତ୍ର ସ୍ମରଣ, ଦୁର୍ଭିକ୍ଷର ବିକଟଦୃଶ୍ୟ ବର୍ଣ୍ଣନ, ଦୁର୍ଭିକ୍ଷ ପ୍ରତୀକାରକଳ୍ପେ ସାହାଯ୍ୟ କମିଟିର କାର୍ଯ୍ୟକାରିତା, ସରକାର ଲୋକ ସାଧାରଣଙ୍କ ସହିତ ଅସହଯୋଗିତା ଦେଖାଇଥିବା, ସମ୍ମିଳନୀର ପ୍ରକୃତିର ନିର୍ଦ୍ଦେଶ ଅହିଂସା ପରମୋଧର୍ମ ନୀତି ଅବଲମ୍ବନରେ ଭାରତ କାର୍ଯ୍ୟ କରୁଥିବା, ଉତ୍କଳ ଖଣ୍ଡ ଭାରତରୁ ପୃଥକ୍ ନଥିବା, ଉତ୍କଳ ସମ୍ମିଳନୀ, ଭାରତ ଜାତୀୟ ମହାସଭାର ଅନ୍ତର୍ଗତ ହେବାର ଆବଶ୍ୟକତା, ସିଂହଭୂମିର ଭୌଗୋଳିକ ବିବରଣ, ସେଠାକାର ଓଡ଼ିଆ ଜାତିର ଦୁରବସ୍ଥା ବର୍ଣ୍ଣନ, ପୂର୍ବ ଜନସୁମାରୀରେ ବିଭିନ୍ନ ପ୍ରଦେଶାନ୍ତର୍ଗତ ଓଡ଼ିଆ ଲୋକ ସଂଖ୍ୟାର ନ୍ୟୂନତା, ଓଡ଼ିଆମାନଙ୍କ ପ୍ରତି ସରକାରଙ୍କର ତାଚ୍ଛଲ୍ୟକରଣ, ବ୍ରିଟିଶ ଶାସନରେ ଓଡ଼ିଆ ଜାତିର ଦୁର୍ବଳତା, ଓଡ଼ିଶାର ଦୁର୍ଗତି, ବ୍ରିଟିଶ ସାମ୍ରାଜ୍ୟର ବର୍ତ୍ତମାନ ଅବସ୍ଥା, ପଞ୍ଜାବ ଅତ୍ୟାଚାର, ଖିଲାଫ ପ୍ରସଙ୍ଗ ନେଇ ଭାରତବ୍ୟାପି ଅଶାନ୍ତି, ବଙ୍ଗଳା ଦ୍ୱିଖଣ୍ଡରେ ବଙ୍ଗଳାର ଚେଷ୍ଟାର ସାଫଲ୍ୟ, ବାଲେଶ୍ୱର ଜିଲ୍ଲାର ବିଜିଆ ଗ୍ରାମର ବିଚ୍ଛିନ୍ନତା, ମାନ୍ୟବର ଶ୍ରୀ ସଚ୍ଚିଦାନନ୍ଦ ସିଂହଙ୍କ ପ୍ରସ୍ତାବରେ ଓଡ଼ିଆ ଦେଶ ମିଶ୍ରଣର ତଦନ୍ତ ଆରମ୍ଭ, ଓଡ଼ିଆ ଜାତିର ଅବହେଳା, ଶ୍ରୀ ଗୋପବନ୍ଧୁବାବୁଙ୍କ ସିଂହଭୂମିର କାର୍ଯ୍ୟ ଶ୍ରୀ ଗୋଦାବରୀଶ ମିଶ୍ରଙ୍କ କାର୍ଯ୍ୟ ସରକାର ଲୋକ ମତ ଉପେକ୍ଷା କରୁଥିବା ଓଡ଼ିଆମାନେ ପଶୁପକ୍ଷୀଠାରୁ ହୀନ ଥିବା, ମହାତ୍ମା ଗାନ୍ଧୀଙ୍କ ମନ୍ତ୍ର, ଉତ୍କଳ ସମ୍ମିଳନୀ ଉତ୍କଳର ପ୍ରତିନିଧି ସଭାରୂପେ ରହିଥିବା, ନିଖିଳ ଭାରତୀୟ ଛାତ୍ର ସମ୍ମିଳନୀରେ ଉତ୍କଳର ଛାତ୍ରମାନେ ଯୋଗ ଦେଇଥିବାର ହେତୁ ଆନନ୍ଦ ପ୍ରକାଶ ଦେଶ କାଳ ପାତ୍ର ବିବେଚନାରେ ଓଡ଼ିଆ ଜାତିର କର୍ତ୍ତବ୍ୟ ନିର୍ଦ୍ଧାରଣ ଉପାଦେୟତା, ଶିକ୍ଷାର ଉଦ୍ଦେଶ୍ୟ, ମନୁଷ୍ୟ ତିଆରିର ଆବଶ୍ୟକତା, ରାଜନୈତିକ ଶିକ୍ଷାର ପ୍ରଚାର, ହିନ୍ଦୁ ମୁସଲମାନଙ୍କର ଏକତାରେ ଆନନ୍ଦ ପ୍ରକାଶ, ବର୍ତ୍ତମାନ ଉତ୍କଳର ଜାତୀୟ କର୍ତ୍ତବ୍ୟତାର ଉତ୍କଳ ସମ୍ମିଳନୀକୁ କଂଗ୍ରେସର ଶାଖା ରୂପେ ରଖିବା, ସ୍ୱରାଜ ଲାଭ ସକାଶେ ଜାତୀୟ ଆକାଂକ୍ଷା, ଅସହଯୋଗୀମାନଙ୍କ ନୀତିର ପ୍ରାଧାନ୍ୟ, ତ୍ୟାଗ ସ୍ୱୀକାର । ପ୍ରାଥମିକ ଶିକ୍ଷାର ଶୋଚନୀୟ ଅବସ୍ଥା, ଆଧୁନିକ ଶିକ୍ଷାର ତ୍ରୁଟି, ବାଧ୍ୟତାମୂଳକ ଅବୈତନିକ ଶିକ୍ଷା ପଦ୍ଧତି ଆଇନ ଏପର୍ଯ୍ୟନ୍ତ କାର୍ଯ୍ୟରେ ପରିଣତ ହେଉ ନଥିବା, ପଲ୍ଲୀ ଗ୍ରାମମାନଙ୍କର ଶିକ୍ଷା, ସ୍ୱାସ୍ଥ୍ୟ, ସଭ୍ୟତାର ଅବସ୍ଥା, ଜିଲ୍ଲାସମିତି ଓ ଶାଖା ସମିତିମାନଙ୍କର କାର୍ଯ୍ୟ, ବର୍ତ୍ତମାନ କାର୍ଯ୍ୟର ଯୁଗ ଆବିର୍ଭାବ, ସ୍ୱଦେଶୀ ବ୍ୟବହାର, ଶ୍ରମଜୀବୀମାନଙ୍କର ଦୁଃଖ ଦୁର୍ଦ୍ଦଶା, ଓଡ଼ିଶାର ନିମ୍ନ ପ୍ରାଇମେରୀ ସ୍କୁଲ ଶିକ୍ଷକମାନଙ୍କର ଅବସ୍ଥା ଓ ଇଚ୍ଛା, କୃଷିର ଅବସ୍ଥା, ବ୍ରିଟିଶ ଶାସନ ପ୍ରଣାଳୀ ଯୋଗୁଁ ଓଡ଼ିଶାର ଆର୍ଥିକ ଦୁରବସ୍ଥା, ବର୍ତ୍ତମାନ ଶାସନ ସଂସ୍କାରରେ ଆୟ ବ୍ୟୟ ସମସ୍ୟା ଘେନି ଅନୁପକାରିତା, ସମବାୟ ଚେଷ୍ଟା, ସମବାୟ ଆୟୋଜନର ଉପକାରିତା ଓ ପ୍ରୟୋଜନତା, ଶିକ୍ଷା ପ୍ରଚାର ସକାଶେ ପ୍ରଚାରକ ନିୟୋଗ, ଗୋ-ରକ୍ଷା ବିଷୟ ଆଦି ।

ସଭାପତି ମହୋଦୟଙ୍କ ଅଭିଭାଷଣ ଯେପରି ସାରଗର୍ଭ, ସେପରି ଉତ୍ତେଜନାପୂର୍ଣ୍ଣ ଥିଲା । ନାନାପ୍ରକାର ସରଳ, ସୁନ୍ଦର ଓ ସ୍ୱାଭାବିକ ଦୃଷ୍ଟାନ୍ତଦ୍ୱାରା ସଭାପତି ମହୋଦୟ ତାଙ୍କର ଅଭିଭାଷଣକୁ ସଜାଇ ରଖିଥିଲେ । ଅଭିଭାଷଣ ପାଠ ସମୟରେ 'ବନ୍ଦେ ମାତରମ୍', 'ଜୟ ଉତ୍କଳର ଜୟ', 'ଜୟ ମହାତ୍ମା ଗାନ୍ଧୀ କି ଜୟ', 'ଜୟ ଭାରତ କି ଜୟ' ଧ୍ୱନି ଓ ଘନ ଘନ କରତାଳି ଉଠୁଥିଲା ।

ତତ୍ପରେ ପ୍ରଥମ ପ୍ରସ୍ତାବଟି ସଭାପତିଙ୍କ ଦ୍ୱାରା ଉତ୍ଥାପିତ ହୋଇ 'ମାତୃବାଣୀ' ସଙ୍ଗୀତ ଗାନ ପରେ ସେଦିନ ସଭାର କାର୍ଯ୍ୟ ସ୍ଥଗିତ ରହିଲା ।

ସନ୍ଧ୍ୟା ସମୟରେ ବିଷୟ ନିର୍ବାଚନ ସଭା ବସିଲା । ଉତ୍କଳର ବିଭିନ୍ନ ଅଞ୍ଚଳରୁ ୧୮୧ ଜଣ ପ୍ରତିନିଧି ଉପସ୍ଥିତ ଥିଲେ । ଏହାଛଡ଼ା ଅନେକ ଦର୍ଶକ ସୁଦ୍ଧା ସମବେତ ହୋଇଥିଲେ । ସଭାମଣ୍ଡପରେ ଜନତାର ସଂଖ୍ୟା ସାର୍ଦ୍ଧ ସହସ୍ର ପରିମିତ ଥିବାର ଅନୁମିତ ହୁଏ । ସ୍ଥାନୀୟ ପ୍ରତିନିଧିମାନଙ୍କୁ ବାଦ୍ ଦେଲେ ସମ୍ବଲପୁର ଜିଲ୍ଲାର ପ୍ରତିନିଧି ଓ ଦର୍ଶକ ସଂଖ୍ୟା ସର୍ବାପେକ୍ଷା ଅଧିକ ଥିଲା । ଉପସ୍ଥିତ ବ୍ୟକ୍ତିମାନଙ୍କ ମଧ୍ୟରେ କଟକର ଶ୍ରୀ ବ୍ରଜସୁନ୍ଦର ଦାସ, ଶ୍ରୀ ବିଶ୍ୱନାଥ କର, ଶ୍ରୀ ବିଚିତ୍ରାନନ୍ଦ ଦାସ, ଶ୍ରୀ ରାଜକିଶୋର ତ୍ରିପାଠୀ, ଶ୍ରୀ ଚିନ୍ତାମଣି ଆଚାର୍ଯ୍ୟ ଓ ଶ୍ରୀ କୃତ୍ତିବାସ ନନ୍ଦ, ପୁରୀର ଶ୍ରୀ ଗୋପବନ୍ଧୁ ଦାଶ, ଶ୍ରୀ ଶଶିଚନ୍ଦ୍ର ଘୋଷ ଓ ଶ୍ରୀରାଧା କୃଷ୍ଣଦାସ ମହନ୍ତ, ଗଞ୍ଜାମର ଶ୍ରୀ ବିଶ୍ୱନାଥ ମିଶ୍ର, ଶ୍ରୀ ରାଜଗୋପାଳ ଆଚାରୀ, ଶ୍ରୀବତ୍ସ ପଣ୍ଡା ଓ ଶ୍ରୀ ହରିହର ସଦସ୍ୟ, କଲିକତାର ଶ୍ରୀ ବାଳକୃଷ୍ଣ ମିଶ୍ର, ଶ୍ରୀ ସୁରେନ୍ଦ୍ର

ନାରାୟଣ ଆଚାର୍ଯ୍ୟ ଓ ଶ୍ରୀ ନୀଳକଣ୍ଠ ଦାଶ, ସିଂହଭୂମିର ଶ୍ରୀ ବ୍ରଜମୋହନ ତ୍ରିପାଠୀ, ଶ୍ରୀ କୃଷ୍ଣଚନ୍ଦ୍ର ଆଚାର୍ଯ୍ୟ, ଶ୍ରୀ ପୂର୍ଣ୍ଣଚନ୍ଦ୍ର ତ୍ରିପାଠୀ, ଶ୍ରୀ ସୁରେଶ ଷଡଙ୍ଗୀ ଓ ଶ୍ରୀ କାହ୍ନୁକିଶୋର ପାଣି, ମଧ୍ୟପ୍ରଦେଶର ଶ୍ରୀ ସମସେର ସିଂ (ରାୟଗଡ଼), ଶ୍ରୀ ଲକ୍ଷ୍ମଣ ପଟ୍ଟନାୟକ (ଖଡ଼ିଆଳ), ଶ୍ରୀ ବୈକୁଣ୍ଠନାଥ ବଡ଼ପଣ୍ଡା, ଶ୍ରୀ ଦୟାନିଧି ଗୌନ୍ତିଆ ଓ ଶ୍ରୀ ଘାସିରାମ ଗୌନ୍ତିଆ (ଫୁଲଝର), ବାଲେଶ୍ୱରର ଶ୍ରୀ ରାଧାପ୍ରସାଦ ଦାସ, ଶ୍ରୀ ମୁକୁନ୍ଦ ପ୍ରସାଦ ଦାସ ଓ ଶ୍ରୀ ଭଗବତ ପ୍ରସାଦ ମହାପାତ୍ର, ସମ୍ବଲପୁରର ଶ୍ରୀ ଚନ୍ଦ୍ରଶେଖର ବେହେରା, ଶ୍ରୀ ବିହାରୀ ଦାସ ମହନ୍ତ, ଶ୍ରୀ ଶଙ୍କର ପ୍ରସାଦ ମିଶ୍ର, ଶ୍ରୀ ବ୍ରଜମୋହନ ପଣ୍ଡା, ଶ୍ରୀ ରାମକୃଷ୍ଣ ବେହେରା,, ଶ୍ରୀ ଧରଣୀଧର ମିଶ୍ର, ଶ୍ରୀ ପୁରୁଷୋତ୍ତମ ପଣ୍ଡା, ଶ୍ରୀ ବୃନ୍ଦାବନ ଗୁରୁ, ଶ୍ରୀ ଦେବୀ ପ୍ରସାଦ ମିଶ୍ର, ଶ୍ରୀ ବାଲୁଙ୍କେଶ୍ୱର ପାଣ୍ଡେ, ଶ୍ରୀ ଗୋପୀନାଥ ସିଂ, ଶ୍ରୀ ପିତାମ୍ବରଚନ୍ଦ୍ର ଦେ ଓ ଶ୍ରୀ ସ୍ୱପ୍ନେଶ୍ୱର ଦାଶଙ୍କ ନାମ ଉଲ୍ଲେଖଯୋଗ୍ୟ । ବିହାର-ଓଡ଼ିଶା ପ୍ରଦେଶର ଗଡ଼ଜାତମାନଙ୍କରୁ ମଧ୍ୟ ଅନେକ ପ୍ରତିନିଧି ଓ ଦର୍ଶକ ଉପସ୍ଥିତ ହୋଇଥିଲେ । ମୟୂରଭଞ୍ଜ ରାଜ୍ୟରୁ ଶ୍ରୀ ଲାଲମୋହନ ପତି ଆସିଥିଲେ । କଟକ ଓ ବାଲେଶ୍ୱରରୁ ଅତିଅଳ୍ପ ପ୍ରତିନିଧି ଆସିଥିଲେ । ଗଞ୍ଜାମ ବିଗତ ସମସ୍ତ ଅଧିବେଶନରେ ଯେପରି ଉତ୍ସାହ ଦେଖାଇ ଆସୁଥିଲା, ଏ ବର୍ଷର ଉପସ୍ଥାନ ସଂଖ୍ୟା ଦୃଷ୍ଟିରେ ବଡ଼ ନୈରାଶ୍ୟବୋଧ ହୋଇଅଛି ।

ବିଶ୍ୱନାଥ କର, ଶ୍ରୀ ମୁକୁନ୍ଦ ପ୍ରସାଦ ଦାସ, ଶ୍ରୀ ଶଶିଚନ୍ଦ୍ର ଘୋଷ ପ୍ରମୁଖ କତିପୟ ପ୍ରତିନିଧି ବ୍ରଜ ସୁନ୍ଦର ବାବୁଙ୍କ ପକ୍ଷ ସମର୍ଥନ କଲେ । ଏ ସମୟରେ ସଭାରେ ମହାତାଣ୍ଡବ ଉପସ୍ଥିତ ହେବ । ଗୋପବନ୍ଧୁବାବୁଙ୍କ ଦଳର ବକ୍ତୃତା ସମୟରେ ସଭାସ୍ଥଳ କରତାଳି ଦ୍ୱାରା ଉଚ୍ଛୁଳି ପଡୁଥିଲା । କିନ୍ତୁ ବ୍ରଜସୁନ୍ଦରବାବୁଙ୍କ ଦଳର ବକ୍ତୃତା ସମୟରେ ଘୋର ବାଦପ୍ରତିବାଦ, ପିଲାମାନଙ୍କ ଦୈବାତ୍ କରତାଳିର ତୀବ୍ର ନିଷେଧ ଦେଖା ପଡ଼ିଲା । ଏହି ପ୍ରସ୍ତାବର ସପକ୍ଷରେ ଓ ବିପକ୍ଷରେ ଭୋଟ ନିଆଗଲା । ପ୍ରତ୍ୟେକ ପ୍ରତିନିଧି ସଭାପତିଙ୍କ ଆହ୍ୱାନରେ ସଭାପତିଙ୍କ ସମ୍ମୁଖକୁ ଯାଇ ଉଭୟପକ୍ଷଙ୍କ ବିଦ୍ୟମାନରେ ନିଜ ନିଜ ମତବ୍ୟକ୍ତ କରିଥିଲେ । ଭୋଟ ଗଣନା କରି ଦେଖାଗଲା ଯେ, ଗୋପବନ୍ଧୁବାବୁଙ୍କ ପକ୍ଷରେ ୧୨୭ ଜଣ ଏବଂ ବ୍ରଜସୁନ୍ଦରବାବୁଙ୍କ ପକ୍ଷରେ ୧୬ ଜଣ ମାତ୍ର ମତ ଦେଇଥିଲେ । ସନ୍ଧ୍ୟା ହୋଇ ଯିବାରୁ ସଭାର କାର୍ଯ୍ୟ ସ୍ଥଗିତ ରହିଲା ।

ରାତ୍ରିରେ ପୁଣି ବିଷୟ ନିର୍ବାଚନ କମିଟି ବସିଲା । ତୃତୀୟ ଦିନ ଗୋ-ରକ୍ଷା ବିଷୟ ନେଇ ଗୋଟିଏ ସଭା ହେବା ପରେ ସମ୍ମିଳନୀର କାର୍ଯ୍ୟ ଆରମ୍ଭ ହେଲା । ଏ ଦିନରେ ସଭାରେ ଅବଶିଷ୍ଟ ପ୍ରସ୍ତାବମାନ ଅବାଧରେ ଗୃହୀତ ହୋଇଗଲା । କଟକର ଅନେକ ପ୍ରତିନିଧି ପୂର୍ବରାତ୍ରୀର ଗାଡ଼ିରେ ବାହାରିଗଲେ । ସମ୍ବଲପୁରର ପ୍ରତିନିଧିମାନେ ଟାଟା କମ୍ପାନୀଙ୍କର ଲୌହ କାରଖାନା ଦେଖିବାକୁ ମଧ୍ୟ ସେମାନଙ୍କର ସହଚର ହେଲେ ।

ଉକ୍ତ ସମ୍ମିଳନୀର ଆଗାମୀ ଅଧିବେଶନ ମଧ୍ୟପ୍ରଦେଶଭୁକ୍ତ ପଦ୍ମପୁରରେ ହେବା ପାଇଁ ମଧ୍ୟପ୍ରଦେଶର ପ୍ରତିନିଧିମାନେ ଆହ୍ୱାନ କରିଅଛନ୍ତି ।

ଏଥରର ଉତ୍କଳ ସମ୍ମିଳନୀରେ ଜାତୀୟ ଜାଗରଣର ପୂର୍ଣ୍ଣ ସଂକେତ ଦେଖା ଯାଇଥିଲା । ଆଜି ପର୍ଯ୍ୟନ୍ତ ଉତ୍କଳ ସମ୍ମିଳନୀ ରାଜନୈତିକ ଆନ୍ଦୋଳନରୁ କର ଛଡ଼ା ଦେଇ ରହୁଥିଲା । କଂଗ୍ରେସ ସହିତ ଏହି ସମ୍ମିଳନୀର କୌଣସି ସମ୍ବନ୍ଧ ନଥିଲା । ବରଂ କଂଗ୍ରେସର ବିରୁଦ୍ଧରେ ଉତ୍କଳ ସମ୍ମିଳନୀର ସୃଷ୍ଟି ହୋଇଅଛି ବୋଇଲେ ଚଳେ, କିନ୍ତୁ ଚତୁର୍ଦ୍ଦଶ ଅଧିବେଶନରେ ସଭାପତି ଶ୍ରୀ ଗୋପବନ୍ଧୁ ଦାଶଙ୍କର ଅଭିଭାଷଣରେ ରାଜନୈତିକ ବୀଜର ଅଙ୍କୁର ଉଦ୍‌ଗତ ହୁଏ । ସେହି ଅଙ୍କୁର ଗତ ପୁରୀ ଅଧିବେଶନରେ ସଭାପତି ଶ୍ରୀ ଚନ୍ଦ୍ରଶେଖର ବେହେରାଙ୍କ ଅଭିଭାଷଣର ପୃଷ୍ଟ ହୋଇଥିଲା । ଏ ବର୍ଷ ପୂର୍ବ ଦୁଇ ସଭାପତିଙ୍କର ପ୍ରସ୍ତାବ, ଅନୁମୋଦନ ଏବଂ ବର୍ତ୍ତମାନ ସଭାପତିଙ୍କର ଅଭିଭାଷଣ ସଂଯୋଗରେ ମୃତ୍ତିକା, ଜଳ, ବାୟୁ ଲାଗି ଫୁଟି ଉଠିଅଛି । ଏଣିକି ଉତ୍କଳ ସମ୍ମିଳନୀ କଂଗ୍ରେସର ଉଦ୍ଦେଶ୍ୟ ଓ ଆକାଂକ୍ଷା ଅନୁସରଣରେ ପରିଚାଳିତ ହେବ । ବିଚ୍ଛିନ୍ନ ଓ ଅବନତ ଓଡ଼ିଆ ଜାତି ଭାରତ ମହାଜାତୀୟ ସମ୍ମିଶ୍ରଣରେ ମିଶିଯାଇ ଏକପକ୍ଷରେ ଯେପରି ନିଜର ମର୍ଯ୍ୟାଦା ରକ୍ଷା କରିଅଛି, ଅନ୍ୟପକ୍ଷରେ ସେପରି ଭାରତୀୟ ଜାତିକୁ ପରିପୃଷ୍ଟ କରିଅଛି ।

ଆମ୍ଭେମାନେ ଉତ୍କଳକୁ ଭାରତୀୟ ମହାଜାତିରୁ ବିଚ୍ଛିନ୍ନ ହୋଇ ରହିଆସୁଥିବା ଦେଖି ବରାବର ଦୁଃଖ ଓ କ୍ଷୋଭ ପ୍ରକାଶ କରି ଆସୁଥିଲୁଁ । 'ଉତ୍କଳ ସେବକ'ରେ ଆମ୍ଭମାନଙ୍କର କ୍ଷୁଦ୍ର ମତ ମଧ୍ୟ ପ୍ରକାଶିତ କରିଥିବା କଥା ଆମ୍ଭମାନଙ୍କ ପାଠକଗଣଙ୍କର ସ୍ମରଣ ଥାଇପାରେ । ଆଜି ସିଂହଭୂମିର ଅଧିବେଶନରେ ସେହି ପ୍ରସ୍ତାବ ପରିଗୃହୀତ ହୋଇ ଯାଇଥିବା ଦେଖି ଆମ୍ଭେମାନେ ଯତ୍‌ପରୋନାସ୍ତି ଆନନ୍ଦିତ ହୋଇଅଛୁ ।

ପରିଶେଷରେ ସଭାପତି ମହୋଦୟ ଧୀର ସ୍ଥିର ଭାବରେ ସଭାର ସମସ୍ତ କାର୍ଯ୍ୟ ସୂଚାରୁ ରୂପେ ସୁସମ୍ପନ୍ନ କରିଥିବା ହେତୁ ତାଙ୍କୁ ଆନ୍ତରିକ ଧନ୍ୟବାଦ ପ୍ରଦାନ କରୁଅଛୁ । ଉତ୍କଳ ସମ୍ମିଳନୀର ପ୍ରସ୍ତାବବଳୀ -

୧. ଦେଶର ଏହି ସନ୍ଧି ସମୟରେ ଯାହାଙ୍କର ଶକ୍ତି ଓ ସହାୟତା ଅତ୍ୟନ୍ତ ଆବଶ୍ୟକ ଥିଲା ସେହି ସାଧୁ ଶକ୍ତିଶାଳୀ ଦେଶ ନେତା ଲୋକମାନ୍ୟ ତିଳକଙ୍କ ବିୟୋଗରେ ଏ ସମ୍ମିଳନୀ ଗଭୀର ଦୁଃଖ ପ୍ରକାଶ କରୁଅଛନ୍ତି ।

୨. ସମ୍ମିଳନୀର ବର୍ତ୍ତମାନ ଯେ ଉଦ୍ଦେଶ୍ୟ ନିରୂପିତ ହୋଇଅଛି ତାହା ସ୍ଥିର ରଖାଯାଇ, ଭାରତ ଜାତୀୟ ମହାସମିତିର ଯେ ଉଦ୍ଦେଶ୍ୟ ଓ ଆକାଂକ୍ଷା, ତାହା ଏହି ସମ୍ମିଳନୀର ଉଦ୍ଦେଶ୍ୟ ଓ ଆକାଂକ୍ଷା ରୂପେ ଗୃହୀତ ହେଉ ।

୩. ଭାରତ ଜାତୀୟ ମହାସମିତିର ପ୍ରକୃତି ଏବଂ ଗଠନ ବଦଳାଇବାକୁ ନିଯୁକ୍ତି ହୋଇଥିବା ସବ୍‌କମିଟି ତାଙ୍କ ରିପୋର୍ଟରେ ଭାଷାନୁସାରେ କଂଗ୍ରେସ ପ୍ରଦେଶ ଗଠନର ସେ ବିଧାନ ଗ୍ରହଣ କରିଅଛନ୍ତି । ଏ ସମ୍ମିଳନୀ ତାହା ସର୍ବାନ୍ତଃକରଣରେ ସମର୍ଥନ କରୁଅଛନ୍ତି ।

୪. ଓଡ଼ିଶାର ଗଡ଼ଜାତମାନଙ୍କର ଉନ୍ନତି ନିମନ୍ତେ କି କି ଉପଯୁକ୍ତ ବ୍ୟବସ୍ଥା କରାଯିବ, ଗଡ଼ଜାତର ରାଜା ଏବଂ ପ୍ରଜା ସାଧାରଣଙ୍କ ସହିତ ପରାମର୍ଶ କରି ତାହା ନିରୂପଣ କରିବା ଲାଗି ନିମ୍ନଲିଖିତ ବ୍ୟକ୍ତିମାନଙ୍କୁ ଘେନି ଗୋଟିଏ କର୍ମୀ ଗଠିତ ହେଉ ଏବଂ ଆବଶ୍ୟକ ଅନୁସାରେ ସଭ୍ୟ ସଂଖ୍ୟା ବଢ଼ାଇବାର ଭାର ତାଙ୍କ ଉପରେ ରହୁ ।

୧. ଶ୍ରୀ ଗୋପବନ୍ଧୁ ଦାଶ, ୨. ଶ୍ରୀ ଜଗବନ୍ଧୁ ସିଂହ, ୩. ଶ୍ରୀ ବ୍ରଜମୋହନ ତ୍ରିପାଠୀ, ୪. ଶ୍ରୀ ସ୍ୱପ୍ନେଶ୍ୱର ଦାଶ ।

୫(କ) ସମ୍ମିଳନୀର ଗତ ପୁରୀ ଅଧିବେଶନରେ ନିଯୁକ୍ତ ହୋଇଥିବା ଦୁର୍ଭିକ୍ଷ ଅନୁସନ୍ଧାନ ସମିତିର ଶେଷ ରିପୋର୍ଟ ଏ ସମ୍ମିଳନୀ ଗ୍ରହଣ କରୁଅଛନ୍ତି ।

(ଖ) ପୁରୀ ଦୁର୍ଭିକ୍ଷ ସଂପର୍କରେ ବିହାର-ଓଡ଼ିଶା ସରକାରଙ୍କ ଭାବ ଏବଂ କାର୍ଯ୍ୟକଳାପକୁ ଏ ସମ୍ମିଳନୀ ନିନ୍ଦନୀୟ ମଣୁଅଛନ୍ତି ।

(ଗ) ପୁରୀ ଦୁର୍ଭିକ୍ଷ ସାହାଯ୍ୟ ବିଷୟରେ ମହାତ୍ମା ଗାନ୍ଧୀଙ୍କ ସହାନୁଭୂତି ଏବଂ ମମତା ଯୋଗୁଁ ତାଙ୍କ ନିକଟରେ ଏ ସମ୍ମିଳନୀ ଗଭୀର କୃତଜ୍ଞତା ପ୍ରକାଶ କରୁଅଛନ୍ତି ଏବଂ ଯେଉଁ ମହାଶୟ ବ୍ୟକ୍ତିମାନେ ଏଥିନିମନ୍ତେ ଅର୍ଥ ସାହାଯ୍ୟ ଓ କାୟିକ ପରିଶ୍ରମ କରିଅଛନ୍ତି, ସେମାନଙ୍କୁ ଏବଂ ବିଶେଷତଃ ଭାରତ ସେବକ ସମିତି ଅମୃତଲାଲ ଠାକୁର ଓ ଲକ୍ଷ୍ମୀନାରାୟଣ ସାହୁଙ୍କ ଦୁର୍ଭିକ୍ଷ ସାହାଯ୍ୟ ସକାଶେ ପଠାଇଥିବାରୁ ଏବଂ ସେମାନେ ସୁଦକ୍ଷ ଭାବରେ କାର୍ଯ୍ୟ କରିଥିବାରୁ ଭାରତ ସେବକ ସମିତିକୁ ଧନ୍ୟବାଦ ଦେଉଅଛନ୍ତି ।

୬. ସମ୍ମିଳନୀର ପୂର୍ବ ଅଧିବେଶନମାନଙ୍କରେ ଓଡ଼ିଆ ଦେଶମିଶ୍ରଣ ସମ୍ବନ୍ଧେ ନିର୍ଦ୍ଧାରିତ ହୋଇଥିବା ପ୍ରସ୍ତାବମାନ ଏ ସମ୍ମିଳନୀ ସ୍ୱୀକାର କରୁଅଛନ୍ତି ଏବଂ ପ୍ରକାଶ କରୁଅଛନ୍ତି ସେ ଦେଶ ମିଶ୍ରଣରେ ଯେତେ ଅଧିକ ବିଳମ୍ବ ହେବ, ଓଡ଼ିଆ ଜାତିର ପ୍ରାଣର ବେଦନା ଏବଂ ଅସନ୍ତୋଷ ଓ ଅଶାନ୍ତି ସେତିକି ବଢ଼ିବ ।

୭. ନିମ୍ନଲିଖିତ ସ୍ଥାନମାନ ପ୍ରକୃତରେ ଓଡ଼ିଆ ଦେଶ ଥିବାରୁ ସେ ସ୍ଥାନମାନଙ୍କରେ ସ୍କୁଲ, ଅଦାଲତ ଓ ଅଫିସର ଭାଷା ଓଡ଼ିଆ ହେବା ଉଚିତ ବୋଲି ଏ ସମ୍ମିଳନୀ ମତ ପ୍ରକାଶ କରୁଅଛନ୍ତି । ମାନ୍ଦ୍ରାଜର ଗଞ୍ଜାମ ଓ ଜୟପୁର ଏଜେନ୍ସି, ମଧ୍ୟପ୍ରଦେଶର ଖଡ଼ିଆଳ, ଫୁଲଝର, ପଦ୍ମପୁର, ଚନ୍ଦ୍ରପୁର, ରାୟଗଡ଼, ଶାରଙ୍ଗଗଡ଼ ଆଦି, ଛୋଟନାଗପୁର ସିଂହଭୂମି, ବଙ୍ଗର ମେଦିନୀପୁର ଅନ୍ତର୍ଗତ କାନ୍ଥି ।

୮. ଓଡ଼ିଆ ବାହାରେ ଥିବା ଓଡ଼ିଆଭାଷୀ ଅଞ୍ଚଳମାନଙ୍କରେ ଆନ୍ଦୋଳନ ଚଳାଇବା ଏବଂ ଓଡ଼ିଆମାନଙ୍କର ସକଳ ପ୍ରକାର ସ୍ୱାର୍ଥରକ୍ଷା ଲାଗି ଆନ୍ଦୋଳନ କରିବା କାରଣ ଗୋଟିଏ ଜାତୀୟ ପାଣ୍ଠି ଗଠିତ ହେଉ, ଉକ୍ତ ପାଣ୍ଠିର ପରିଚାଳନା ନିମନ୍ତେ ଗୋଟିଏ କମିଟି ଗଠିତ ହେଉ ଏବଂ ଗୋପବନ୍ଧୁବାବୁଙ୍କ ଯତ୍ନରେ ସଂଗୃହୀତ ହୋଇଥିବା ପଇସା ଫଣ୍ଡ ଯାହାକି ବର୍ତ୍ତମାନ ରେଭେନ୍ସା କଲେଜର ଭୂତପୂର୍ବ ପ୍ରିନ୍ସିପାଲ ଲମ୍ବଟ ସାହେବଙ୍କ ନାମରେ ଗଚ୍ଛିତ ଅଛି ତାହା ଏବଂ ଓଡ଼ିଆ ରକ୍ଷା ପାଣ୍ଠି ଏହାର ଅନ୍ତର୍ଭୁକ୍ତ କରାଯାଉ ।

୯. ମାନ୍ଦ୍ରାଜ, ମଧ୍ୟପ୍ରଦେଶ, ଛୋଟନାଗପୁର, ବଙ୍ଗପ୍ରଦେଶମାନଙ୍କରେ ଯେଉଁ ସବୁଭିନ୍ନ ଭାଷାଭାଷୀ ଲୋକଙ୍କ ସହିତ ନାନା ଶାସନାଧୀନରେ ଓଡ଼ିଆମାନେ ବାସ କରୁଅଛନ୍ତି, ସେମାନଙ୍କ ପ୍ରତି ଏ ସମ୍ମିଳନୀ ଭ୍ରାତୃଭାବ ଏବଂ ଆନ୍ତରିକ ସ୍ନେହ ମମତା ପ୍ରକାଶ କରୁଅଛନ୍ତି ଏବଂ ଆଶା କରନ୍ତି ଯେ ସେମାନେ ଓଡ଼ିଆମାନଙ୍କ ପ୍ରତି ସେହିଭାବ ଓଡ଼ିଆମାନଙ୍କ ଜାତୀୟ ଆକାଂକ୍ଷା ପୂରଣରେ ସହାୟତା କରିବେ ।

୧୦. ଜାମସେଦପୁର ଶିଳ୍ପ କାରଖାନାର ଉପଯୋଗୀ ହେବା ଲାଗି ନିକଟବର୍ତ୍ତୀ ଜିଲ୍ଲା ଏବଂ ଷ୍ଟେଟ୍‌ମାନଙ୍କର ବାଳକମାନଙ୍କୁ ଶିଳ୍ପ ଶିକ୍ଷା ଦେବା ନିମନ୍ତେ ଶିଳ୍ପ ବିଦ୍ୟାଳୟ ସ୍ଥାପନ ଓ ଟାଟାଙ୍କ ଅଧୀନରେ ଥିବା ସ୍କୁଲମାନଙ୍କରେ ଓଡ଼ିଆ ଛାତ୍ରମାନଙ୍କ ସକାଶେ ଓଡ଼ିଆ ପଢ଼ିବାର ବ୍ୟବସ୍ଥା କରିବା ଲାଗି ଏ ସମ୍ମିଳନୀ ଟାଟା କମ୍ପାନୀଙ୍କୁ ଅନୁରୋଧ କରୁଅଛନ୍ତି ।

୧୧. ସମ୍ମିଳନୀର ନିୟମାବଳୀ ପରିବର୍ତ୍ତନ କରି ଆଗାମୀ ମାର୍ଚ୍ଚ ମାସ ଶେଷ ସୁଦ୍ଧା ସମ୍ମିଳନୀ କାଉନସିଲ୍ ନିକଟରେ ରିପୋର୍ଟ ଦାଖଲ କରିବା ନିମନ୍ତେ ନିମ୍ନଲିଖିତ ବ୍ୟକ୍ତିମାନଙ୍କୁ ଘେନି ଗୋଟିଏ ସବ୍‌କମିଟି ଗଠିତ ହେଉ ।

**କମିଟି** - ଶ୍ରୀ ଜଗବନ୍ଧୁ ସିଂହ, ଶ୍ରୀ ବନମାଳୀ ଦାସ, ଶ୍ରୀ କୃପାସିନ୍ଧୁ ମିଶ୍ର, ଶ୍ରୀ ବିଚିତ୍ରାନନ୍ଦ ଦାସ ।

୧୨. ସମ୍ମିଳନୀର ସ୍ଥାୟୀ ସଭା ପୂର୍ବବର୍ଷର କର୍ମଚାରୀ ଓ ସଭ୍ୟଙ୍କୁ ନେଇ ଏ ବର୍ଷ ଲାଗି ପୁରୀରେ କରାଯାଉ ।

**ଉତ୍କଳ ଛାତ୍ର ସମ୍ମିଳନୀ**

ଗତ ୩୧ ତାରିଖର ପୂର୍ବାହ୍ନରେ ଚକ୍ରଧରପୁରରେ ଉତ୍କଳ ସମ୍ମିଳନୀ ମଣ୍ଡପରେ ଉତ୍କଳ 'ଛାତ୍ର ସମ୍ମିଳନୀ'ର ବାର୍ଷିକ ଅଧିବେଶନ ହୋଇଯାଇଅଛି । ପ୍ରାକୃତିକ ଉତ୍କଳର ବିଭିନ୍ନ ସ୍ଥାନର ଅନେକ ଛାତ୍ର ସମବେତ ହୋଇଥିଲେ । ଏହାଛଡ଼ା ଅନେକ ଭଦ୍ରବ୍ୟକ୍ତି ସୁଦ୍ଧା ଛାତ୍ର ସମ୍ମିଳନୀରେ ଯୋଗ ଦେଇ ଛାତ୍ରମାନଙ୍କର ଉତ୍ସାହବର୍ଦ୍ଧନ କରିଥିଲେ । ଛାତ୍ର ସମ୍ମିଳନୀର ସଂପାଦକ ଶ୍ରୀ ବିଚିତ୍ରାନନ୍ଦ ଦାସ ଓ ସହକାରୀ

ସଂପାଦକ ଶ୍ରୀ ପୀତାମ୍ବର ମିଶ୍ର ଉପସ୍ଥିତ ହୋଇଥିଲେ । ସଭାପତି ପଦରେ ନିମନ୍ତ୍ରିତ ହୋଇ ଆସିଥିବା ଉତ୍କଳ ସାହିତ୍ୟ ପତ୍ରିକାର ପ୍ରବୀଣ ସଂପାଦକ ଶ୍ରୀ ବିଶ୍ୱନାଥ କର ମହାଶୟ ସଭାପତିର ଆସନ ଗ୍ରହଣ କରନ୍ତେ ସଭାର କାର୍ଯ୍ୟ ଆରମ୍ଭ ହେଲା । ସଭାପତି ମହାଶୟ ତାଙ୍କର ସ୍ୱାଭାବିକ ଓଜସ୍ୱିନୀ ଭାଷାରେ ଗୋଟିଏ ଦୀର୍ଘ ବକ୍ତୃତା କରିଥିଲେ । ପ୍ରଥମ ପ୍ରସ୍ତାବରେ ଲୋକମାନ୍ୟ ତିଳକଙ୍କର ଅକାଳ ବିୟୋଗରେ ଦୁଃଖ ପ୍ରକାଶ କରାଯାଇଥିଲା । ସଭାପତି ସେତକ କାର୍ଯ୍ୟ ଶେଷ କରି ଦ୍ୱିତୀୟ ପ୍ରସ୍ତାବ ତାଙ୍କର ସଭାପତିତ୍ୱରେ ଉତ୍ଥାପନ କରିବାକୁ ଅସ୍ୱୀକୃତ ହୋଇ ସଭାପତି ଆସନ ପରିତ୍ୟାଗ କରି ଆସନ ଗ୍ରହଣ କଲେ । ଏହି ସମୟରେ ସଭାରେ ମହା ଅସନ୍ତୋଷ ଭରିଗଲା । ଛାତ୍ରମାନେ କର ମହାଶୟଙ୍କ ଉପରେ ବଡ଼ ଭକ୍ତି ଓ ଭରସା ରଖି ତାଙ୍କୁ ସଭାପତି ରୂପେ ଅତ୍ୟନ୍ତ ସମ୍ମାନର ସହିତ ବରଣ କରି ଆଣିଥିଲେ । ତାଙ୍କର ଲେଖା ଓ ବକ୍ତୃତାରେ ତାଙ୍କୁ ଜଣେ ଟାଣୁଆ ବ୍ୟକ୍ତି ବୋଲି ହରାଇଥିଲେ । କିନ୍ତୁ କର ମହାଶୟ ଦେଶକାଳ ପାତ୍ର ଦୃଷ୍ଟିରେ ବୃଦ୍ଧୋଚିତ ବିଚକ୍ଷଣତା ଦେଖାଇ ଛାତ୍ର ସମ୍ମିଳନୀର ଅପ୍ରିୟଭାଜନ ହୋଇ ପଡ଼ିଲେ । ସେ ଯାହାହେଉ ଛାତ୍ରମାନେ ସେଥିରେ ହତାଶ ନହୋଇ ଅଭ୍ୟର୍ଥନା ସମିତିର ସଭାପତିଙ୍କୁ ନେଇ ନିର୍ବାଚିତ ପ୍ରସ୍ତାବବଳୀ ନିର୍ଦ୍ଧାରିତ କରାଇ ନେଲେ । ଆମ୍ଭେମାନେ ଉକ୍ତ ସଭାର ଅନ୍ୟାନ୍ୟ ନିର୍ଦ୍ଧାରଣମାନେ ଯୋଗାଇ ନପାରି ପାଠକମାନଙ୍କର କୌତୂହଳ ନିବାରଣ ସକାଶେ ଏଠାରେ କେବଳ ଦ୍ୱିତୀୟ ପ୍ରସ୍ତାବର ସାରାଂଶ ଉଲ୍ଲେଖ କଲୁ ।

ଦ୍ୱିତୀୟ ପ୍ରସ୍ତାବ - 'ଯେଉଁ ଛାତ୍ରମାନେ ବର୍ତ୍ତମାନ କଲେଜ ପରିତ୍ୟାଗ କରି ଜାତୀୟ ବିଶ୍ୱବିଦ୍ୟାଳୟରେ ଯୋଗଦାନ କରୁଅଛନ୍ତି, ଏହି ସଭା ସେମାନଙ୍କୁ ଧନ୍ୟବାଦ ପ୍ରଦାନ କରୁଅଛନ୍ତି ।'

**କଂଗ୍ରେସ**

ଗତ ମାସ ୨୬ ତାରିଖରୁ ମାସ ଶେଷ ପର୍ଯ୍ୟନ୍ତ ନାଗପୁରରେ ଭାରତ ଜାତୀୟ ମହାସମିତିର ୩୫ଶ ବାର୍ଷିକ ଅଧିବେଶନ ମହାସମାରୋହ ଏବଂ ମହାଉତ୍ସାହରେ ହୋଇଯାଇଅଛି । ସଭାମଣ୍ଡପ ଯେପରି ପ୍ରକାଣ୍ଡ, ସେପରି ସୁଶୋଭିତ ଓ ସୁସଜ୍ଜିତ ହୋଇଥିଲା । ଭାରତର ସମସ୍ତ ପ୍ରଦେଶରୁ ୧୮ ସହସ୍ରରୁ ଅଧିକ ପ୍ରତିନିଧି ଏବଂ ବହୁ ଅୟୁତ ଦର୍ଶକ ସମବେତ ହୋଇଥିଲେ । ନାଗପୁରର ପ୍ରସିଦ୍ଧ ଶ୍ରେଷ୍ଠ ଯମୁନାଳ ଅଭ୍ୟର୍ଥନା ସଭାର ସଭାପତି ହୋଇଥିଲେ । ବ୍ରିଟିଶ ପାର୍ଲିଆମେଣ୍ଟର ଶ୍ରମଜୀବୀ ସଭ୍ୟ କର୍ଣ୍ଣେଲ ଓୟେଲ୍ ଉଡ୍, ମି. ବେନସ୍ପୁଂର ଏବଂ ବ୍ରିଟିଶ କଂଗ୍ରେସ କମିଟିର ସଭ୍ୟ ମେସର୍ସ ଆଲଫୋର୍ଡ଼ ନାଇଟ ଓଦୋବେ ମଧ କଂଗ୍ରେସରେ ଯୋଗ ଦେଇଥିଲେ । ମାନ୍ଦ୍ରାଜର ଶ୍ରୀ ବିଜୟ ରାଘବ ଆଚାରିୟା ଜାତୀୟ ମହାସମିତିର ସଭାପତି ନିର୍ବାଚିତ ହୋଇ ସଭାପତି ଆସନ ସମଳଙ୍କୃତ କରିଥିଲେ । ଏପରି ଜାତୀୟ ଜାଗରଣ, ଜାତୀୟ ତେଜଓଜ ଏଥିପୂର୍ବେ କୌଣସି କଂଗ୍ରେସ ଅଧିବେଶନରେ ଦେଖାଯାଇ ନଥିଲା । ଉତ୍କଳ ଖଣ୍ଡରୁ ପ୍ରାୟ ୪୦ ଜଣ ପ୍ରତିନିଧି ନାଗପୁର କଂଗ୍ରେସରେ ଯୋଗଦାନ କରିଥିଲେ । ଓଡ଼ିଆ ପ୍ରତିନିଧିମାନଙ୍କ ମଧ୍ୟରୁ ଅର୍ଦ୍ଧେକ ସମ୍ବଲପୁର ପ୍ରତିନିଧି ଥିଲେ । ସୁତରାଂ ସମ୍ବଲପୁରର ଜାତୀୟ ଜାଗରଣର ଆଧିକ୍ୟ ସ୍ପଷ୍ଟ ଅନୁଭୂତ ହେଉଅଛି ।

ଅଭ୍ୟର୍ଥନା ସଭାର ସଭାପତିଙ୍କ ଅଭିଭାଷଣରେ ଜାତୀୟ ଅଭ୍ୟୁଥାନର ଆଶା ଫୁଟି ଉଠିଥିଲା । ସେ ବ୍ରିଟିଶ ଗଭର୍ଣ୍ଣମେଣ୍ଟଙ୍କର ପ୍ରତିଶ୍ରୁତି ଭଙ୍ଗ, ଭାରତୀୟମାନଙ୍କର ଆତ୍ମରକ୍ଷାର ଉପାୟ, ଧ୍ୱଂସର ଆଦର୍ଶ, ଭାରତୀୟ ବଣିକମାନଙ୍କର ବର୍ତ୍ତମାନ କର୍ତ୍ତବ୍ୟ, ଭାରତବାସୀମାନଙ୍କର ବର୍ତ୍ତମାନ କର୍ତ୍ତବ୍ୟ - ସ୍ୱାର୍ଥତ୍ୟାଗ, ବିଷୟରେ ସୁନ୍ଦରଭାବରେ ଆଲୋଚନା କରିଥିଲେ ।

ସଭାପତି ବିଜୟ ରାଘବ ଆଚାରିୟା ମହୋଦୟଙ୍କର ଅଭିଭାଷଣ ଇଂରେଜୀରେ ଲିଖିତ ହୋଇଥିଲା । ସଭାପତି ମହୋଦୟଙ୍କ ସ୍ୱର ସେହି ବିଶାଳ ଜନତା ଶୁଣି ନପାରିବାରୁ ସଭାରେ ଭୟଙ୍କର ଗୋଳମାଳ ହେଉଥିଲା । ସେସମୟରେ ତୃଷ୍ଣାରେ ବ୍ୟାକୁଳ ହୋଇ ଲୋକେ ଚିତ୍କାର କରୁଥିଲେ । ବାହାରେ ସହସ୍ର ପ୍ରତିନିଧି ଓ ଦର୍ଶକ ସଭା ଭିତରକୁ ପଶିବା ପାଇଁ ଗୋଳମାଳ କରୁଥିଲେ । ଏହିସବୁ ଅବସ୍ଥା ଦେଖି ମହାତ୍ମା ଗାନ୍ଧୀ ଓ ମୌଲାନା ସୌକତଅଲ୍ଲୀ ସଭାମଞ୍ଚରୁ ଓହ୍ଲାଇ ବାହାରକୁ ଯାଇ ଦୁଇ ଦିଗ ଆବୋରି ବକ୍ତୃତା କରିବାକୁ ଲାଗିଲେ । ଚଳଚ୍ଚିତ୍ର କୋଳାହଳ ବନ୍ଦ ହୋଇ ନଥିଲା । ସଭାପତିଙ୍କର କ୍ଷୀଣ ସ୍ୱର ସେହି ପ୍ରକାଣ୍ଡ ଜନତା ମହାସାଗରରେ ବୁଡ଼ି ଯାଉଥିଲା । ତେଣୁ ଉଚ୍ଚଭାଷୀ ଶ୍ରୀ ବିପିନଚନ୍ଦ୍ର ପାଳ ସଭାପତିଙ୍କ ଅଭିଭାଷଣ ପଢ଼ିଥିଲେ । ପଢ଼ୁ ପଢ଼ୁ ସେ ମଧ କ୍ଳାନ୍ତ ହୋଇପଡ଼ିବାରୁ ପୁଣି ସଭାପତି ଠିଆ ହୋଇ ତାଙ୍କର ଅବଶିଷ୍ଟ ଅଭିଭାଷଣର ସାରମର୍ମ କଥାରେ ବୁଝାଇବାକୁ ଲାଗିଲେ । ଅଧିକାଂଶ ଲୋକ ସଭାପତିତ୍ୱ ପଦ ଶୁଣି ବିରକ୍ତ ହୋଇଥିଲେ ।

ବିଷୟ ନିର୍ବାଚନ କମିଟିରେ ଅନେକ ବାଦ ପ୍ରତିବାଦ ଲାଗିଥିଲା । ମହାସମିତିର ଉଦ୍ଦେଶ୍ୟ ପରିବର୍ତ୍ତନ ଓ ମହାତ୍ମା ଗାନ୍ଧୀଙ୍କ ଅସହଯୋଗ ନୀତି ଗ୍ରହଣ ସମ୍ବନ୍ଧରେ ଭୀଷଣ ଗଣ୍ଡଗୋଳ ବାଧିଥିଲା । ମହାତ୍ମା ଗାନ୍ଧୀ ବଡ଼ କୌଶଳରେ ଏବଂ ଯୁକ୍ତିଯୁକ୍ତ କାରଣ ଦେଖାଇ ବକ୍ତୃତା କରି ସମସ୍ତଙ୍କୁ ମୁଗ୍ଧ କରି ଦେଇଥିଲେ । ମହାତ୍ମା ଗାନ୍ଧୀଙ୍କ ମତ ରକ୍ଷା ପାଇଁ ମଧ୍ୟପ୍ରଦେଶ ଓ ବେରାରରୁ ୧୦ ହଜାର ପ୍ରତିନିଧି ଜମା ହୋଇଥିଲେ । ଯେଉଁମାନେ ଇଂରାଜୀ ଜାଣନ୍ତି ନାହିଁ ଏପରିକି କଂଗ୍ରେସ କଥା ମଧ୍ୟ କିଛି ଜାଣନ୍ତି ନାହିଁ, ସେମାନେ ମଧ ଗାନ୍ଧୀ ଯାହା କହନ୍ତି ତାହା ଗ୍ରହଣ କରିବେ ବୋଲି ଆସିଥିଲେ । ପଞ୍ଜାବ, ମୋମ୍ବାଇ, ମାନ୍ଦ୍ରାଜ, ବଙ୍ଗଳା, ଯୁକ୍ତ ପ୍ରଦେଶରୁ ଏପରି ଅନେକ ଲୋକ ଆସିଥିଲେ, ଯେଉଁମାନେ ଗାନ୍ଧୀଙ୍କୁ ଜୟଯୁକ୍ତ ଦେଖିବାକୁ ଇଚ୍ଛୁକ । 'ମହାତ୍ମା ଗାନ୍ଧୀକି ଜୟ', 'ବନ୍ଦେ ମାତରଂ' ଶବ୍ଦରେ ସଭାସ୍ଥଳ ଉଚ୍ଛୁଳି ଆକାଶ କମ୍ପି ଉଠୁଥିଲା । ସଭାପତିଙ୍କ ସଭାକୁ ଆଗମନ ସମୟରେ ମଧ 'ମହାତ୍ମା ଗାନ୍ଧୀକି ଜୟ' ଧ୍ୱନି ଉଠିଥିଲା ।

ବିଷୟ ନିର୍ବାଚନ କମିଟିରେ ବଙ୍ଗଳାର ପ୍ରତିନିଧିମାନଙ୍କ ମଧ୍ୟରେ ବଡ଼ ବିଭ୍ରାଟ ଘଟିଲା । ଶ୍ରୀ ଜିତେନ୍ଦ୍ର ଲାଲ ବନ୍ଦୋପାଧ୍ୟାୟ ମି.ସି.ଆର୍. ଦାସଙ୍କ ନେତୃତ୍ୱରେ ଦୁଇଟି ଦଳ ହୋଇଥିଲା । ଏହି ଦୁଇ ଦଳ ମଧ୍ୟରେ ସଭ୍ୟ ହେବା ପାଇଁ ମାରପିଟ ଚୌକି ଫିଙ୍ଗାଫିଙ୍ଗି ପର୍ଯ୍ୟନ୍ତ ହୋଇଥିଲା । କେତେଜଣ ମୁସଲମାନ ଭଲଂଟିଆର ଖୁବ୍ ମାଡ଼ ଖାଇଲେ । ବାଡ଼ି ପ୍ରହାରରେ କେତେଜଣ ମାରବାଡ଼ି ପ୍ରତିନିଧି ଆହତ ହୋଇଅଛନ୍ତି । ମହାତ୍ମା ଗାନ୍ଧୀ ଉପସ୍ଥିତ ହୋଇ ସମସ୍ତ ଗୋଳମାଳ ମେଣ୍ଟାଇ ଦେଲେ । ମି. ସି.ଆର୍. ଦାସ ସ୍ୱ-ବ୍ୟୟରେ ବହୁତ ଲୋକ ସଂଗେ ଆଣି ଆସିଥିଲେ ।

ଉତ୍କଳ ପକ୍ଷରୁ ୫ ଜଣ ପ୍ରତିନିଧିଙ୍କୁ ବିଷୟ ନିର୍ବାଚନ କମିଟିରେ ସ୍ଥାନ ମିଳିଥିଲା । ଶ୍ରୀ ଗୋପବନ୍ଧୁ ଦାଶ ନିଖିଳ ଭାରତ କଂଗ୍ରେସ କମିଟି ପକ୍ଷରୁ ସଭ୍ୟ ଗୃହୀତ ହୋଇଥିଲେ । ସମ୍ବଲପୁରରୁ ଶ୍ରୀ ଗୋପବନ୍ଧୁ ଦାସ ନିଖିଳ ଭାରତ କଂଗ୍ରେସ କମିଟି ପକ୍ଷରୁ ସଭ୍ୟ ଗୃହୀତ ହୋଇଥିଲେ । ସମ୍ବଲପୁରରୁ ଶ୍ରୀ ଦାଶରଥି ମିଶ୍ର ବିଷୟ ନିର୍ବାଚନ କମିଟିରେ ସ୍ଥାନ ପାଇ କଂଗ୍ରେସ ଶେଷ ପର୍ଯ୍ୟନ୍ତ ଉପସ୍ଥିତ ରହିଥିଲେ ।

ଯାହାହେଉ ଜାତୀୟ ମହାସମିତିରେ ମହାତ୍ମା ଗାନ୍ଧୀ ବିଜୟୀ ହୋଇଅଛନ୍ତି । ତାଙ୍କର ଅସହଯୋଗ ନୀତି ପ୍ରସ୍ତାବ ସର୍ବସମ୍ମତିକ୍ରମେ କଂଗ୍ରେସର ଗୋଟିଏ ସ୍ୱତନ୍ତ୍ର ପ୍ରଦେଶ ରୂପେ ଗୃହୀତ ହୋଇଅଛି ।

## ଗୋପବନ୍ଧୁ ସ୍ମୃତିରକ୍ଷା ପାଇଁ ପ୍ରଥମ ଉଦ୍ୟମ

୧୯୨୮ ମସିହା ଜୁନ୍ ୧୭ ତାରିଖ ଦିନ ଦେଶପ୍ରାଣ ପଣ୍ଡିତ ଗୋପବନ୍ଧୁ ଦାସ ଇହଧାମରୁ ବିଦାୟ ଗ୍ରହଣ କରିଥିଲେ । ତାଙ୍କ ମୃତ୍ୟୁର ଅବ୍ୟବହିତ ପରେ ଓଡ଼ିଆ ଜାତିର ଏହି ସର୍ବ ଜନାଦୃତ ଜାତୀୟ ବୀରଙ୍କର ସ୍ମୃତିକୁ ଚିରକାଳ ଜୀବନ୍ତ ରଖିବା ପାଇଁ ଉତ୍କଳର ସବୁ ଶ୍ରେଣୀର କର୍ମୀ ଏବଂ ନେତାମାନଙ୍କ ମଧ୍ୟରେ ବିଶେଷ ବ୍ୟଗ୍ରତା ଏବଂ ବ୍ୟାକୁଳତା ଦେଖା ଯାଇଥିଲା । କଟକ ଟାଉନହଲରେ ଗୋଟିଏ ବିରାଟ ସଭା ଡକାଯାଇ କି ଆକାରରେ ଗୋପବନ୍ଧୁଙ୍କର ସ୍ମୃତିରକ୍ଷା କରାଗଲେ ଓଡ଼ିଆ ଜାତିର ସମୂହ କଲ୍ୟାଣ ହେବା ସଂଗେସଂଗେ ସ୍ୱର୍ଗତ ମହାତ୍ମାଙ୍କ ପ୍ରତି ସମଗ୍ର ଓଡ଼ିଆ ଜାତିର ସମ୍ମାନସ୍ଥାୟୀ ଭାବରେ ଜାଗରୁକ ରଖାଯାଇ ପାରିବ ତହିଁର ବିଶେଷ ଆଲୋଚନା କରାଯାଇଥିଲା । ଦୁଃଖର କଥା ସ୍ମାରକର ଆକାର ଓ ପ୍ରକୃତି ବିଷୟରେ ସମସ୍ତେ ଏକମତ ହୋଇପାରିଲେ ନାହିଁ । ପଣ୍ଡିତ ଗୋପବନ୍ଧୁ ଯେଉଁ ଦେଶ ଓ ଜାତି ସେବାକାର୍ଯ୍ୟକୁ ଅକ୍ଷୁଣ୍ଣ ରଖିବା ପାଇଁ ଗୋଟିଏ 'ଉତ୍କଳ କର୍ମୀ ସଂଘ'ର ପ୍ରତିଷ୍ଠା କରିବାକୁ କେହି କେହି ପ୍ରସ୍ତାବ କରିଥିଲେ । ଗୋପବନ୍ଧୁଙ୍କ ସ୍ମୃତିରକ୍ଷା ଉଦ୍ଦେଶ୍ୟରେ ଯେଉଁ ଅର୍ଥ ସଂଗୃହୀତ ହେବ, ତାହାର ସୁଧରୁ ଏହି କର୍ମୀ ସଂଘର ବାର୍ଷିକ ବ୍ୟୟ ନିର୍ବାହ କରିବା ପ୍ରସ୍ତାବମାନଙ୍କର ଉଦ୍ଦେଶ୍ୟ ଥିଲା ମାତ୍ର ଏହି କର୍ମୀ ସଂଘ କୌଣସି ଏକ ବିଶିଷ୍ଟ ରାଜନୈତିକ ମତବାଦୀ ଦଳର ପ୍ରଭାବ ଏବଂ ପ୍ରତିପତ୍ତି ପ୍ରତିଷ୍ଠିତ କରିବାର ଅସ୍ତ୍ର ରୂପେ ବ୍ୟବହୃତ ହେବ । ଏହିପରି ଆଶଙ୍କା କରି ଆଉ କେହି କେହି ସଂଗୃହୀତ ଅର୍ଥକୁ ଉତ୍କଳର ଗୋଟିଏ ଶିଳ୍ପ ଶିକ୍ଷା ଭବନର ପ୍ରତିଷ୍ଠା କରିବାରେ ବ୍ୟବହାର କରିବାର ପ୍ରସ୍ତାବ ଦେଇଥିଲେ । ତିନିଚାରି ଘଣ୍ଟାକାଳ ଆଲୋଚନା ହୋଇ ମଧ୍ୟ ସ୍ମୃତିରକ୍ଷାର କୌଣସି ଗୋଟିଏ ନିର୍ଦ୍ଦିଷ୍ଟ ଆକାର ପ୍ରକାର ସ୍ଥିର ହୋଇପାରିଲା ନାହିଁ । ଶେଷରେ ସ୍ଥିର ହେଲା ଯେ ପ୍ରଥମେ ଅର୍ଥ ସଂଗ୍ରହ କରାଯାଉ ପରେ ସଂଗୃହୀତ ଅର୍ଥର ପରିମାଣ ବିବେଚନା କରି ସ୍ମାରକର ଆକାର ପ୍ରକାର ନିର୍ଦ୍ଧାରଣ କରାଯିବ । ସେଥିପାଇଁ ଓଡ଼ିଶାର ଅନେକ ବିଶିଷ୍ଟ ବ୍ୟକ୍ତିଙ୍କୁ ନେଇ ଗୋଟିଏ କମିଟି ମଧ୍ୟ ସେହି ସଭାରେ ଗଠନ କରାଯାଇଥିଲା ।

ମାତ୍ର କାର୍ଯ୍ୟ ବିଶେଷ ଅଗ୍ରସର ହୋଇପାରିଲା ନାହିଁ । ସାଧାରଣ ସଭାରେ ସ୍ମୃତିରକ୍ଷାର ପ୍ରକୃତି ବିଷୟରେ ଯେଉଁମାନେ ମତପ୍ରକାଶ କରିଥିଲେ, ସେମାନଙ୍କ ମଧ୍ୟରୁ କାହାରିକୁ ଅର୍ଥ ସଂଗ୍ରହ ପାଇଁ ଲାଗି ପଡ଼ିବାର ଦେଖାଗଲା ନାହିଁ । କେବଳ ଶ୍ରୀ ଗୋପବନ୍ଧୁ ଚୌଧୁରୀ ଏବଂ ଆଚାର୍ଯ୍ୟ ହରିହର ଦାସ କଲିକତାର ପ୍ରବାସୀ ଓଡ଼ିଆମାନଙ୍କ ମଧ୍ୟରେ କିଛିଦିନ କାର୍ଯ୍ୟ କରି ସାମାନ୍ୟ ୩/୪ ଶହ ଟଙ୍କା ସଂଗ୍ରହ କରିଥିଲେ । ଅନ୍ୟମାନଙ୍କର ଉଦାସୀନତା ଦେଖି ଏ ଦୁହେଁ ମଧ୍ୟ କିଛି ଦିନପରେ ସେ ଉଦ୍ୟମରୁ ବିରତ ହେବାକୁ ବାଧ୍ୟ ହୋଇଥିଲେ । ଶେଷରେ ଶ୍ରୀ ଗୋପବନ୍ଧୁ ଚୌଧୁରୀ ସଂଗୃହୀତ ଅର୍ଥର ସଦ୍‌ବ୍ୟବହାରର କୌଣସି ଆଶାଜନକ ଭବିଷ୍ୟତ ନଦେଖି ସାକ୍ଷୀଗୋପାଳଠାରେ ପଣ୍ଡିତ ଗୋପବନ୍ଧୁଙ୍କ ପ୍ରତିଷ୍ଠିତ ବିପନ୍ନ ସହାୟକ ଦରିଦ୍ର ନାରାୟଣ ସେବାସଂଘର ସ୍ଥାୟୀ ଆବାସ 'ଗୋପବନ୍ଧୁ ସେବା ସଦନ' ନିର୍ମାଣ ନିମନ୍ତେ ସେତକ ଦେଇଦେଲେ ।

ଗୋପବନ୍ଧୁଙ୍କ ସ୍ମୃତିରକ୍ଷା କରିବାର ଅଭିଳାଷ ଉତ୍କଳର ପୁରପଲ୍ଲୀରେ ସର୍ବତ୍ର ଏତେ ପ୍ରବଳ ଯେ ଆଜି ଉତ୍କଳର ନାନା ଅଞ୍ଚଳରେ କେତେ କ୍ଷୁଦ୍ର ସ୍ଥାନୀୟ ଉଦ୍ୟମକୁ ସେହି ସ୍ୱର୍ଗତଃ ମହାତ୍ମାଙ୍କ ନାମ ସହିତ ଜଡ଼ିତ କରା ହୋଇଅଛି । 'ଗୋପବନ୍ଧୁ ନୈଶ ବିଦ୍ୟାଳୟ', 'ଗୋପବନ୍ଧୁ ପାଠାଗାର' ପ୍ରଭୃତି କେତେଗୁଡ଼ିଏ କ୍ଷୁଦ୍ର ଅନୁଷ୍ଠାନ ଉତ୍କଳର ଚାରିଆଡ଼େ ପ୍ରତିଷ୍ଠା କରା ହୋଇଅଛି । ମାତ୍ର ସମସ୍ତ ଓଡ଼ିଆ ଜାତିର ବୀର ପୂଜାର ସ୍ଥାୟୀ ନିଦର୍ଶନ ସ୍ୱରୂପ କୌଣସି ଗୋଟିଏ ଆଖିରେ ପଡ଼ିବା ଭଳି ଅନୁଷ୍ଠାନ ଏ ପର୍ଯ୍ୟନ୍ତ ଉତ୍କଳରେ ସମ୍ଭବ ହୋଇ ପାରିନାହିଁ ।

ଗତ ଅପ୍ରେଲ ମାସ ଲୋକ ସେବକ ମଣ୍ଡଳର ସଭାପତି ଶ୍ରୀ ପୁରୁଷୋତ୍ତମ ଦାସ ଟଣ୍ଡନ ଓଡ଼ିଶାକୁ ଆସିଥିବା ବେଳେ ଗୋପବନ୍ଧୁଙ୍କର ଗୋଟିଏ ଉପଯୁକ୍ତ ସ୍ମୃତିରକ୍ଷା କରିବା ସମସ୍ୟା ପୁନରୁତ୍‌ଥାପିତ ହୋଇଥିଲା । ଶ୍ରୀ ଟଣ୍ଡନ ପୁରୀ, କଟକ, ବ୍ରହ୍ମପୁର ଏବଂ ବାଲେଶ୍ୱରଠାରେ କେତେକ ବିଶିଷ୍ଟ ବ୍ୟକ୍ତିମାନଙ୍କ ସହିତ ପରାମର୍ଶ କରିବା ଫଳରେ ଉତ୍କଳ ପ୍ରଦେଶ ରାଜଧାନୀ କଟକଠାରେ 'ଗୋପବନ୍ଧୁ ଭବନ' ନାମରେ ଗୋଟିଏ ଗୃହ ନିର୍ମାଣ କରିବାର ସ୍ଥିର ହୋଇଅଛି । ପଣ୍ଡିତ ଗୋପବନ୍ଧୁ ନିଜର ପରିଚାଳିତ କେତେକ କାର୍ଯ୍ୟଭାର ଲୋକ

ସେବକ ମଣ୍ଡଳ ହସ୍ତରେ ନ୍ୟସ୍ତ କରିଦେଇଯାଇଛନ୍ତି । ସେହି ସମସ୍ତ କାର୍ଯ୍ୟର କାର୍ଯ୍ୟାଳୟ ରୂପେ ବ୍ୟବହାର କରିବା ପାଇଁ ଏହି 'ଗୋପବନ୍ଧୁ ଭବନ'ଟିକୁ ଲୋକ ସେବକ ମଣ୍ଡଳ ଶାଖା ହାତରେ ଅର୍ପଣ କରିବାର ସ୍ଥିର ହୋଇଅଛି । ଲୋକ ସେବକ ମଣ୍ଡଳ ଏଠାରେ ଗୋଟିଏ ସାଧାରଣ ପାଠାଗାର ସ୍ଥାପନ କରିବେ ଏବଂ ଉତ୍କଳର ଅନ୍ୟାନ୍ୟ ଲୋକ ହିତକର କାର୍ଯ୍ୟର କେନ୍ଦ୍ର ରୂପେ ଏ ଭବନକୁ ବ୍ୟବହାର କରିବେ । ଏ ଉଦ୍ଦେଶ୍ୟରେ କୋଡ଼ିଏ ହଜାର ଟଙ୍କା ପାଇଁ ଉତ୍କଳର ବିଭିନ୍ନ ଅଞ୍ଚଳ ଏବଂ ବିଭିନ୍ନ ଶ୍ରେଣୀର ବିଶିଷ୍ଟ ବ୍ୟକ୍ତିମାନଙ୍କ ସ୍ୱାକ୍ଷରରେ ଗୋଟିଏ ନିବେଦନ ପ୍ରକାଶିତ ହୋଇଅଛି ।

ଗୋପବନ୍ଧୁ ସ୍ମୃତି ପାଣ୍ଠି ପାଇଁ ସାହାଯ୍ୟ ସହାନୁଭୂତି ଲୋଡ଼ିବା ଉଦ୍ଦେଶ୍ୟରେ ଆମ୍ଭେ ଏବଂ ଆଚାର୍ଯ୍ୟ ହରିହର ଦାସ ଏ ମଧ୍ୟରେ ଉତ୍କଳର କେତେକ ଅଞ୍ଚଳର କତିପୟ ବିଶିଷ୍ଟ ବ୍ୟକ୍ତିଙ୍କ ନିକଟକୁ ଯାଇଅଛୁ । ଆମ୍ଭେମାନେ ଏ ମଧ୍ୟରେ ପ୍ରାୟ ପାଞ୍ଚ ହଜାର ଟଙ୍କାର ପ୍ରତିଶ୍ରୁତି ଏବଂ ଆଶା ପାଇଅଛୁ । ଏହା ଅବଶ୍ୟ ଆଶା ଓ ଉତ୍ସାହଜନକ । ମାତ୍ର ଯଥେଷ୍ଟ ସଂଖ୍ୟକ ଉପଯୁକ୍ତ ସହକର୍ମୀ ଅଭାବରୁ ଆମ୍ଭେ ଉତ୍କଳର ସବୁ ଅଞ୍ଚଳର ଗ୍ରାମେ ଗ୍ରାମେ ବୁଲି ସାଧାରଣ ବ୍ୟକ୍ତିଙ୍କଠାରୁ ସାହାଯ୍ୟ ସଂଗ୍ରହର ବ୍ୟବସ୍ଥା କରିବାରୁ ସମର୍ଥ ହୋଇ ପାରିନାହୁଁ ।

ସେହିପରି ଚାରିଅଣା, ଆଠଅଣା, ଟଙ୍କାଏ, ଦୁଇ ଟଙ୍କା କରି ଅର୍ଥ ସଂଗ୍ରହର ବ୍ୟବସ୍ଥା ହୋଇ ପାରିଲେ ପ୍ରସ୍ତାବିତ କୋଡ଼ିଏ ହଜାର ଟଙ୍କା ଅତି ଅନାୟାସରେ ସଂଗୃହୀତ ହୋଇପାରନ୍ତା । ପଣ୍ଡିତ ଗୋପବନ୍ଧୁ ଉତ୍କଳର ଦରିଦ୍ର ଜନସାଧାରଣଙ୍କ ନିମନ୍ତେ ନିଜର ଜୀବନପାତ କରିଯାଇଛନ୍ତି । ସୁତରାଂ ଏହି ଦରିଦ୍ର ଉତ୍କଳବାସୀଙ୍କଠାରୁ ପ୍ରତ୍ୟେକର ଶକ୍ତି ଅନୁରୂପ ସାମାନ୍ୟ ଅର୍ଥ ସଂଗ୍ରହ ହୋଇ 'ସ୍ମୃତିମନ୍ଦିର'ଟି ଗଢ଼ା ହୋଇପାରିଲେ ଗୋପବନ୍ଧୁଙ୍କ ଆତ୍ମାର ପ୍ରକୃତ ତର୍ପଣ କରାହୁଅନ୍ତା । ମାତ୍ର ସାମାନ୍ୟ ଜଣେ ବା ଦୁଇଜଣଙ୍କ ପକ୍ଷେ ଉତ୍କଳର ଚାରିଆଡ଼େ ଦ୍ୱାରେ ଦ୍ୱାରେ ବୁଲି ସାଧାରଣଙ୍କଠାରୁ ଅର୍ଥ ସଂଗ୍ରହ କରିବା ଅସମ୍ଭବ ।

ଏଥିଲାଗି ମୁଁ 'ସମାଜ'ର ଗ୍ରାହକ ଏବଂ ପାଠକମାନଙ୍କର ବିଶେଷ ସାହାଯ୍ୟ ଏବଂ ସହାନୁଭୂତି ଭିକ୍ଷା କରୁଅଛି । 'ସମାଜ'ର ପ୍ରତ୍ୟେକ ଗ୍ରାହକ ଯଦି ନିଜର ଭାଇବନ୍ଧୁ, ପ୍ରତିବେଶୀମାନଙ୍କଠାରୁ ସାମାନ୍ୟ ସାମାନ୍ୟ ଅର୍ଥ ଏକତ୍ର କରି ଏହି ପାଣ୍ଠିକୁ ପାଞ୍ଚ ଟଙ୍କା, ଦଶଟଙ୍କା ହିସାବରେ ପଠାଇ ଦିଅନ୍ତେ, ତାହାହେଲେ ଆମ୍ଭମାନଙ୍କର କାର୍ଯ୍ୟ ବିଶେଷ ସହଜ ଏବଂ ସୁଗମ ହୋଇଯାଆନ୍ତା । ପାଠଶାଳା, ସ୍କୁଲ ଏବଂ କଲେଜର ଛାତ୍ର ଏବଂ ଶିକ୍ଷକମାନଙ୍କର ଏ ଜାତୀୟ ବୀରପୂଜା ନିମନ୍ତେ ଯତ୍ନ ସାମାନ୍ୟ ସାହାଯ୍ୟ କରିବା ବାଞ୍ଛନୀୟ । ନିଜ ନିଜ ଅଞ୍ଚଳରୁ ଯଥାଶକ୍ତି ଅର୍ଥ ସଂଗ୍ରହ କରି 'ଗୋପବନ୍ଧୁ ସ୍ମୃତି - ପାଣ୍ଠିକୁ ସାହାଯ୍ୟ କରିବା ନିମନ୍ତେ ମୁଁ ଉତ୍କଳର ଦେଶ ପ୍ରେମୀ ଜନସାଧାରଣଙ୍କୁ ଅନୁରୋଧ କରୁଅଛି । ସଂଗୃହୀତ ଅର୍ଥ ଡାକଯୋଗେ ଏହି ପାଣ୍ଠିର ସଂପାଦକ ବା କୋଷାଧ୍ୟକ୍ଷଙ୍କ ନିକଟକୁ ପଠାଯାଇପାରେ ।

## ମଧୁସୂଦନ ଓ ଉତ୍କଳମଣି ଗୋପବନ୍ଧୁ

ସତ୍ୟ ହୋଇଥିଲେ ସାଙ୍ଘାତିକ ଏହି ଶିରୋନାମାରେ ପଣ୍ଡିତ ଗୋପବନ୍ଧୁ ଦାସ ୧୩.୮.୧୯୨୧ରେ ଏକ ଲେଖା ତାଙ୍କ ଦ୍ୱାରା ସଂପାଦିତ ସମ୍ବାଦପତ୍ରରେ ପ୍ରକାଶ କରିଥିଲେ । ପୁରୀ ଜିଲ୍ଲାର ବେଗୁନିଆ ଥାନାର ଗ୍ରାମାଞ୍ଚଳର ଜଣେ ନାରୀପ୍ରତି ପୋଲିସ ଦୁର୍ବ୍ୟବହାରରେ ଅଭିଯୋଗ ଉକ୍ତ ଲେଖାରେ ପ୍ରକାଶିତ ହୋଇଥିଲା । ଏହାପରେ ପୋଲିସ ପକ୍ଷରୁ ପଣ୍ଡିତ ଦାଶଙ୍କ ବିରୁଦ୍ଧରେ ଭାରତୀୟ ପିଙ୍ଗଳ କୋର୍ଡ଼ର ୫୦୦ ଦଫାରେ ଏକ ମକଦ୍ଦମା କରାଯାଇଥିଲା ।

ନେତାଜୀ ସୁଭାଷଙ୍କ ବଡ଼ଭାଇ ଏସ୍.ସି. ବୋଷ ସେତେବେଳେ ଖୋର୍ଦ୍ଧାରେ ଡେପୁଟି ମାଜିଷ୍ଟ୍ରେଟ ଥିଲେ ଏବଂ ତାଙ୍କ କୋର୍ଟରେ ଏହି ମକଦ୍ଦମାର ବିଚାର ହୋଇଥିଲା । ଶ୍ରୀ ବୋଷ ପଣ୍ଡିତ ଗୋପବନ୍ଧୁଙ୍କୁ ନିର୍ଦ୍ଦୋଷରେ ଖଲାସ କରି ଦେଇଥିଲେ । ମାଜିଷ୍ଟ୍ରେଟ୍‌ଙ୍କ ଏହି ଖଲାସ ଆଦେଶ ବିରୋଧରେ ସରକାରଙ୍କ ପକ୍ଷରୁ ପାଟନା ହାଇକୋର୍ଟରେ ଅପିଲ ଦାଏର କରାଯାଇଥିଲା । କିନ୍ତୁ ହାଇକୋର୍ଟରେ ସରକାରଙ୍କ ଏହି ଅପିଲକୁ ଖାରଜ କରି ଦେଇଥିଲେ । ଏହାପରେ ସରକାରଙ୍କ ପ୍ରଚଣ୍ଡ କୋପଦୃଷ୍ଟି ପଣ୍ଡିତ ଦାଶ ଓ ମାଜିଷ୍ଟ୍ରେଟ୍ ବୋଷଙ୍କ ଉପରେ ପଡ଼ିଥିଲା । ମାଜିଷ୍ଟ୍ରେଟ୍ ବୋଷ କିଛି ଦିନ ପରେ ଚାକିରିରୁ ଇସ୍ତଫା ପ୍ରଦାନ କରିଥିଲେ ।

ପଣ୍ଡିତ ଗୋପବନ୍ଧୁଙ୍କୁ କୌଣସି ମତେ ଗିରଫ କରି ଜେଲରେ ଭର୍ତ୍ତି କରିବା ପାଇଁ ସରକାରୀ କର୍ତ୍ତୃପକ୍ଷ ଓର ଉଣ୍ଡି ଜଗି ବସିଥାନ୍ତି । କିନ୍ତୁ ଗୋପବନ୍ଧୁ ସରକାରଙ୍କୁ ଡରି କୌଣସି କଥାରେ ଓହରି ଯିବାର ଲୋକ ନଥିଲେ । ସେ ସବୁବେଳେ ସତ୍ୟ ପାଇଁ ଚରମ ତ୍ୟାଗ କରିବାକୁ ପ୍ରସ୍ତୁତ ହୋଇ ରହୁଥିଲେ (ସଂପ୍ରତି ତାଙ୍କ ରାଜନୈତିକ ଉତ୍ତରାଧିକାରୀ ଡ. ରାଧାନାଥ ରଥ ସେହି ନୀତି ଅନୁସରଣ କରି ଚାଲିଛନ୍ତି) । ଏହି ପରିସ୍ଥିତି ମଧ୍ୟରେ ତା.୧୪.୫.୧୯୨୨ରିଖ ଦିନ ପଣ୍ଡିତ ଗୋପବନ୍ଧୁ ବାଲେଶ୍ୱର ଜିଲ୍ଲା ସମ୍ମିଳନୀରେ ଯୋଗ ଦେଇଥିଲେ । ସେଠାରେ ସ୍ଥିର ହୋଇଥିଲା ଯେ କନିକା ଜମିଦାରୀର ପ୍ରଜାଙ୍କ ଉପରେ ହୋଇଥିବା ଅତ୍ୟାଚାର ସମ୍ପର୍କରେ ସବିଶେଷ ଅନୁସନ୍ଧାନ କରାଯିବ। ପ୍ରଜାମାନେ କନିକାର ରାଜାଙ୍କୁ ଅନ୍ୟାୟ ଖଜଣା ଓ ଅତ୍ୟଧିକ କର ଦେବାକୁ ଅକ୍ଷମ ଓ ନାରାଜ ହେବା ଯୋଗୁଁ ସେମାନଙ୍କ ଉପରେ ଅକଥନୀୟ ଅତ୍ୟାଚାର ଓ ପୋଲିସ ଗୁଳିଚାଳନା ହୋଇଥିଲା । ଏହାପରେ ପଣ୍ଡିତ ଗୋପବନ୍ଧୁଙ୍କୁ ୧୯୨୩ ଜାନୁଆରୀ ୨୪ ତାରିଖରେ କଟକ ଜେଲରେ ଅଟକ ରଖାଗଲା । କାରଣ ତାଙ୍କ ବିରୁଦ୍ଧରେ କନିକା ରାଜାଙ୍କ ମାନହାନୀ ମକଦ୍ଦମା ବିଚାରାଧୀନ ରହିଥିଲା । କିନ୍ତୁ ପରେ କନିକା ରାଜା ମାନହାନୀ ମକଦ୍ଦମା ପ୍ରତ୍ୟାହାର କରି ନେଇଥିଲେ । କାରଣ ସେ ବୋଧହୁଏ ଆଶଙ୍କା କରିଥିଲେ ଯେ ପଣ୍ଡିତ ଗୋପବନ୍ଧୁଙ୍କ ବିଚାର ଆରମ୍ଭ ହେଲେ ଅତ୍ୟାଚାରର ବହୁ ଅଜଣା କଥା, ନାନା କଦର୍ଯ୍ୟ ଓ ଅକଥନୀୟ ଅପକର୍ମର ବିବରଣୀ ପଦାରେ ପଡ଼ିଯିବ । ଏହି ମକଦ୍ଦମା ପ୍ରତ୍ୟାହୃତ

ହେବା ପରେ ୧୯୨୩ ଜୁଲାଇ ୨୪ ତାରିଖରେ ପଣ୍ଡିତ ଗୋପବନ୍ଧୁଙ୍କୁ କଟକ ଜେଲରୁ ହଜାରୀବାଗ ଜେଲକୁ ବଦଳି କରାଗଲା ।

**ଲେଜିସଲେଟିଭ୍ କାଉନସିଲ୍‌ରେ ଗୋପବନ୍ଧୁଙ୍କ ମୁକ୍ତି ପାଇଁ ମଧୁସୂଦନଙ୍କ ଦାବୀ**

୧୯୨୪ ଜାନୁଆରୀ ୨୦ ତାରିଖ ଦିନ ବିହାର-ଓଡ଼ିଶା ଲେଜିସ୍‌ଲେଟିଭ୍ କାଉନସିଲ୍‌ରେ ପଣ୍ଡିତ ଗୋପବନ୍ଧୁଙ୍କ ମୁକ୍ତି ଦାବି କରି କୁଳବୃଦ୍ଧ ମଧୁସୂଦନ ଏକ ମର୍ମସ୍ପର୍ଶୀ ଭାଷଣ ଦେଇଥିଲେ । ୧୯୬୮ ମାର୍ଚ୍ଚ ୨୦ ତାରିଖରେ ଓଡ଼ିଶା ଟାଇମସ୍‌ରେ ପ୍ରକାଶିତ ମଧୁସୂଦନଙ୍କ ଉକ୍ତ ଐତିହାସିକ ଭାଷଣର ଆବଶ୍ୟକୀୟ ଅଂଶ ଏଠାରେ ଉଦ୍ଧାର କରାଗଲା । ଉତ୍କଳଗୌରବ ମଧୁସୂଦନ ସେତେବେଳକୁ ମନ୍ତ୍ରୀତ୍ୱରୁ ଇସ୍ତଫା ଦେଇ ଜଣେ ସାଧାରଣ ସଭ୍ୟ ଭାବରେ କାଉନସିଲରେ ବସୁଥିଲେ । କିନ୍ତୁ ସେ ଏପରି ଏକ ନୀତିଗତ କାରଣରୁ ମନ୍ତ୍ରୀତ୍ୱରୁ ଇସ୍ତଫା ଦେଇଥିଲେ ତାହା ସେତେବେଳେ ସମଗ୍ର ଦେଶରେ ଏପରି କି ବିଲାତରେ ମଧ୍ୟ ଚହଳ ପକାଇ ଦେଇଥିଲା । ତେଣୁ ମଧୁସୂଦନ ଜଣେ ସାଧାରଣ ସଭ୍ୟ ଭାବେ ମଧ୍ୟ ଖୁବ୍ ସମ୍ମାନିତ ବ୍ୟକ୍ତି ହୋଇ ରହିଥିଲେ ।

**ଗୋପବନ୍ଧୁଙ୍କ ଦେଶ ପ୍ରେମର ପ୍ରଶଂସା**

ମଧୁସୂଦନ ଓ ଗୋପବନ୍ଧୁଙ୍କ ମଧ୍ୟରେ ରାଜନୈତିକ ଚିନ୍ତାଧାରା ଓ ଆଦର୍ଶଗତ ପାର୍ଥକ୍ୟ ଥିଲେ ମଧ୍ୟ ଗୋପବନ୍ଧୁଙ୍କ ପ୍ରତି ମଧୁସୂଦନଙ୍କ ପ୍ରଗାଢ଼ ସ୍ନେହ ଶ୍ରଦ୍ଧା ଓ ସମ୍ମାନ ଥିଲା । ପଣ୍ଡିତ ଗୋପବନ୍ଧୁଙ୍କ ଦେଶ ପ୍ରେମ, ତ୍ୟାଗପୂତ ଜୀବନ ଓ ଚରିତ୍ରବତ୍ତା ପ୍ରତି ମଧୁସୂଦନ ବିଶେଷ ଭାବରେ ଆକୃଷ୍ଟ ହୋଇଥିଲେ ।

୧୯୨୪ ଜାନୁଆରୀ ୨୪ ତାରିଖ ଦିନ ମଧୁସୂଦନ ବିହାର-ଓଡ଼ିଶା କାଉନସିଲ୍‌ରେ ଭାଷଣ ଦେଇ ଗୋପବନ୍ଧୁଙ୍କ ମହନୀୟ ବ୍ୟକ୍ତିତ୍ୱର ଉଚ୍ଚ ପ୍ରଶଂସା କରିଥିଲେ । ସେଠାରେ ସେ କହିଥିଲେ ଓଡ଼ିଶାରେ ମୋର ପରମ ବନ୍ଧୁବାବୁ ଗୋପବନ୍ଧୁ ଦାଶଙ୍କ ନାମ ଉଲ୍ଲେଖ କରାଯାଇଛି । ତାଙ୍କ ଚରିତ୍ର ତାଙ୍କ ତ୍ୟାଗପୂତ ଜୀବନର କଥା ସମସ୍ତ ଓଡ଼ିଶା ସଦସ୍ୟ ଜାଣନ୍ତି ଏବଂ ପ୍ରାୟ ସମସ୍ତଙ୍କଠାରୁ ମୁଁ ତାଙ୍କୁ ଅଧିକ ଭଲ ଭାବରେ ଜାଣେ । କାରଣ ସେହି ତରୁଣ ବନ୍ଧୁଙ୍କୁ ତାଲିମ ଦେବା ଏବଂ ବହୁ ଭୋଟରେ ଜିଣାଇ ଏହି କାଉନସିଲକୁ ତାଙ୍କୁ ନିର୍ବାଚିତ କରି ଆସିବାର ଆନନ୍ଦ ଓ ସମ୍ମାନ ମୁଁ ଲାଭ କରିଥିଲି ।

ଏଠାରେ କୁହାଯାଇଛି ଯେ ସେପରି ଚରିତ୍ରର ବ୍ୟକ୍ତି ମୁକ୍ତିଲାଭ କଲେ ବିଶୃଙ୍ଖଳା ସୃଷ୍ଟି ହେବ । ଏହାର ଅର୍ଥ କ'ଣ ? ଜଣେ ଭଲଲୋକ କ'ଣ ବିଶୃଙ୍ଖଳା ସୃଷ୍ଟି କରିପାରେ ? ତାହା ହେଲେ ବୁଝିବାକୁ ହେବ ଯେ ସମଗ୍ର ସମାଜଟି ଭଲ ନୁହେଁ । ବର୍ତ୍ତମାନ ଆମ ସମାଜର ସାଂପ୍ରତିକ ଅବସ୍ଥା ପାଇଁ ବିଦେଶୀ ଶାସନ ଦାୟୀ । ଲୋକେ କ'ଣ ଏପରି ହୋଇଛନ୍ତି ଯେ କୌଣସି ଭଲ ମଣିଷ ବା ଭଲ ପଦାର୍ଥର ଉପସ୍ଥିତି ସେମାନଙ୍କୁ ଆତଙ୍କିତ କରିପକାଇବ । କେଉଁଠାରେ ବିସ୍ଫୋରକ ଦ୍ରବ୍ୟ ଅଛି ବୋଲି ପୃଥିବୀରୁ ସବୁ ନିଆଁ ଲିଭାଇ ଦେବା କଥା ତୁମେ କହିପାରିବ ନାହିଁ । ସାଧାରଣ ଜନତା ଭଲ ଲୋକଙ୍କଠାରୁ ଦୂରେଇ ପଳାଇଯାଏ ନାହିଁ । ବରଂ ଭଲ ଲୋକଙ୍କ ଚାରିପାଖରେ ସେମାନେ ତାଙ୍କୁ ଘେରି ରହିଥାନ୍ତି । କିନ୍ତୁ ଏହି ମୋର ଲୋକଙ୍କୁ ଦେଖିବା ମାତ୍ରେ ଗାଁ ଗହଳର ଲୋକେ ଦୌଡ଼ି ପଳାଇ ଯାଆନ୍ତି । ଏହା ନିରାଟ ସତ କଥା । ଏଥିରୁ ପ୍ରମାଣିତ ହେଉଛି ବା ଦେଖାଯାଉଛି ? ଏଥିରୁ କ'ଣ ସ୍ପଷ୍ଟ ପ୍ରମାଣିତ ହେଉନାହିଁ କି ଯେ ଯେଉଁ ସରକାର ଲୋକଙ୍କ ଉପରେ ଶାସନ ଚଳାଉଛନ୍ତି ସେ ସରକାର ପ୍ରକୃତରେ ଲୋକଙ୍କ ସାମାଜିକ ଗଠନ ବ୍ୟବସ୍ଥାକୁ ହୃଦୟଙ୍ଗମ କରିପାରିନାହାନ୍ତି । ଆଇନଜ୍ଞମାନେ ଯେଉଁ ସମ୍ବିଧାନ ବା ବ୍ୟବସ୍ଥା କଥା ଆଲୋଚନା କରନ୍ତୁ ମୁଁ ସେକଥା କହୁନାହିଁ । ମୁଁ ମଣିଷ-ସମ୍ବିଧାନ ବା ବ୍ୟବସ୍ଥା କଥା ଏଠାରେ ଆଲୋଚନା କରୁଛି । ମଣିଷ ବ୍ୟବସ୍ଥାର ଉପାଦାନ ଚାହୁଁଛି, ଯେତେବେଳେ ରାଜନୈତିକ ସମ୍ବିଧାନ ଓ ଉକ୍ତ ଉପାଦାନର ସମନ୍ୱୟ ଘଟେ ସେତେବେଳେ ସେମାନେ ଏପରି ସଂଗଠନ ଗଢ଼ି ଦିଅନ୍ତି ଯାହାକି ସମସ୍ତଙ୍କ ପଥରେ ଶୁଭଙ୍କର ହୋଇଥାଏ ... ।

... ଯଦି ଏପରି ଜଣେ ଚରିତ୍ରବାନ ପୁରୁଷଙ୍କୁ ବିପଦର କାରଣ ବୋଲି ବିଚାର କରାଯାଏ, ତେବେ ମୁଁ ମନେ କରୁଛି ଯେ ବିପଦର ପ୍ରକୃତରେ ଅନ୍ୟକି କାରଣ ରହିଛି । କାଉନସିଲ ସ୍ୱଷ୍ଟମତ ପ୍ରକାଶ କରିଛନ୍ତି ଏବଂ ଲୋକେ ଚାହାନ୍ତି ଯେ ଏହି ବ୍ୟକ୍ତିମାନଙ୍କୁ ମୁକ୍ତି ଦିଆଯିବା ଆବଶ୍ୟକ । ଏହାପରେ ପଣ୍ଡିତ ଗୋପବନ୍ଧୁ ପ୍ରମୁଖଙ୍କ ମୁକ୍ତି ପାଇଁ ଲାଟ ସାହେବଙ୍କୁ ସୁପାରିଶ କରି କାଉନସିଲରେ ଏକ ପ୍ରସ୍ତାବ ଗୃହୀତ ହୋଇଥିଲା ।

୧୯୨୪ ଜୁନ୍ ୮ ତାରିଖରେ ପଣ୍ଡିତ ଗୋପବନ୍ଧୁ ଜେଲରୁ ମୁକ୍ତ ହେଲେ । ଉତ୍କଳ ପ୍ରଦେଶ କଂଗ୍ରେସ କମିଟି ଦ୍ୱାରା କଟକଠାରେ ଗୋପବନ୍ଧୁଙ୍କ ପାଇଁ ଏକ ସମ୍ବର୍ଦ୍ଧନା ସମ୍ମିଳନୀର ଆୟୋଜନ କରାଗଲା ଏବଂ ଗୋପବନ୍ଧୁଙ୍କୁ ହଜାରିବାଗରୁ କଟକକୁ ପାଛୋଟି ଆଣିବା ପାଇଁ ଆଚାର୍ଯ୍ୟ ହରିହରଙ୍କୁ ସେଠାକୁ ପଠାଗଲା ।



# ଉତ୍କଳୀୟ ଜାତୀୟତାର ମନ୍ତ୍ରଦାତା ଉତ୍କଳଗୌରବ ମଧୁସୂଦନ

ରାଜକିଶୋର ରାଜ

ମାଗୁଣି ନାୟକ ମାଟିବଂଶ ଅବଧାନ । ତାଙ୍କ ପାଠଶାଳାରେ ପିଲାମାନେ ବଡ଼ପାଟିରେ ଡାକି ମାଟି ଚଟାଣରେ ଖଣ୍ଡେ ଖଡ଼ିରେ ଅକ୍ଷରମାନ ଲେଖନ୍ତି ।

ସେହି ପାଠଶାଳାରେ ଚୌଧୁରୀ ବଂଶର ପିଲାଟା ଥିଲା ଅତି ଦୁଷ୍ଟ ଆଉ ଭାରି ଚାଲାକ୍ ।

ଦିନେ ଚାଟଶାଳୀରେ ସେ ପିଲାଟିର ପଟେ ଜୋତା କିଏ ଲୁଚାଇ ଦେଲା । ପିଲାଟି ଅବଧାନଙ୍କୁ ଆପତ୍ତି କରିବାରୁ ସେ ଢୁଳାଉଥିବା ଅବସ୍ଥାରେ କହିଲେ - ତୁ ଘରୁ ପଟେ ଜୋତା ପିନ୍ଧି ଆସିଥିବୁ ନା ।

ଛୋଟ ପିଲାଟି ଅପମାନିତ ହେଲା । ସେ ରାଗ ଭୁଲିପାରିଲା ନାହିଁ । ଥରେ ଅବଧାନେ ବସି ଢୁଳାଉଥାନ୍ତି । ପାଦରେ ତାଙ୍କର ଦାମିକା ମରହଟୀ ଜୋତା । ପିଲାଟି ମୁଣ୍ଡକୁ ବୁଦ୍ଧି ଜୁଟିଲା । ଅବଧାନଙ୍କର ଗୋଟିଏ ପାଦରେ ଜୋତା ଅଛି, ଆରପାଦରୁ ଜୋତା ଖସିଯାଇଛି । ପିଲାଟି ଯାଇ ଖସି ପଡ଼ିଥିବା ଜୋତାପଟକ ପକେଟରେ ପୂରେଇ ଦେଲା । ପରେ ଯେତେବେଳେ ଅବଧାନେ ନିଦରୁ ଉଠି ଜୋତା ପଟକ ଖୋଜିଲେ ପିଲାଟି ଅଳ୍ପ ହସି କହିଲା - 'ଆପଣ ପଟେ ଜୋତା ପିନ୍ଧି ଘରୁ ବାହାରି ଥିବେ ନା । ଅବଧାନଙ୍କର ଅକଲ ଗୁଡୁମ୍ । ଏଇ ପିଲାଟି ବଡ଼ ହୋଇ ଉତ୍କଳଗୌରବ ମଧୁସୂଦନ ଦାସ ନାମରେ ପରିଚିତ ହେଲେ ।

ଜଗତର ନାଥ ଶ୍ରୀଜଗନ୍ନାଥଙ୍କୁ ଓଡ଼ିଆ ଜାତି ଆଧ୍ୟାତ୍ମିକ ବିଶ୍ୱାସର ପ୍ରତୀକ ରୂପେ ଗ୍ରହଣ କରିଥାଏ । ଠିକ୍ ସେହିଭଳି ଉତ୍କଳଗୌରବ ମଧୁସୂଦନ ଦାସଙ୍କୁ ଓଡ଼ିଆ ଜାତିର ଜାତୀୟ ସ୍ୱାଭିମାନର ପ୍ରତୀକ ରୂପେ ଗ୍ରହଣ କରାଯାଇଛି । ସେଥିପାଇଁ ଓଡ଼ିଶାର ପୁରପଲ୍ଲୀ ସର୍ବତ୍ର ଯଥାର୍ଥରେ ଶୁଣାଯାଇଥାଏ -

'ପାଠ ପଢ଼ିବି ପାଠ ପଢ଼ିବି
କାଳିଆ ଘୋଡ଼ାରେ ଚଢ଼ିବି
ମଧୁବାବୁ ସଂଗେ ଲଢ଼ିବି ।'

ମଧୁସୂଦନ ଓଡ଼ିଆ ଜାତୀୟତାର ମନ୍ତ୍ରଦାତା ଥିଲେ । ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନରେ ତାଙ୍କର ଅସୀମ ଜାତିପ୍ରୀତି, ଚରମ ତ୍ୟାଗ, ଗଭୀର ଅଧ୍ୟବସାୟ, ଆନ୍ତରିକ ନିଷ୍ଠା ଓ ବିଚକ୍ଷଣ ଦୂରଦର୍ଶିତା ପ୍ରଣିଧାନଯୋଗ୍ୟ ।

ସେ ଓଡ଼ିଆମାନଙ୍କୁ ପ୍ରାଣଠାରୁ ଭଲ ପାଉଥିଲେ । ସତ୍ୟ, ନ୍ୟାୟ ଓ ସାଧୁତା ପ୍ରଦର୍ଶନ କରି ଓଡ଼ିଆ ଜାତିର ନୈତିକତା ଓ ସଚ୍ଚୋଟତାର ଗୌରବମୟ ପରମ୍ପରା ସେ ସୃଷ୍ଟି କରିଥିଲେ । ଉତ୍କୃଷ୍ଟ ଧରଣର ଜୋତା ପ୍ରସ୍ତୁତ ପାଇଁ ସେ ଉତ୍କଳ ଟ୍ୟାନେରୀ ଗଢ଼ି କମ କ୍ଷତି ସହି ନାହାନ୍ତି, ତଥାପି ତାଙ୍କର ଦୃଢ଼ ମନୋବଳ ଓ ଗଭୀର ଆତ୍ମବିଶ୍ୱାସ ତାଙ୍କୁ ଆଦର୍ଶ ପଥରୁ କେବେ ହେଲେ ବିଚ୍ୟୁତ କରିପାରି ନାହିଁ ।

ସେ ମନ୍ତ୍ରୀ ଥିଲାବେଳେ ଦରମା ନନେବା ଓ ଲୋକ ପ୍ରତିନିଧି ଅନୁପଯୁକ୍ତ ପ୍ରମାଣିତ ହେଲେ ତାଙ୍କୁ ଲୋକମତ ଦ୍ୱାରା ଫେରାଇ ଆଣିବା ପାଇଁ 'ରିକଲ୍' ବ୍ୟବସ୍ଥା ପ୍ରଚଳନ ପାଇଁ ଉଦ୍ୟମ କରି ସମଗ୍ର ଭାରତୀୟ ରାଜନୀତିରେ ଏକ ନୂତନ ଦିଗଦର୍ଶନ ଦେଇଥିଲେ । 'ରିକଲ୍' ବ୍ୟବସ୍ଥା ଦ୍ୱାରା ଶାସନରେ ସ୍ୱେଚ୍ଛାଚାର ଓ ଅତ୍ୟାଚାରର ମୂଳୋତ୍ପାଟନ କରିବା ପାଇଁ ଉଦ୍ଦିଷ୍ଟ ଥିଲା । ମାତ୍ର ତ୍ୟାଗ ପରିବର୍ତ୍ତେ ଭୋଗରେ ବିଶ୍ୱାସ କରୁଥିବା ସ୍ୱାର୍ଥନ୍ୱେଷୀ ରାଜନୈତିକ ବଡ଼ପଣ୍ଡାମାନଙ୍କ ଦ୍ୱାରା ଏହା ଗ୍ରହଣୀୟ ହେଲା ନାହିଁ ।

ମଧୁବାବୁ ଶ୍ରମର ମର୍ଯ୍ୟାଦା ବୁଝୁଥିଲେ । ଜମିରେ କୃଷକର ମାଲିକାନାକୁ ସେ ଗୁରୁତ୍ୱ ଦେଉଥିଲେ । ନାରୀ ଶିକ୍ଷାର ପ୍ରସାର ଦିଗରେ ତାଙ୍କ ଅନବଦ୍ୟ ଅବଦାନ ଅନସ୍ୱୀକାର୍ଯ୍ୟ ।

ମହାତ୍ମା ଗାନ୍ଧୀ ଆନୁଷ୍ଠାନିକ ଭାବେ 'ସ୍ୱଦେଶୀ ଆନ୍ଦୋଳନ' ଆରମ୍ଭ କରିବାର ବହୁପୂର୍ବରୁ ମଧୁସୂଦନ ଓଡ଼ିଶାରେ ଏହା ଆରମ୍ଭ କରିଥିଲେ ବୋଲି ସ୍ୱୟଂ ମହାତ୍ମା ଗାନ୍ଧୀ ମଧ ସ୍ୱୀକାର କରିଛନ୍ତି । ମହାତ୍ମା ଗାନ୍ଧୀ କଟକ ଆସିଥିଲାବେଳେ ମଧୁସୂଦନଙ୍କ ବାସଭବନରେ ତାଙ୍କର ଅତିଥି ହୋଇ ଉତ୍କଳ ଟ୍ୟାନେରୀ, ଓଡ଼ିଶା ଆର୍ଟ ଓୟାର୍ସ ଓ ତନ୍ତବୁଣା ବସ୍ତ୍ରଶିଳ୍ପ ପ୍ରଭୃତି ମଧୁସୂଦନଙ୍କ ଦ୍ୱାରା ପ୍ରତିଷ୍ଠିତ ଅନୁଷ୍ଠାନ ସବୁ ଦେଖି ମୁଗ୍ଧ ହୋଇଥିଲେ ।

ମଧୁବାବୁ କଂଗ୍ରେସରେ ନଥିଲେ । ଗାନ୍ଧୀଙ୍କ ବର୍ଜନ ନୀତିକୁ ଆଦୌ ପସନ୍ଦ କରୁ ନଥିଲେ । ଅଥଚ ଦୁହିଁଙ୍କ ଭିତରେ ଅନ୍ତରଙ୍ଗ ଘନିଷ୍ଠତା ଥିଲା । ଶ୍ରମର ଗୁରୁତ୍ୱ ଓ କୁଟୀର ଶିଳ୍ପର ପ୍ରସାର ଥିଲା ଉଭୟଙ୍କର ଲକ୍ଷ୍ୟ ଓ ଆଦର୍ଶ । ଗାନ୍ଧୀ କଂଗ୍ରେସରେ ଅରଟ କଥା ଆରମ୍ଭ କରିବା ପୂର୍ବରୁ ମଧୁବାବୁ ଉତ୍କଳରେ ସୂତାକଟା ପ୍ରସ୍ତାବ ଆଣିଥିଲେ ।

ମଧୁବାବୁ କହିଛନ୍ତି ଯେଉଁମାନେ କେବଳ ଗାଈବଳଦଙ୍କ ସଙ୍ଗେ କାମ କରନ୍ତି, ଏ ଗୃହ ଶିଳ୍ପ ଛାଡ଼ି ହାତର କଳାକୌଶଳ ପାଶୋରି ପକାନ୍ତି, ସେମାନଙ୍କ ଶରୀରତ ଦୁର୍ବଳ ହୋଇଯାଏ, ଉପରନ୍ତୁ ମନ ମଧ ଦୁର୍ବଳ ହୋଇଯାଏ । ଏ ସମ୍ବନ୍ଧରେ ମଧୁସୂଦନ ଗାନ୍ଧୀଙ୍କ ଆଖି ଫିଟାଇ ଦେଇଥିଲେ ବୋଲି ଗାନ୍ଧୀ ସ୍ୱୀକାର କରିଛନ୍ତି ।

୧୯୩୩ ଫେବୃଆରୀ ୧୨ ତାରିଖରେ ଜାତି ପ୍ରତି ତାଙ୍କର ଅନ୍ତିମ ଭାଷଣ ଥିଲା - 'ମୁଁ ଯେତେବେଳେ ଆନ୍ଦୋଳନ କଲି ସେତେବେଳେ ଜାତି ବୋଲି କିଛି ନଥିଲା । ମୁଁ କେବଳ କୁଢ଼ କୁଢ଼ ଅସ୍ଥି ଦେଖିଥିଲି । ଚାରିଆଡ଼େ ଖାଲି ଅସ୍ଥି, ଅସ୍ଥି, ଅସ୍ଥି । ଏହି ଅସ୍ଥି କଙ୍କାଳ ଭିତରେ ପ୍ରାଣ ସଂଚାର କରି ହସ୍ତପଦ ଓ ପେଶୀ ଯୋଗାଇବା ନିମନ୍ତେ ମୋତେ ବହୁତ କାର୍ଯ୍ୟ କରିବାକୁ ପଡ଼ିଛି । ମୋ' ଜାତିକୁ ଯୁଦ୍ଧ ସରଞ୍ଜାମରେ ସଜ୍ଜିତ କରିବା ପାଇଁ ମତେ ଏକାକୀ କାର୍ଯ୍ୟ କରିବାକୁ ହୋଇଛି । ତାଙ୍କ ମତରେ ଉତ୍କଳ ଜନନୀ ଓ ଭାରତ ଜନନୀଙ୍କର ମଧ୍ୟରେ କିଛି ପ୍ରଭେଦ ନାହିଁ । ଶରୀରର କୌଣସି ଅଂଶ ପୀଡ଼ା ହେଲେ ସେହି ଅଂଶର ଚିକିତ୍ସା କରିବାକୁ ହେବ କିନ୍ତୁ ଏହି ଅଂଶବିଶେଷର ଚିକିତ୍ସା ଦ୍ୱାରା ସମସ୍ତ ଶରୀରର ଉନ୍ନତି ହେବ । ଉତ୍କଳର ଚିକିତ୍ସାର ଉଦ୍ଦେଶ୍ୟ ଭାରତର ଉନ୍ନତି ବୋଲି ସେ କହୁଥିଲେ ।

ମଧୁବାବୁ ଯାହା ଠିକ୍ ଭାବୁଥିଲେ ତାହାକୁ ନିର୍ଭୟରେ ପ୍ରକାଶ କରିବା ସହିତ କାଯ୍ୟରେ ପରିଣତ କରୁଥିଲେ । ତାଙ୍କର ସ୍ୱଳ୍ପକାଳ ମନ୍ତ୍ରିତ୍ୱରେ ଯେଉଁ ଉଦାର ପ୍ରଗତିଶୀଳ ସ୍ୱାୟତ୍ତ ଶାସନ ଆଇନ ପ୍ରଦେଶକୁ ଉପହାର ଦେଇଥିଲେ ତାହା ପ୍ରଣିଧାନଯୋଗ୍ୟ ।

ବିହାରର ତତ୍କାଳୀନ ରାଜ୍ୟପାଳ ମି. ଏମ୍.ଜି. ହାଲେଟଙ୍କ ମତରେ ମି. ମଧୁସୂଦନ ଦାସଙ୍କ ପରି ଜନନାୟକମାନେ ଶାସନକୁ ଭାରତୀୟକରଣ କରିବାରେ ଯେଉଁ ଉଜ୍ଜ୍ୱଳ ପରମ୍ପରା ସୃଷ୍ଟି କରିଛନ୍ତି ତାହା ଏ ଦେଶର ରାଜନୈତିକ ପ୍ରକ୍ରିୟାକୁ ତ୍ୱରାନ୍ୱିତ କରିବାରେ ସହାୟକ ହୋଇଥିଲା । ତାଙ୍କ ମତରେ ଏହା ଅସହଯୋଗ ଆନ୍ଦୋଳନ ଅପେକ୍ଷା ଅଧିକ ତାତ୍ପର୍ଯ୍ୟପୂର୍ଣ୍ଣ ଥିଲା ।

ବାସ୍ତବରେ ମଧୁସୂଦନ ହେଉଛନ୍ତି ଭାରତୀୟ ଚିନ୍ତାଚେତନାର ଜଣେ ବିରଳ ପ୍ରତିଭା । ତାଙ୍କର ସମଗ୍ର ଜୀବନ ଦେଶବାସୀଙ୍କୁ ଉଚ୍ଚସ୍ତରକୁ ଉଠାଇବା ଲାଗି ସମର୍ପିତ ଥିଲା ।

ଓଡ଼ିଆ ଜାତିର ଅଭ୍ୟୁତ୍‌ଥାନ ଥିଲା ତାଙ୍କ ଜୀବନର ଏକମାତ୍ର ଲକ୍ଷ୍ୟ । ପୁଣି ଥିଲା ତାଙ୍କର କର୍ମସାଧନା ଓ ଚିନ୍ତାର କେନ୍ଦ୍ରବିନ୍ଦୁ । ଓଡ଼ିଆ ଜାତୀୟ ଆନ୍ଦୋଳନର ସେ ଥିଲେ ପ୍ରାଣ ପ୍ରତିଷ୍ଠାତା । ବିଚ୍ଛିନ୍ନାଞ୍ଚଳକୁ ଏକତ୍ର କରି ଆଧୁନିକ ଉତ୍କଳ ଗଠନ କରିବାରେ ସେ ଥିଲେ ପ୍ରଧାନ ପୁରୋଧା । ଜଣେ ବିଚକ୍ଷଣ ଆଇନଜୀବୀ ଭାବରେ ପ୍ରଚୁର ଅର୍ଥ ଉପାର୍ଜନ କରିଥିଲେ ହେଁ ଦେଶ ଓ ଜାତି ପାଇଁ ସର୍ବସ୍ୱ ଉତ୍ସର୍ଗ କରି ନିଜକୁ ଦେବାଳିଆ ଘୋଷଣା କରିବାକୁ ମଧ ସେ ପଛେଇ ନଥିଲେ । ତାଙ୍କର ଜୀବନକାଳ ଥିଲା ଓଡ଼ିଶାର ଅର୍ଦ୍ଧଶତାବ୍ଦୀର ଇତିହାସ । ତାଙ୍କ ଜୀବନର ମୂଳମନ୍ତ୍ର ଥିଲା ଜାତୀୟତାବୋଧ । ତାଙ୍କର କବିତା ଓ ଅଭିଭାଷଣରେ ଏହା ପରିସ୍ଫୁଟ । ତାଙ୍କର ଜଣାଣ 'ଉତ୍କଳ ସନ୍ତାନ', 'ଜନନୀର ଉକ୍ତି', 'ସନ୍ତାନର ଉକ୍ତି', 'ସମ୍ମିଳନୀ', 'ଜାତିର ଇତିହାସ' କବିତାଗୁଡ଼ିକରେ ଜାତୀୟ ଆହ୍ୱାନ ଜାତିର ମେରୁଦଣ୍ଡକୁ ସୁଦୃଢ଼ କରିଛି । କବିଙ୍କ ଭାଷାରେ -

'ଜାତି ଇତିହାସ ଜାତିର ନିର୍ଝର
ସଦା ବହେ ତହୁଁ ପ୍ରାଣଧାର
ସେ ଧାରରୁ ନୀର ପିଉଛି ଯେ ନର
ନିଶ୍ଚୟ ହେବ ସେ ଜାତି କର୍ମବୀର ।'

ଧର୍ମାନ୍ତର ପରେ ମଧ ସେ ନୀଳାଚଳର ଶ୍ରୀଜଗନ୍ନାଥଙ୍କୁ ସଂଗ୍ରାମ ପାଇଁ ପ୍ରେରଣାର ଉତ୍ସ ରୂପେ ଧରି ନେଇଥିଲେ । ନୀଳାଚଳ ଧାମରେ ସୁଦର୍ଶନ ଚକ୍ରରେ ପତାକା ଥିଲା ତାଙ୍କ ଦୃଷ୍ଟିରେ ଅଭ୍ୟୁତ୍‌ଥାନ ଓ ଜାଗରଣର ପ୍ରତୀକ । ମହାନ ଓଡ଼ିଆ ଜାତିକୁ ତା'ର ଗୌରବମୟ ଐତିହ୍ୟ ସଂପର୍କରେ ସ୍ମରଣ କରାଇ ଦେଶମାତୃକାର ସେବାରେ ବ୍ରତୀ କରାଇବା ପାଇଁ ସେ ଆହ୍ୱାନ ଦେଇଥିଲେ ।

୧୯୦୩ରେ ରମ୍ଭା ସମ୍ମିଳନୀ ପରେ ମଧୁବାବୁ ଉତ୍କଳ ସମ୍ମିଳନୀ ଗଠନ କଲେ । ସେ ଚାହୁଁଥିଲେ ସମସ୍ତ ଓଡ଼ିଆ ଅଞ୍ଚଳ ଗୋଟିଏ ଶାସନାଧୀନ ରହୁ ।

ମଧୁବାବୁଙ୍କ ମତରେ ଅର୍ଥନୈତିକ ପ୍ରଗତି ନହେଲେ ରାଜନୈତିକ ପ୍ରଗତି ଅସମ୍ଭବ । ମଧୁବାବୁ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନର ପଥ ପରିଷ୍କାର କରିଥିଲେ । ୧୮୮୨ରେ ପ୍ରତିଷ୍ଠା କରିଥିଲେ ଉତ୍କଳସଭା । ୧୯୦୩ ମସିହାରେ ପ୍ରତିଷ୍ଠିତ ଉତ୍କଳ ସମ୍ମିଳନୀ ଥିଲା ଏହାର ପରବର୍ତ୍ତୀ ସଂସ୍କରଣ । ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ଏକ ଶାସନ ଅଧୀନରେ ରଖିବା, ଶିଳ୍ପ, କଳା, କୃଷି ଓ ବାଣିଜ୍ୟର ଉନ୍ନତି,

ଭାଷା ଓ ସଂସ୍କୃତିର ସୁରକ୍ଷା ଏବଂ ଜାତୀୟତାବୋଧର ପ୍ରସାର କରିବା ଉତ୍କଳ ସମ୍ମିଳନୀର ପ୍ରଧାନ କାର୍ଯ୍ୟ ଥିଲା ।

ମଧୁବାବୁଙ୍କ ଭଳି ନିର୍ଭୀକ ଓ ସ୍ୱାଭିମାନୀ ପୁରୁଷ ସମଗ୍ର ବିଶ୍ୱ ଇତିହାସରେ ବିରଳ । ସେ ଆତ୍ମମର୍ଯ୍ୟାଦା ଓ ସମ୍ମାନବୋଧ ପ୍ରତି ଖୁବ୍ ସଜାଗ ଥିଲେ । ସେ ସର୍ବଦା କହୁଥିଲେ ଯେ ଗୋଟାଏ ଜାତି ପଛେ ସର୍ବସ୍ୱାନ୍ତ ହୋଇପାରେ ମାତ୍ର ସାଧୁତା ଓ ଆଦର୍ଶଗତ ମୂଲ୍ୟବୋଧକୁ ଜଳାଞ୍ଜଳି ଦେଇନପାରେ । ବିଭିନ୍ନ କ୍ଷେତ୍ରରେ ଜଣେ ଅଗ୍ରଣୀ ଓଡ଼ିଆ ଭାବେ ନିଜକୁ ପ୍ରତିଷ୍ଠା କରି ମଧୁବାବୁ ଯେତିକି ଆତ୍ମସନ୍ତୋଷ ଲାଭ କରୁଥିଲେ, ତା'ଅପେକ୍ଷା ଭାରତ ତଥା ବିଶ୍ୱରେ ଓଡ଼ିଆମାନେ ନିଜର ଦକ୍ଷତା ପ୍ରତିଷ୍ଠା ଓ ଖ୍ୟାତି ଅର୍ଜନ କରି ଯଶସ୍ୱୀ ହେବା ଦିଗରେ ସେ ଅଧିକ ଗୁରୁତ୍ୱ ଆରୋପ କରୁଥିଲେ । ବ୍ୟକ୍ତି ତୁଳନାରେ ଜାତିକୁ ସେ ବଡ଼ ବୋଲି ଭାବୁଥିଲେ ।

ତାଙ୍କର ଜାତୀୟ ଗୀତ ଗାନ କରି ମଧୁବାବୁ କହିଥିଲେ - 'ମୁଁ ମୋର ଭାବ ଜାତିକୁ ଦେଇଛି । ତାହା ଗୋଡ଼ରେ ମାଡ଼ିପାର ବା କଣ୍ଠରେ ଧାରଣ କରିପାର, ତାହା ଜାତିର, ମୋର କୌଣସି ଅଧିକାର ନାହିଁ ।' ତାଙ୍କର ସମସ୍ତ କବିତାରେ ମଧୁବାବୁ ଦେଶବାସୀଙ୍କୁ ବୀରତ୍ୱ, ସାହସିକତା ଓ ଦେଶାତ୍ମବୋଧରେ ଉଦ୍‌ବୁଦ୍ଧ ହେବାକୁ ଆହ୍ୱାନ ଦେଇଛନ୍ତି । ତାଙ୍କ ମତରେ ଜାତି ଗଠନ ଲାଗି ଉଭୟ ଅତୀତ ଓ ଭବିଷ୍ୟତ ଦୃଷ୍ଟି ଲୋଡ଼ା । ଦେଶବାସୀ କିପରି ଜାତି କର୍ମବୀର ହୋଇପାରିବେ ସେଥିପାଇଁ ସେ ପରାମର୍ଶ ଦେଇଛନ୍ତି ।

ସେଥିପାଇଁ ଓଡ଼ିଆ ଜାତିର ଅବଚେତନରେ ସେ 'କୁଳବୃଦ୍ଧ' ରୂପେ ପ୍ରତିଷ୍ଠିତ । ମଧୁବାରିଷ୍ଟର ଓ କୁଳବୃଦ୍ଧ ମଧୁସୂଦନ ରୂପେ ସେ ଉତ୍କଳର ପୁରପଲ୍ଲୀରେ ପରିଚିତ । ୧୮୪୮ରେ କଟକ ଜିଲ୍ଲା ସତ୍ୟଭାମାପୁରରେ ସେ ଜନ୍ମ ଗ୍ରହଣ କରି ତାଙ୍କ ସ୍ୱପ୍ନ ବାସ୍ତବ ରୂପ ଧାରଣ କରି ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନର ଦୁଇ ବର୍ଷ ପୂର୍ବରୁ ୧୯୩୪ରେ ସେ ଇହଧାମ ତ୍ୟାଗ କରିଥିଲେ । ସେ ଓଡ଼ିଶାର ପ୍ରଥମ ଏମ୍.ଏ., ପ୍ରଥମ ବିଲାତ ଫେରନ୍ତା । ମନ୍ତ୍ରୀ ହୋଇ ମନ୍ତ୍ରୀପଦ ଅବୈତନିକ ଦାବି କରି ମନ୍ତ୍ରିମଣ୍ଡଳରୁ ଇସ୍ତଫା ଦେବାରେ ସମଗ୍ର ଭାରତରେ ସେ ପ୍ରଥମ ।

କଲିକତାରେ ଉଚ୍ଚଶିକ୍ଷା ଲାଭ କରିବା ସମୟରେ ସେଠାରେ ଏକମାତ୍ର ବିଶ୍ୱବିଦ୍ୟାଳୟର ଛାତ୍ର ଥାଇ ସଂସ୍କୃତର ଉତ୍ତର ଓଡ଼ିଆ ଅକ୍ଷରରେ ଲେଖିବା ପାଇଁ ସେ ଦାବି କରି ସଫଳ ହୋଇଥିଲେ । କଲିକତାରେ ଓଡ଼ିଆ ଭାଷା ଶିକ୍ଷା ପାଇଁ ବୈଶ୍ୟ ବିଦ୍ୟାଳୟମାନ ସ୍ଥାପନ କରିଥିଲେ ସେ । ତାଙ୍କ ମତରେ 'ଓଡ଼ିଆ ଭାଷା ରହିବାରୁ ସିନା ଓଡ଼ିଆ ସାହିତ୍ୟ ସୃଷ୍ଟି ହେଉଛି । ଏ ଅତି ପ୍ରାଚୀନ ଭାଷା, ଏହା ଲୋପ ହେବ ନାହିଁ, ଭାଷା ନେଇ ଜାତି । ଆମ୍ଭେମାନେ ଭାରତ ଜନନୀ ଓ ଉତ୍କଳ ଜନନୀର ପୂଜା କରୁଅଛୁ । ଆମର ଉତ୍କଳ ସମ୍ମିଳନୀରେ ଗୋଟିଏ ଯୁକ୍ତି ଅଛି -

'ମାତୃଭୂମି ମାତୃଭାଷା ଉଭୟେ ଜନନୀ ।
କର ତାଙ୍କ ପାଦପୂଜା ଦିବସ ରଜନୀ ।'

ସାହିତ୍ୟ ସମ୍ବନ୍ଧରେ ମଧୁବାବୁ ଦୁଇ ପଦ ଉପଦେଶ ଛଳରେ କହିଛନ୍ତି - 'ତୁମମାନଙ୍କ ଚିନ୍ତାରାଜ୍ୟକୁ ପ୍ରସାର କର । ବିଭିନ୍ନ ଭାଷାର ସାହିତ୍ୟ ପଢ଼ । ଆଧ୍ୟାତ୍ମିକ ଭାବରେ ଅନୁପ୍ରାଣୀତ ହୁଅ । ଯାହା ଲେଖିବ ତାହା ଯେପରି ସବୁ ଦେଶ ଓ ସବୁକାଳର ଗ୍ରହଣ ଯୋଗ୍ୟ ହୁଏ, ସେ ଦିଗରେ ମନ ଦିଅ । ଗଠନମୂଳକ ସାହିତ୍ୟ ଲେଖି ଉନ୍ନତଧରଣର ଆଲୋଚନା କର । ଈର୍ଷା, କୁତ୍ସା, ନିନ୍ଦାକୁ ମନରୁ ଦୂରୀଭୂତ କର । ଆମ ଦେଶରେ ଯେଉଁ ଆଧ୍ୟାତ୍ମିକ ପରମ୍ପରା ଗଢ଼ି ଆସୁଛି, ସେହି ପରମ୍ପରାରୁ ବିଚ୍ୟୁତ ହୁଅ ନାହିଁ । ଏ ବୈଜ୍ଞାନିକ ଯୁଗର ଗତି ଦେଖି ଲୋକ ସମାଜର ଆର୍ଥିକ ଓ ନୈତିକ ମଙ୍ଗଳ ନିମିତ୍ତ ଯେ ପ୍ରକାର ସାହିତ୍ୟ ଆବଶ୍ୟକ ତା'ର ସୃଜନକାରୀ ଅଭିଳାଷକୁ ଉଚ୍ଚରେ ରଖି ଓ ଭବିଷ୍ୟତର ଜୀବନରେ ଯେ ଯେଉଁ କ୍ଷେତ୍ରରେ ପ୍ରବେଶ କଲେ ମଧ୍ୟ ନିଜର ଜାତି, ଭାଷା, ଓ ସାହିତ୍ୟ ପ୍ରତି ଦୃଷ୍ଟିରଖି ଓ ସେଥି ନିମିତ୍ତ ଯେଉଁ ତ୍ୟାଗ ଆବଶ୍ୟକ, ତାହା ଦେଶକୁ ଦିଅ ।'

ଉତ୍କଳବାସୀଙ୍କୁ ସମ୍ବୋଧନ କରି ମଧୁବାବୁ କହିଛନ୍ତି - 'ହେ ଉତ୍କଳବାସୀ ତୁମେ ଆଳସ୍ୟ ତ୍ୟାଗ କର । ସାହସ ଓ ଧୈର୍ଯ୍ୟ ଧରି କାମ କରିଯାଅ । ଯେପରି ଉତ୍କଳମାତାର ହୃତଗୌରବ ପୁନଃପ୍ରତିଷ୍ଠିତ ହେବ । ଜାତିର ସମ୍ମାନ ରକ୍ଷାକର । ଜାତି ହେଉଛି ଶ୍ରୀଜଗନ୍ନାଥଙ୍କ ନନ୍ଦିଘୋଷ ରଥ ଭଳି ବିରାଟ ଓ ମହାନ୍ । ବଡ଼ଦାଣ୍ଡରେ ନନ୍ଦିଘୋଷକୁ ହଜାର ହଜାର ଭକ୍ତ ଏକତ୍ରିତ ହୋଇ ଯେଉଁଭଳି ସମାନ ସ୍ୱରରେ ତାହାକୁ ଟାଣି ଆଗକୁ ନିଅନ୍ତି, ସେହିଭଳି ଜାତିରୂପକ ନନ୍ଦିଘୋଷ ରଥକୁ ଆଗକୁ ନେବାକୁ ହେଲେ ସମାଜର ସବୁସ୍ତରର ଲୋକ ନିଜର ସ୍ୱାର୍ଥକୁ ଜଳାଞ୍ଜଳି ଦେଇ ଆଗେଇ ଯିବା ଉଚିତ ।

ସଭାପତି - ନୀଳଶୈଳ
ଗଜେନ୍ଦ୍ର ଭବନ, ଝାଞ୍ଜିରୀ ମଙ୍ଗଳା
କଟକ-୭୫୩୦୦୯



# ଉତ୍କଳ ଭ୍ରମଣଂ ଓ ବ୍ୟାସକବି ଫକୀରମୋହନ

ନିର୍ମଳା କୁମାରୀ ମହାପାତ୍ର

'ଉତ୍କଳ ଭ୍ରମଣଂ' - ଏକ କୌତୁକ କାବ୍ୟ, ବ୍ୟାସକବି ସରସ୍ୱତୀ ଫକୀରମୋହନ ସେନାପତିଙ୍କର ପ୍ରଥମ ମୌଳିକ ପଦ୍ୟଗ୍ରନ୍ଥ, ସର୍ବପ୍ରଥମେ ଏହା ପ୍ରକାଶିତ ହୁଏ ମାର୍ଚ୍ଚ, ୧୮୯୨ ମସିହାରେ । ଏହା ଏକ ଅସାଧାରଣ ଭ୍ରମଣ ବୃତ୍ତାନ୍ତ । ମଞ୍ଚ ଉପରେ ସରଳ-ତରଳ-ପ୍ରାଞ୍ଜଳ ଭାଷଣ ଦେବା ଭଳି ଭାଷା ପୁଞ୍ଜରେ ଗଠିତ ଏହି କାବ୍ୟଗ୍ରନ୍ଥ ଓଡ଼ିଶାର ବହୁ ବିଶିଷ୍ଟ ବ୍ୟକ୍ତିଙ୍କର କୃତି, ଗୁଣ ବର୍ଣ୍ଣନାକୁ ଧରି ରଖିଛି । କବିଙ୍କର ବାସ୍ତବ ଅନୁଭୂତି-ରସାଣିତ ଅଭିବ୍ୟକ୍ତି ବିମଳ-ଚଟୁଳ-ହାସ୍ୟ ପ୍ରଣୋଦିତ ରୀତିରେ ଉପଜୀବ୍ୟ ହୋଇ ଉଠିଛି ଏଇ କାବ୍ୟ ଭାରତୀରେ ।



ସମସାମୟିକ ଓଡ଼ିଶାର ଜଣାଶୁଣା ନାଗରିକମାନଙ୍କ ପ୍ରତି ସ୍ତୁତି, ପ୍ରଶଂସା, ଶ୍ଳେଷୋକ୍ତି ଓ ନିନ୍ଦାବର୍ଷଣ କରାଯାଇଥିବା ଏହି କାବ୍ୟ 'ଉତ୍କଳ ଭ୍ରମଣଂ' ପ୍ରଥମ ପ୍ରକାଶନ (ମାର୍ଚ୍ଚ ୧୮୯୨) ବେଳେ ବେନାମୀ ଥିଲେ ହେଁ ଓଡ଼ିଶାର ତତ୍କାଳୀନ ପାଠକଙ୍କୁ ଏହାର ଲେଖକ ଠାବ କରିବା ପାଇଁ ବିଶେଷ ପ୍ରୟାସ କରିବାକୁ ପଡ଼ି ନଥିଲା । ଏହି କାବ୍ୟ ସେହି ସମୟରେ ଚାଞ୍ଚଲ୍ୟ ସୃଷ୍ଟି କରିଥିଲା । ଏହାର ଦ୍ୱିତୀୟ ସଂସ୍କରଣ ହୁଏ ସେହି ବର୍ଷ ୧୮୯୨, ଜୁଲାଇ ମାସରେ । ଏହାର ତୃତୀୟ ସଂସ୍କରଣ ହୋଇଥିଲା ୧୯୧୬ ମସିହାରେ । ଆଗରୁ କୁହାଯାଇଛି ଯେ 'ଉତ୍କଳ ଭ୍ରମଣଂ'ରେ ସମକାଳୀନ ଓଡ଼ିଶାର ଏକ ନିଛକଚିତ୍ର ପ୍ରତିଫଳିତ ହୋଇଅଛି । ପ୍ରତି ସଂସ୍କରଣରେ କିଛି କିଛି ସଂଯୋଜନା ହେବା ଫଳରେ କାବ୍ୟର ନୂତନ କଳେବରରେ କିଞ୍ଚିତ ସ୍ୱାସ୍ଥ୍ୟ ପରିବର୍ତ୍ତନ ହୋଇଥିବା ସ୍ପଷ୍ଟ । ପ୍ରଥମ ସଂସ୍କରଣରେ 'ଉତ୍କଳ ସମ୍ମିଳନୀ' କଥା ନଥିବା ଓ ତୃତୀୟ ସଂସ୍କରଣରେ 'ଉତ୍କଳ ସମ୍ମିଳନୀ' କଥା ସହ ସତ୍ୟବାଦୀର ବନବିଦ୍ୟାଳୟ ଓ ତତ୍ରସ୍ଥ ଲେଖକମାନଙ୍କ କଥା ବିବୃତ ହୋଇଥିବାରୁ ସ୍ପଷ୍ଟ ଯେ ବ୍ୟାସକବି ଫକୀରମୋହନ ଯଥେଷ୍ଟ ନିଷ୍ଠା ସହକାରେ ପରବର୍ତ୍ତୀ ସଂସ୍କରଣଗୁଡ଼ିକ କରାଇଥିଲେ । କବିଙ୍କର ତିରୋଧାନ ପରେ ୧୯୨୫ ମସିହାରେ ଏହାର ଯେଉଁ ଚତୁର୍ଥ ସଂସ୍କରଣ ହୋଇଥିଲା, ତାହା ଗବେଷକ ଡଃ ନଟବର ସାମନ୍ତରାୟଙ୍କ ଭାଷାରେ - ମୂଳ 'ଉତ୍କଳ ଭ୍ରମଣଂ'ର ଅବିକଳ ପୁନର୍ମୁଦ୍ରଣ ନୁହେଁ ।

ଆଧୁନିକ ଓଡ଼ିଆ ସାହିତ୍ୟକୁ ବିଭିନ୍ନ ବିଭବରେ ପୁଷ୍କଳ କରିଥିବା ବ୍ୟାସକବି ଫକୀରମୋହନ (ଜନ୍ମ: ୧୮୪୩, ଜାନୁଆରୀ, ମକର ସଂକ୍ରାନ୍ତି - ମୃତ୍ୟୁ: ୧୯୧୮, ଜୁନ୍ ୧୪, ରଜ ସଂକ୍ରାନ୍ତି) ଉଭୟ ସଂସ୍କୃତ ରାମାୟଣ ଓ ମହାଭାରତକୁ ଓଡ଼ିଆ ଭାଷାରେ ଅନୁବାଦ କରି ବାସ୍ତବରେ ଏକ ମର୍ଯ୍ୟାଦାବନ୍ତ ସ୍ଥାନର ଅଧିକାରୀ ହୋଇପାରିଛନ୍ତି । ଯଥାର୍ଥରେ ଏଇ ଦୃଷ୍ଟିରୁ ସେ ବ୍ୟାସକବି । ବିଂଶ ଶତାବ୍ଦୀର ପ୍ରଥମ ଭାଗରେ ବାମଣ୍ଡାର ରାଜଦରବାର ଜ୍ଞାନୀ-ଗୁଣୀ-ସାହିତ୍ୟିକମାନଙ୍କର ବିଶେଷ ପୃଷ୍ଠପୋଷକ ଭାବେ 'ବୁଧ-ହଂସ-କେଳି-ସର' ରୂପେ ସମଗ୍ର ଉତ୍କଳରେ ଖ୍ୟାତି ଲାଭ କରିଥିଲା । ସେହି ବାମଣ୍ଡାର 'ସୁର-ତରଙ୍ଗିଣୀ-ସାରସ୍ୱତ ସମିତି' ୧୯୧୬ ଖ୍ରୀଷ୍ଟାବ୍ଦରେ କବି ଫକୀରମୋହନଙ୍କୁ ସରସ୍ୱତୀ ସମ୍ମାନ ପ୍ରଦାନ କରି ଆପଣାକୁ ହିଁ ଗୌରବାନ୍ୱିତ କରିଥିଲା । ଫକୀରମୋହନଙ୍କର ଆଜୀବନ ଉତ୍ସର୍ଗୀକୃତ ସାହିତ୍ୟ ସାଧନା ନିମିତ୍ତ ଖଲ୍ଲିକୋଟ-ମହାରାଜା ତାଙ୍କୁ ସ୍ୱର୍ଣ୍ଣପଦକ ପ୍ରଦାନ କରି ସାହିତ୍ୟସ୍ରଷ୍ଟା ଭାବେ ସମ୍ମାନିତ କରିଥିଲେ । ଫକୀରମୋହନଙ୍କର ଶେଷ ଜୀବନରେ (ମୃତ୍ୟୁର ପ୍ରାୟ ବର୍ଷକ ପୂର୍ବରୁ) ସେ ସମାଦୃତ ହେବାର ସମ୍ବାଦ 'ଗଡ଼ଜାତ-ବାସିନୀ' ପତ୍ରିକାରୁ ଦେଖିବାକୁ ମିଳେ । ଯଥା- 'ବର୍ତ୍ତମାନ ଗଭୀର ଆନନ୍ଦର ସହିତ ପ୍ରକାଶ କରୁଅଛୁ ଯେ ଉତ୍କଳର ଭାରତପୂଜ୍ୟ ମୁକ୍ତିମଣ୍ଡପ ସଭା ଉକ୍ତ ପ୍ରତିଭାଶାଳୀ ବୀଣାପାଣିଙ୍କ ବରପୁତ୍ରଙ୍କୁ 'କବିଶେଖର' ଉପାଧିରତ୍ନରେ ଭୂଷିତ କରି ମହାନଗୁଣ ଗ୍ରାହକତାର ଅତି ସୁନ୍ଦର ପରିଚୟ ପ୍ରଦାନ କରିଅଛି । (ଗଡ଼ଜାତବାସିନୀ, ଭାଗ-୧୫, ସଂଖ୍ୟା-୧୧, ତା.୭.୩.୧୯୧୭, ପୃଷ୍ଠା-୪୨) ।

ଓଡ଼ିଶାର ଘନଘୋର ଦୁର୍ଦ୍ଦିନରେ ସମସ୍ତ ପ୍ରତିକୂଳତା ସତ୍ତ୍ୱେ ଓଡ଼ିଆଜାତି ଓ ତା'ର ଭାଷା ସଂସ୍କୃତିକୁ ବଞ୍ଚାଇ ଜାତୀୟ ଜୀବନକୁ ବଳିଷ୍ଠ କରାଇବାରେ ଫକୀରମୋହନ ସେନାପତିଙ୍କର ଅବଦାନ ଅନବଦ୍ୟ । ସେଇଥିପାଇଁ ୧୯୧୭ ମସିହାର ଶେଷଭାଗରେ କଟକଠାରେ ଅନୁଷ୍ଠିତ ଉତ୍କଳ ଭାଷାଭାଷୀଙ୍କ ସମ୍ମିଳନୀରେ ଓଡ଼ିଆ ଭାଷା ଓ ସାହିତ୍ୟର ପ୍ରକୃତ ଦକ୍ଷ ସେନାପତି ଫକୀରମୋହନ ସେନାପତିଙ୍କୁ ସଭାପତି ଆସନରେ ସମ୍ମାନିତ କରାଯାଇଥିଲା ।

ଫକୀରମୋହନ ତାଙ୍କର 'ଆତ୍ମଜୀବନ ଚରିତ'ରେ 'ଉତ୍କଳ ଭ୍ରମଣଂ' କାବ୍ୟ ସଂପର୍କରେ ଲେଖିଥିବା କଥାରୁ କାବ୍ୟର ପୃଷ୍ଠଭୂମି ସଂପର୍କରେ ଅବଧାରଣା କରିହୁଏ, ଯଥା- 'ଭଦ୍ରକରୁ ଆନନ୍ଦପୁର ବାହୁଡ଼ି ଆସୁଥାଏ । xxx ହଠାତ୍ ମୋ' ମନରେ ଉଦୟ ହେଲା ବର୍ତ୍ତମାନ ଉତ୍କଳରେ ଯେତେ ସାହିତ୍ୟିକ ଓ ପ୍ରଧାନ ଲୋକ ଅଛନ୍ତି, ସେମାନଙ୍କ ନାମ ସାହିତ୍ୟ ମଧ୍ୟରେ ଲିଖିତ ହେବା ଉଚିତ । ପରେ ମନେ କଲି କେବଳ ନାମମାଳା ଗୁନ୍ଥି ରଖିଲେ ଲୋକେ ପଢ଼ିବାକୁ ସୁଖ ପାଇବେ ନାହିଁ । ନାମ ସହିତ ସେମାନଙ୍କର ଗୁଣାବଳୀ ଲିପିବଦ୍ଧ କରିବାକୁ ଇଚ୍ଛା ହେଲା । ହାତୀ ଉପରେ ବସିଥାଏ । ପକେଟ୍‌ରୁ ପକେଟ୍ ବହି ଓ ପେନ୍‌ସିଲ ବାହାର କରି ପଦ୍ୟ ଲେଖିବାକୁ ଆରମ୍ଭ କଲି । ଆନନ୍ଦପୁରରେ ପହଞ୍ଚିବା ବେଳକୁ ଅଧାଅଧି ଲେଖା ହୋଇଯାଇଥିଲା । ସେଠାରୁ ଓହ୍ଲାଇବା ମାତ୍ରେ କମ୍ପୋଜିଟରକୁ ଡାକି କମ୍ପୋଜ କରିବାକୁ ଦେଲି । କିଛିକ୍ଷଣ ବିଶ୍ରାମ କରି ପୁଣି ଲେଖିବାକୁ ଆରମ୍ଭ କଲି । ଖଣ୍ଡିଏ ଖଣ୍ଡିଏ କାଗଜରେ ଲେଖା ହୋଇଯିବା ମାତ୍ରେ ଅକ୍ଷର ଯୋଜନ ନିମନ୍ତେ କମ୍ପୋଜିଟର୍ ତାହା ଘେନି ଯାଉଥାଏ । ଦ୍ୱିତୀୟ ଦିନ ସନ୍ଧ୍ୟା ସରିକି ପୁସ୍ତକ ଛାପା ସମାପ୍ତ ହୋଇଗଲା । ଏହା ହିଁ ମୋର 'ଉତ୍କଳ ଭ୍ରମଣଂ' ପ୍ରଥମ ସଂସ୍କରଣ । (ଆତ୍ମଜୀବନ ଚରିତ - ଫକୀର ମୋହନ ସେନାପତି)

ଗବେଷକ ଡଃ ପ୍ରଫୁଲ୍ଲଚନ୍ଦ୍ର ମହାନ୍ତି 'ଉତ୍କଳ ଭ୍ରମଣଂ'ର ପୃଷ୍ଠଭୂମି ସଂପର୍କରେ କହନ୍ତି ନିମ୍ନୋକ୍ତ ଭାବେ - '୧୮୯୧ ମସିହା ମେ ମାସ ୧୪ ତାରିଖରୁ ସେଇ ମେ ମାସ ୨୩ ତାରିଖ ଯାଏ ଫକୀରମୋହନ କେନ୍ଦୁଝର ଭୂୟାଁମାନଙ୍କ କବଳରେ ପଡ଼ିଛନ୍ତି । ଚାକିରି ରହିବାର ସମ୍ଭାବନା ଲୋପ ପାଇଛି, ବଞ୍ଚିବାର ଆଶା ମଧ୍ୟ କ୍ଷଣ ହୋଇଆସିଛି । ଭଦ୍ରକରୁ ଆନନ୍ଦପୁରକୁ ହସ୍ତୀପୃଷ୍ଠରେ ଯିବା କାଳରେ ଏଇ ନଅଦିନ ମଧ୍ୟରେ 'ଉତ୍କଳ ଭ୍ରମଣଂ'ର ସୃଷ୍ଟି ପରିକଳ୍ପନା ଓ ପରିସମାପ୍ତି ମଧ୍ୟ ।

କବି ଫକୀରମୋହନ, ଦେୱାନ୍ ଫକୀରମୋହନ ୧୮୯୧ ମସିହା ପୂର୍ବରୁ ଓଡ଼ିଶାର ବହୁସ୍ଥାନ ପର୍ଯ୍ୟଟନ କରିଛନ୍ତି ବହୁବ୍ୟକ୍ତି ବିଶେଷଙ୍କ ସଂପର୍କରେ ଆସିଛନ୍ତି । ତତ୍କାଳୀନ ଓଡ଼ିଆ ଜାତି ଓ ରାଜ୍ୟ ପାଇଁ ସଂଗ୍ରାମ କରି ବହୁ ଅଭିଜ୍ଞତା ହାସଲ କରିଛନ୍ତି । ସଂଗୃହୀତ ଅଭିଜ୍ଞତା - ଅନୁଭୂତିକୁ ପୁଞ୍ଜି କରି ସେ ରୂପାୟିତ କରିଛନ୍ତି - ତାଙ୍କର ଅନୁପମ କାବ୍ୟ 'ଉତ୍କଳ ଭ୍ରମଣଂ' । ତାଙ୍କର ଏହି କାବ୍ୟକୁ ଇଂରାଜୀ ସାହିତ୍ୟର କବି ଡ୍ରାଇଡନ୍‌ଙ୍କ କବିତା ତଥା ପୋପ୍‌ଙ୍କର ଦୀର୍ଘ The Duciad କବିତା ସହିତ ତୁଳନା କରାଯାଇ ପାରେ । କେତେକ ଦୃଷ୍ଟିରୁ ରାଧାନାଥ ରାୟଙ୍କ 'ଦରବାର' ଲଘୁବ୍ୟଙ୍ଗ (Satire) ମିଶ୍ରିତ ସାମାଜିକ ଭାବନାର କାବ୍ୟ ହୋଇଥିବାରୁ ତାହା ସହିତ ତୁଳନା କରାଯାଇନପାରେ । 'ଦରବାର' କାବ୍ୟ କାଳ୍ପନିକ ଓ ତାତ୍ତ୍ୱିକ ପୃଷ୍ଠଭୂମିରେ ଆଧାରିତ ହୋଇଥିବା ବେଳେ 'ଉତ୍କଳ ଭ୍ରମଣଂ' କାବ୍ୟ ସତ୍ୟ ଘଟଣା ଓ ଅଭିଚିନ୍ତନ ଉପରେ ପର୍ଯ୍ୟବସିତ । ଉତ୍କଳୀୟ ବ୍ୟଙ୍ଗ ପଦ୍ୟ ରଚନା କ୍ଷେତ୍ରରେ 'ଉତ୍କଳ ଭ୍ରମଣଂ'ର ସ୍ଥାନ ସର୍ବପ୍ରଥମ ବୋଲି ଧରି ନେବା କଥାଟି ଆଦୌ ଅତିରଞ୍ଜନ ନୁହେଁ ।

'ଉତ୍କଳ ଭ୍ରମଣଂ' କାବ୍ୟରେ ବାକ୍‌ଦେବୀ ସାରଳାଙ୍କଠାରୁ ଆରମ୍ଭ କରି ତତ୍କାଳୀନ ଶାସନକର୍ତ୍ତା, କବି, ସମାଜପତି, ଓକିଲ, ଗଡ଼ଜାତ ରାଜା ଓ ଶିକ୍ଷିତ ଗୋଷ୍ଠୀ ପର୍ଯ୍ୟନ୍ତ ସମସ୍ତେ ଫକୀରମୋହନଙ୍କର ବ୍ୟଙ୍ଗବିଦ୍ରୂପର ଶରବ୍ୟ ହୋଇଛନ୍ତି ଅତି ମାର୍ଜିତ ଢଙ୍ଗରେ । କବି ସାରଳାଙ୍କୁ ବନ୍ଦନା କରିଛନ୍ତି ନିମ୍ନୋକ୍ତ ଭାବେ -

'ତୁମ୍ଭର ଅଭ୍ୟାସ କବିକଣ୍ଠେ ବସିବାର
ମୋ' ପ୍ରତି ସେପରି କର ନାହିଁ ଅତ୍ୟାଚାର ।

x x x x

ଉଶ୍ୱାସେ ବସିବ ମାତ ମୋ' ମୁଣ୍ଡରେ ଧୀରେ
ଝୁଙ୍କି ନ ପଡ଼ିବ ମୁଣ୍ଡ ଯେମନ୍ତ ଭାରିରେ ।'

'ଉତ୍କଳ ଭ୍ରମଣଂ' କାବ୍ୟ ଯେଉଁମାନଙ୍କର ନାମ ବହନ କରିଅଛି, ସେମାନେ ହେଲେ ଓଡ଼ିଶା ଭାଷା ଓ ସାହିତ୍ୟର ପ୍ରଧାନ ପୃଷ୍ଠପୋଷକ ତଥା ପ୍ରଜାକଲ୍ୟାଣକାରୀ ମହାରାଜ ଶ୍ରୀରାମଚନ୍ଦ୍ର ଭଞ୍ଜ, ବାଲେଶ୍ୱର ଲୋକପ୍ରିୟ ରାଜା ବୈକୁଣ୍ଠନାଥ ଦେ ବାହାଦୂର, ଦାନଶୀଳ ଫକବାବୁ (ଶ୍ରୀ ବାବୁ ରାଧାଚରଣ ଦାସ), ସମାଜସେବୀ ହରି ସରକାର, ସତ୍ୟ-ଧର୍ମ-ପ୍ରଚାରକ ଭଗବାନ ଦାସ, ସୁଲେଖକ ଗୋବିନ୍ଦଚନ୍ଦ୍ର ପଟ୍ଟନାୟକ, ଶିବ ନାରାୟଣ ନାୟକ, ଚନ୍ଦ୍ରମୋହନ ମହାରଣା, କବିବର ରାଧାନାଥ ରାୟ, ଉତ୍କଳ ଦୀପିକାର ସୁଯୋଗ୍ୟ ସଂପାଦକ ଗୌରୀଶଙ୍କର ରାୟ, ରାମଶଙ୍କର ରାୟ, ଭକ୍ତକବି ମଧୁସୂଦନ ରାଓ, ଶଶୀଭୂଷଣ ରାୟ, ବିଶ୍ୱନାଥ କର, ପୁରୁଷୋତ୍ତମ ରଥ, ବିହାରୀଲାଲ, ପଲ୍ଲୀକବି ନନ୍ଦକିଶୋର ବଳ, ସ୍ୱଭାବକବି ଗଙ୍ଗାଧର ମେହେର, କାବ୍ୟତୀର୍ଥ ମୃତ୍ୟୁଞ୍ଜୟ ରଥ, 'ମୁକୁର' ପତ୍ରିକାର ସୁଯୋଗ୍ୟ ସଂପାଦକ ବ୍ରଜସୁନ୍ଦର ଦାସ, ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷର ସୁଦକ୍ଷ ସଙ୍କଳକ ରାୟ ବାହାଦୁର ଗୋପାଳଚନ୍ଦ୍ର ପ୍ରହରାଜ, ଅଭିଧାନ ସଙ୍କଳକ ଜଗନ୍ନାଥ ରାଓ, ବୈଜ୍ଞାନିକ ଯୋଗେଶଚନ୍ଦ୍ର ରାୟ, ଜ୍ୟୋତିର୍ବିଦ ସାମନ୍ତ ଚନ୍ଦ୍ରଶେଖର ସିଂହ ମହାପାତ୍ର, ଜନହିତୈଷୀ ରାଜା ଭଗୀରଥ, ତାଳଚେରର ରାଜା ରାମଚନ୍ଦ୍ର ବୀରବର, ଢେଙ୍କାନାଳର ଆଦର୍ଶ ସ୍ଥାନୀୟ ମହିୟସୀ ମହିଳା ସୁଲକ୍ଷଣା, ଜନହିତୈଷୀ ରାଜା ଶ୍ରୀ ମହେନ୍ଦ୍ର

ବାହାଦୂର, ବାମଣ୍ଡାର ରାଜା ଶ୍ରୀ ବାସୁଦେବ ସୁଢ଼ଳଦେବ, ସଚ୍ଚିଦାନନ୍ଦ ଦେବ, ଓଡ଼ିଶୀ ସଙ୍ଗୀତଜ୍ଞ କିଶୋରୀ ମୋହନ, ପଣ୍ଡିତ ବାଞ୍ଛାନିଧି ତର୍କ ପଞ୍ଚାନନ, ସଦାଶିବ କାବ୍ୟକଣ୍ଠ, ଉଚ୍ଚ ଶିକ୍ଷିତ ମଧୁସୂଦନ ଦାସ (ମଧୁବାବୁ), ବାରିଷ୍ଟର ବିଶ୍ୱନାଥ ମିଶ୍ର, ସତ୍ୟବାଦୀର ସାଧକ ଗୋପବନ୍ଧୁ ଦାସ, ନୀଳକଣ୍ଠ, ଗୋଦାବରୀଶ, କୃପାସିନ୍ଧୁ, ରେଭେନ୍ସା ସାହେବ, ଜନ୍ ବିମ୍ସ, ଲର୍ଡ଼ କାନିମରା ସାହେବ, ଶାନ୍ତିଶୀଳ ଧନବନ୍ତ ବନମାଳୀ, ମାକ୍‌ଡୋନେଲ୍‌ଡ, ବ୍ରାହ୍ମଧର୍ମାବଲମ୍ବୀ ସାଧୁରାୟ, ବୈଦ୍ୟରାଜ ଗଦେଇ ଚିଆଡ଼ି, ବୈଦ୍ୟରାଜ ମାଗୁଣି ମିଶ୍ର, କବିଶେଖର ଚିନ୍ତାମଣି, ପ୍ୟାରୀମୋହନ ଆଚାର୍ଯ୍ୟ, ଜଗମୋହନ ଲାଲା, କଳାକାର ଆନନ୍ଦଚନ୍ଦ୍ର ମିଶ୍ର, ପାରିକୁଦର ରାଜା, ଖଲ୍ଲିକୋଟ କଲେଜର ପ୍ରତିଷ୍ଠାତ୍ରୀ ଖଲ୍ଲିକୋଟ ରାଣୀ କାଞ୍ଚନମଞ୍ଜରୀ, ବିପ୍ର ଭଗବତୀ ଚଟ୍ଟୋପାଧ୍ୟାୟ, ଜୟପୁରର ରାଜା ବିକ୍ରମ ଦେବ, କେରା ଅଧୀଶ୍ୱର ଲକ୍ଷ୍ମୀ ନାରାୟଣ, ଦଶପଲ୍ଲାର ଆଡମ୍ବରଶାଳୀ ରାଜା, ଡୋମପଡ଼ାର ପିଲାରାଜା (ନାବାଳକ ରାଜା) ଆଠଗଡ଼ର ବିଳାସୀ ରାଜା, ପଲିଟିକାଲ୍ ଏଜେଣ୍ଟ ନନ୍ଦକିଶୋର ଆଦି । ଆହୁରି ମଧ ଅଛନ୍ତି ରାଜା, ଶାସକ, କବି, ସାହିତ୍ୟିକ, ଦେଶସେବୀ, କଳାକାର, ପତ୍ରକାର, ପତ୍ରପତ୍ରିକାର ସଂପାଦକ, ଦାନୀ-ପଣ୍ଡିତ, ଶାସ୍ତ୍ରବିତ୍, ଶିକ୍ଷକ, ସାଧାରଣ ପାନବାଲା, ମହିୟସୀ ମହିଳା, ନେତା, ଓକିଲ, ବାରିଷ୍ଟର, ସ୍ୱାର୍ଥପର, ଭଣ୍ଡ ଜନହିତୈଷୀ, ଭାଷାପ୍ରେମୀ, କୀର୍ତ୍ତନବାଲା ଇତ୍ୟାଦି ।

୧୮୬୫ ମସିହାରେ କଟକରେ ମୁଦ୍ରଣ ଯନ୍ତ୍ର (Printing Press) ସ୍ଥାପିତ ହେଲା । ଏଥିରେ ଯେଉଁମାନଙ୍କର ପ୍ରତ୍ୟକ୍ଷ ଅବଦାନ ନିହିତ, ସେମାନେ ହେଲେ କର୍ମବୀର ଗୌରୀଶଙ୍କର, ଗୋବିନ୍ଦ ରଥ, ଭାଗିରଥୀ ଷାଠିଆ, ନୀଳମଣି ବିଦ୍ୟାରତ୍ନ ଆଦି । ଓଡ଼ିଶାରେ ମୁଦ୍ରଣ ଶିଳ୍ପର ବିକାଶ ନ ଘଟେ କି ଓଡ଼ିଆ ସାହିତ୍ୟର ଆନୁପାତିକ ପ୍ରଚାର-ପ୍ରସାର ନ ହୁଏ । ମୁଦ୍ରଣଯନ୍ତ୍ର ସ୍ଥାପିତ ହୁଅନ୍ତେ ତା'ର ପ୍ରଚାର-ପ୍ରସାର ପାଇଁ ଓ ନିଜର ଉଦାରତା ଦୃଷ୍ଟିରୁ ସ୍ୱଳ୍ପ ମୂଲ୍ୟରେ ଗୋବିନ୍ଦ ରଥ ବହୁପୁସ୍ତକ ମୁଦ୍ରଣ କରାଇଥିଲେ । ତାଙ୍କର ଏତାଦୃଶ ଉଦାରତାକୁ ପ୍ରଶଂସା କରି ଫକୀରମୋହନ 'ଉତ୍କଳ ଭ୍ରମଣଂ'ରେ ଲେଖିଲେ -

'ଭଲା ରଥେ କରିଛନ୍ତି ବ୍ରାହ୍ମଣ ପଣିଆ
ପୁସ୍ତକ ଛପାଇ ଦେଲେ ଅଣେ-ଦି' ଅଣିଆ ।'

ସମ୍ବଲପୁର ହିତୈଷିଣୀ ପତ୍ରିକାର ପ୍ରତିଷ୍ଠାତା ବାମଣ୍ଡାଧିପତି ରାଜା ଶ୍ରୀ ବାସୁଦେବ ସୁଢ଼ଳଦେବଙ୍କୁ ବହୁ ପ୍ରଶଂସା ସହ ପ୍ରୋକ୍ତ ପତ୍ରିକାର ପ୍ରତିଭାବାନ୍ ସଂପାଦକ ନୀଳମଣି ବିଦ୍ୟାରତ୍ନଙ୍କ ପ୍ରତି ସେ ଲେଖିଛନ୍ତି -

'ମୋହର ବିନତି ଶୁଣ ନୀଳମଣି ନନା
ହିତୈଷିଣୀ ଲେଖିବାକୁ କରିବନି ମନା ।
ଏକ କାର୍ଯ୍ୟ କରି ଲାଭ ପାଇବ ସକଳ
ଯଶ-ଅର୍ଥ-ବିଦ୍ୟା-ନାମ ଚତୁଃବର୍ଗ ଫଳ ।'

ସମ୍ବଲପୁର ଜିଲ୍ଲାରେ ହିନ୍ଦୀ ଭାଷା ପ୍ରଚଳନର ତୀବ୍ର ପ୍ରତିବାଦକୁ ତେଜି ରଖିଥିବା ପତ୍ରିକା ହେଲେ 'ଉତ୍କଳ ଦୀପିକା' ଓ 'ସମ୍ବଲପୁର ହିତୈଷିଣୀ' । ସେମାନଙ୍କର ସତ୍‌ସାହସକୁ କବି ପ୍ରଶଂସା କରିଛନ୍ତି । 'ଉତ୍କଳ ଦୀପିକା'ର ସାହସୀ ସଂପାଦକ ଗୌରୀଶଙ୍କର ରାୟଙ୍କୁ ତାଙ୍କର ସାହସିକ ପଦକ୍ଷେପ ପାଇଁ ସେ ଲେଖିଥିଲେ ନିମ୍ନ ଭାବେ -

'ହେ ଗୌରୀଶଙ୍କର ଧନ୍ୟ ତୁମର ସାହସ
ଦୀପିକା ଲେଖିଛ ବସି ତିରିଶ ବରଷ
ନମାନି ବିପଦ ବାଧା ନ ଚାହିଁ ଦେହକୁ
ମନପ୍ରାଣ ସମରପି ପାଳିଛ ବ୍ରତକୁ ।
ଦେଖି ଦେଖି ଢେରଦିନ ଜାଣିଛି ବିଶେଷ
ଅଟ ତୁମ୍ଭେ ଜଣେ Man of Business ।'

କବିବର ରାଧାନାଥ ରାୟ ସେତେବେଳେ ଶିକ୍ଷା ବିଭାଗରେ ଉଚ୍ଚତମ କର୍ମକର୍ତ୍ତା, ଆଧୁନିକ କବିତା/କାବ୍ୟ ରଚନା କରି ସମାଲୋଚନାର ପାତ୍ର । ତାଙ୍କ ପ୍ରତି କବିଙ୍କର ମନ୍ତବ୍ୟ ଥିଲା -

'ଯେ ଯାହା କହୁ, ମାତ୍ର ମୁଁ କହେ ବରାବର
ଓଡ଼ିଶାର ଭାଗ୍ୟ ଗୁଣେ ହେବ ଇନିସ୍‌ପେକ୍ଟର ।'

କବି ମଧୁସୂଦନ ରାଓଙ୍କ ପ୍ରତି ସେ ଲେଖିଛନ୍ତି -

'ଓଜନରେ ହେବ ମଧୁ ଅଢ଼ାଇ ପଶୁରି
କିପରି ରଖିଛ ଏତେ ଗୁଣ ପେଟେ ଭରି ।'

ବାଗ୍ମୀ ପ୍ରବର ବିଶ୍ୱନାଥଙ୍କୁ ପ୍ରଶଂସା କରିଛନ୍ତି ଚମତ୍କାର ଭାଷାରେ, ଯଥା-

'ବାଟୁଳି ବାଜିବ ନାହିଁ କଥା ଗଲେ କହି
ଉବୁଡ଼ା ମାଠିଆ ମୁହଁ ପାଣି ପରି ବହି ।'

ଉତ୍କଳଗୌରବ ମଧୁସଦନ ଦାସ (ମଧୁବାବୁ)ଙ୍କ ପ୍ରତି ତାଙ୍କର ପର୍ଯ୍ୟବେକ୍ଷଣ ଜନିତ ମନ୍ତବ୍ୟ ଥିଲା ସେଇ 'ଉତ୍କଳ ଭ୍ରମଣଂ' କାବ୍ୟରେ ନିମ୍ନଭାବେ, ଯଥା-

'ସବୁବେଳେ ତୁମ୍ଭେ ଭାଳୁଥାଅ ବସି
ମନେ ଦେଶଚିନ୍ତା ମାତ୍ର ହେ ଯୋଗୀ ତପସ୍ୱୀ ।'

ଏହି କାବ୍ୟରେ ଓଡ଼ିଶାର ଇତିହାସ ପର୍ଯ୍ୟାଲୋଚନା କରାଯାଇ ତା'ର ଗୌରବ ତଥା କୀର୍ତ୍ତିକଳାପ ସଂପର୍କରେ ସୂଚନା ମଧ ଦିଆଯାଇଅଛି । ଊନବିଂଶ ଶତାବ୍ଦୀର ଶେଷାର୍ଦ୍ଧ ବେଳକୁ ଓଡ଼ିଶାର ଭୌଗୋଳିକ ସୀମା କିପରି ପଡ଼ୋଶୀ ରାଜ୍ୟ ଦ୍ୱାରା ସଙ୍କୁଚିତ ହୋଇଥିଲା ତା'ର କ୍ଷୀଣ ସୂଚନା ସେ ଦେଇଥିଲେ ନିମ୍ନ ପଦଗୁଡ଼ିକରେ ଯଥା-

'ମାତ୍ର ଆହା ଏହି ଦେଶ ହୋଇ ଖଣ୍ଡ ଖଣ୍ଡ
ସକଳ ସୌନ୍ଦର୍ଯ୍ୟ ହୋଇଅଛି ଲଣ୍ଡଭଣ୍ଡ
ଦକ୍ଷିଣଟା କମାମାନେ ବସିଛନ୍ତି ମାଡ଼ି
ଉତ୍ତରଟା ହେଲାଣି ତ ବଙ୍ଗାଳୀଙ୍କ ବାଡ଼ି ।
ପଶ୍ଚିମ ଦିଗର କଥା ବୋଇଲେ ନ ସରେ
ପଡ଼ିଲାଣି ମରହଟ୍ଟା ପଶ୍ଚିମ ଭାଗରେ ।'

ଓଡ଼ିଆମାନେ କାୟ-ମନୋ-ବାକ୍ୟରେ ଓଡ଼ିଶା ଦେଶ ଓ ଓଡ଼ିଆ ଭାଷାର ଉନ୍ନତି ପାଇଁ ମନ ବଳାଇବେ ବୋଲି ସେ ଆହ୍ୱାନ କରିଛନ୍ତି ଏଇ କାବ୍ୟ ଜରିଆରେ । ଊନବିଂଶ ଶତାବ୍ଦୀର ଶେଷ ଭାଗ ଓ ବିଂଶ ଶତାବ୍ଦୀର ପ୍ରଥମ ଭାଗରେ ଆଧୁନିକ ଇଂରେଜ ପଢୁଆ ଶିକ୍ଷିତ ଯୁବକମାନେ ସ୍ୱମାତୃଭାଷା ଓଡ଼ିଆ ପ୍ରତି ବିଶେଷ ଦୃଷ୍ଟି ଦେଉ ନଥିବା କଥାଟି କବିଙ୍କୁ ବିଶେଷ ବାଧୁଥିଲା । ଏଣୁ ସେମାନଙ୍କର ମାତୃଭାଷା ପ୍ରତି ଅବହେଳାକୁ ସେ ତୀକ୍ଷ୍ଣ ଭାଷାରେ ଦୃଢ଼କଣ୍ଠରେ ସମାଲୋଚନା କରିଛନ୍ତି ନିମ୍ନଲିଖିତ ଭାବେ -

'ଘୃଣା କରୁଅଛି ମାତୃଭାଷା ପଢ଼ିବାକୁ
ହାୟ ହାୟ ଲାଜକଥା କହିବି କାହାକୁ ।
ବୋଲିବ ବଙ୍ଗାଳୀ ତୁମ ଘରେ ପାଠ ନାହିଁ
ଆପେ ଲେଖ, ଆପେ ପଢ଼, ରଖ ପୁଅ ପାଇଁ
ତିରିଶ ବରଷ ତଳେ କି ଥିଲା ଇଂରେଜୀ
ଦେଖ ତ ବଙ୍ଗଳା ଭାଷା କି ହୋଇଛି ଆଜି !'
'ଯତ୍ନେ ହେଲା ଅବା ଆପେ ହୋଇଛି ଏପରି
ତୁମ୍ଭ ମାତୃଭାଷା କିପାଁ ନ ହେବ ସେ'ପରି ।'

ବ୍ୟଙ୍ଗ ଛଳରେ ମାତୃଭାଷା ବିଦ୍ୱେଷୀ ତତ୍କାଳୀନ ଗର୍ବାନ୍ଧ ଓଡ଼ିଆ ରାଜାମାନଙ୍କ ବିଦେଶୀ ଭାଷାପ୍ରୀତିକୁ ସେ ଉପହସିତ କରାଇ ଲେଖିଛନ୍ତି -

'କେତେ ରାଜାଙ୍କର ଅଛି ଇଂରେଜୀ
ନ ଛୁଇଁବେ very dirty ଓଡ଼ିଆ Language
ସତକଥା ହେଲେ ଏବେ English Educated
Consequently ଓଡ଼ିଆ Study sad neglected ।'

ନବ୍ୟଶିକ୍ଷିତ ବାବୁମାନଙ୍କର ମାତୃଭାଷା ପ୍ରତି ଅନାଦର ଭାବ ଦେଖି କବିଙ୍କର ବ୍ୟଥିତ ହୃଦୟର ପ୍ରତିଫଳନ ଥିଲା ନିମ୍ନଭାବେ -

'କେତେ ବାବୁଙ୍କର ଦେଖିଛି ଦୁର୍ଦ୍ଦଶା
ଲାଜମାଡ଼େ କହିବାକୁ ନିଜ ମାତୃଭାଷା ।'

ମୋଟ ଷୋଳପଣରୁ ଏଗାରପଣ ଓଡ଼ିଆ ସହିତ ଅବଶିଷ୍ଟ ଇଂରାଜୀ ମିଶାଇ ଏକ ମିଶ୍ରିତ ଭାଷାରେ କଥୋପକଥନ ଅନ୍ୟ ଏକ ହାସ୍ୟୋଦ୍ଦୀପକ କଥା । ଏପରି ବାରଚାଗୁଳିଆ - ଯୋଗୀଥାଳ ଚାଉଳ ପରି ବାରମିଶା ଭାଷା କବିଙ୍କୁ ସୁହାଇ ନାହିଁ । କବି ଏହା ପ୍ରତି ଅଙ୍ଗୁଳି ନିର୍ଦ୍ଦେଶ କରି ଲେଖିଛନ୍ତି -

'ଭଲ ଗୋଟେ ମାତୃଭାଷା କିସ ହେବ ଭାଇ
ଚଳି ଯାଉଅଛି କାମ ରୁଣ୍ଡାଇପୁଣ୍ଡାଇ
କୁକୁର କିପାଇଁ ଗୋଟେ ବନାଇବ ଘର
ଚାଟି ବୁଲେ ବାରମିଶା ଅଇଁଠା ପତର ।'

କବି ଫକୀରମୋହନଙ୍କ ପକ୍ଷରେ ଦେଶ-ଜାତି-ମାତୃଭାଷା ପ୍ରତି ଅପମାନ ଏକ ବାରକେ ଅସହ୍ୟ । ତା'ର ନିରାକରଣ ପାଇଁ ସେ ବ୍ୟାକୁଳତା ପ୍ରକାଶ କରିଛନ୍ତି । ଏହାର ଅର୍ଥ ନୁହେଁ ଯେ ସେ ତତ୍କାଳୀନ ରାଜଭାଷା - Official Language-Englishର ବିରୋଧୀ ଥିଲେ । କିନ୍ତୁ ଓଡ଼ିଆ ଭାଷାକୁ ଅବହେଳା ଓ ଅବମାନନା କରି ତା'ସ୍ଥାନରେ ଇଂରେଜୀ ଭାଷା ପ୍ରତି ସମ୍ମାନ ଦେବା କଥାକୁ ସେ ଗ୍ରହଣ କରିପାରି ନଥିଲେ । ବରଂ ଚେତାବନୀ ତଥା ଉପଦେଶ ଦେବା ଛଳରେ ଲେଖିଥିବା କଥାର କିୟଦଂଶ ନିମ୍ନରେ ପ୍ରଦତ୍ତ, ଯଥା-

'x x x x x

ଇଂରେଜ ଇଂରେଜୀ ଭାଷା ରହିଯିବେ କାହିଁ ?
ତେତେବେଳେ ରହିଯିବ ଜଳ ଜଳ ଚାହିଁ ।
ଯେଉଁପାଠ ପଢ଼ିବାରେ ଦେଇଅଛ ମନ
ନ ବିଚାର ସେ'ତ ନୁହେଁ ତୁମ୍ଭ ଗଣ୍ଠିଧନ ।
ପଢ଼ ଇଂରେଜୀ କେହି ମନା କରୁ ନାହିଁ
କିନ୍ତୁ ବାପ କାମ କର ଜାତି-କୁଳ ଚାହିଁ ।'

ଓଡ଼ିଆଭାଷା ସଂରକ୍ଷଣ ଓ ମାନବୃଦ୍ଧି ପାଇଁ ଫକୀରମୋହନଙ୍କର ଥିବା ଐକାନ୍ତିକ କାମନା ଓ ବ୍ୟାକୁଳତା ତାଙ୍କର ଉତ୍ସର୍ଗୀକୃତ ଜୀବନର ସାରସ୍ୱତ ଦିଗନ୍ତକୁ ପ୍ରସାରିତ କରାଇଥିଲା ନିଶ୍ଚିତ । ତତ୍କାଳୀନ ଓଡ଼ିଶାର ଅନ୍ଧକାର ଭିତରେ ଖ୍ରୀଷ୍ଟିଆନ ମିସ୍‌ନାରୀଜ୍ (Christan Missionaries)ଙ୍କର ସ୍କୁଲ ସ୍ଥାପନା, ଛାପାଖାନା ପ୍ରତିଷ୍ଠା ଓ ରୋଗୀକୁ ଔଷଧ ବଣ୍ଟନ ଆଦି କାର୍ଯ୍ୟକୁ ସେ ପ୍ରଶଂସା କରି ସେମାନଙ୍କ ପ୍ରତି କୃତଜ୍ଞତା ଜଣାଇଛନ୍ତି କଲମ ମୂନରେ - ପୁଣି ଏଇ କାବ୍ୟ 'ଉତ୍କଳ ଭ୍ରମଣଂ'ରେ । ଭାଷା ଓ ଶିକ୍ଷାର ବିକାଶ କାମନାକାରୀ ଫକୀରମୋହନଙ୍କ ନିକଟରେ ପ୍ରୋକ୍ତ ମିସ୍‌ନାରୀଜ୍ ଥିଲେ ଦେବତା ପରି । ଏଣୁ କବିଙ୍କର ହାର୍ଦ୍ଦିକ ଅଭିନନ୍ଦନ ଥିଲା ଏହିପରି, ଯଥା-

'ଆଗେ ଆଗେ ଆସିଥିଲେ ଯେତେ ମିସ୍‌ନାରୀ
ସେହି ସବୁ ସାହେବଙ୍କୁ ପୂଜା କରେ ଭାରି
ପ୍ରଥମରେ ଗଢ଼ାଇଲେ ଇସ୍କୁଲିଆ ପାଠ
ପ୍ରଥମରେ ଦେଖାଇଲେ ଛାପାଖାନା ବାଟ
ଛପା ପୋଥି ଆଣି ଦେଖାଇଲେ ପ୍ରଥମରେ
ଔଷଧ ବାଣ୍ଟିଲେ ପ୍ରଥମରେ ଘରେ ଘରେ ।'

ସେ' କାଳରେ ଚାକିରି କ୍ଷେତ୍ରରେ ଓଡ଼ିଆମାନଙ୍କୁ ଏଡାଇ, ଅବହେଳା ପ୍ରଦର୍ଶନ କରି ବିଭିନ୍ନ ଆଳ ଦେଖାଇ ଅଣଓଡ଼ିଆମାନଙ୍କୁ ନିଯୁକ୍ତି ଦିଆଯାଉଥିବା କଥାକୁ ଫକୀରମୋହନ ସହ କରିପାରିନାହାନ୍ତି । ଫାଟି ଉଠିଛି ତାଙ୍କର ହୃଦୟ, ଫିଟି ଯାଇଛି ତାଙ୍କର ପାଟି, ଏଣୁ କଲମ ମୁନରେ ରହିଛି ତା'ର ପ୍ରମାଣ ଭିନ୍ନ ଭାବେ -

'Backward ମୁସଲମାନ ପାଇବେ ଚାକିରି
ହାଃ... ହାଃ... ଓଡ଼ିଆମାନେ forward ଭାରି
ହାକିମ, ଓକିଲ ସବୁ ଅଟନ୍ତି ବିଦେଶୀ
ଡାକଘର କିରାଣୀଟି ନୁହେଁ ମଧ ଦେଶୀ ।'

ଚାକିରି ବାଦେ ଦେଖିବା ବ୍ୟବସାୟ-ବାଣିଜ୍ୟ କଥା । ସେଥିରେ ମଧ ଅଣ-ଓଡ଼ିଆମାନଙ୍କର ଆଧିପତ୍ୟ ମାତ୍ରାଧିକ ହୋଇଥିବାରୁ ଫକୀରମୋହନ ତାହାର ତୀବ୍ର ପ୍ରତିବାଦ ଜଣାଇଛନ୍ତି । ଚେତାଇ ଦେଇଛନ୍ତି ରାଜ୍ୟବାସୀଙ୍କୁ ନିମ୍ନମତେ -

'ମାରୁଆଡ଼ି କାପେଡ଼ିଆ ଭୋଜପୁରୀ ମୁଦି
ବାଣିଜ୍ୟ ବେପାର ଦ୍ୱାର ରଖିଛନ୍ତି ମୁଦି
ଓଡ଼ିଆ କାଟିବେ ଧାନ ଚଷିଚଷି ମାଟି
ମାତ୍ରକ ଖାଇବେ ରସ ତହୁଁ ଗୁଜୁରାଟି ।'

ଉତ୍କଳ ଭ୍ରମଣଂ କାବ୍ୟରେ ବ୍ୟାସକବି ତତ୍କାଳୀନ ପ୍ରଶାସକ ଟି. ରେଭେନ୍‌ସା, ଜନ୍ ବିମସ୍, ମେକ୍‌ଡୋନାଲ୍, ଲର୍ଡ଼ କନିମରା ଆଦି ସାହେବଙ୍କୁ ଉଚ୍ଚ ପ୍ରଶଂସା କରିଛନ୍ତି । ଅନ୍ୟପକ୍ଷରେ ଓଡ଼ିଶା ଓ ଓଡ଼ିଆ ଭାଷାର କ୍ଷତି କରିଥିବା ଉଡ୍‌ବର୍ଣ୍ଣ ସାହେବଙ୍କ ବିରୋଧରେ ବିକ୍ଷୋଦ୍‌ଗାର କରିଛନ୍ତି । ତାଙ୍କୁ ବ୍ୟଙ୍ଗକରି କବି ଲେଖିଛନ୍ତି -

'ଯାହା କରିଗଲେ ଉଡ୍‌ବରନ ସାହେବ
ରକ୍ତ ଅକ୍ଷରରେ ଇତିହାସ ଲେଖା ହେବ ।
ସେ'ଦିନ ସାହେବ କହିଗଲେ କଟକରେ
କିଛି କାର୍ଯ୍ୟ ହେବ ନାହିଁ ତାହାଙ୍କ ନାମରେ ।
ମାତ୍ର ମୁହିଁ ତାଙ୍କ କୀର୍ତ୍ତି ଗାଇବି ନିତାନ୍ତ
ଓଡ଼ିଆ ଭାଷାର ହାଣି ଦେଇଛନ୍ତି ହାତ ।

x x x x

ଚାରିଆଡ଼େ ତାଙ୍କ ଯଶ ହେଉଛି ବିକାଶ
ଓଡ଼ିଆମାନଙ୍କ କିନ୍ତୁ କଲେ ସର୍ବନାଶ ।'

ବର୍ତ୍ତମାନ ଏକ ପ୍ରଶ୍ନ । କିଏ ଏଇ ଉଡ୍‌ବର୍ଣ୍ଣ ସାହେବ କିଏ ଓ ସେ କିପରି ଓଡ଼ିଶାର ସର୍ବନାଶ କରିଥିଲେ ? ଉତ୍ତରଟି ଅତି ସଂକ୍ଷେପରେ ପ୍ରଦତ୍ତ ।

ଉଡ୍‌ବର୍ଣ୍ଣ ସାହେବଙ୍କର ପୂରା ନାଁ ହେଲା - ସାର୍ ଜନ୍ ଉଡ୍‌ବର୍ଣ୍ଣ । ଇଂରେଜ ସରକାରଙ୍କର ଶାସନଗତ ସୁବିଧା ପାଇଁ ଭାରତକୁ ତିନିଖଣ୍ଡରେ ବିଭକ୍ତ କରିଥିଲେ । ଯଥା- ଉତ୍ତର ଖଣ୍ଡ, ଦକ୍ଷିଣ ଖଣ୍ଡ ଓ ମଧ ଖଣ୍ଡ (ମଧପ୍ରଦେଶ) । ଏତଦ୍ୱାରା ଓଡ଼ିଆ ଭାଷାଭାଷୀ ଅଞ୍ଚଳ ସମ୍ବଲପୁର ଦୀର୍ଘଦିନ ଧରି ମଧ ଖଣ୍ଡ (ମଧପ୍ରଦେଶ) ଶାସନାଧୀନ ହେବାରୁ ସମ୍ବଲପୁରରେ ହିନ୍ଦୀ ଭାଷାଭାଷୀ ଲୋକଙ୍କର ପ୍ରାବଲ୍ୟ ପରିଲକ୍ଷିତ ହେଲା । ସାର୍ ଉଡ୍‌ବର୍ଣ୍ଣ ସାହେବ ୧୮୯୫ ମସିହା ପୂର୍ବରୁ ମଧପ୍ରଦେଶ (Central Province)ର ମୁଖ୍ୟ କମିଶନ୍‌ର (Chief Commissioner) ଥିଲେ । ପରବର୍ତ୍ତୀ କାଳରେ ସେ ହୋଇଥିଲେ ଓଡ଼ିଶାର ମୁଖ୍ୟ ପ୍ରଶାସକ । ସେ ହିଁ ତାଙ୍କ ଶାସନକାଳ ୧୮୯୫ ମସିହାରେ ସମ୍ବଲପୁର ଜିଲ୍ଲାରୁ ଓଡ଼ିଆ ଭାଷା ଉଠାଇ ତା' ପରିବର୍ତ୍ତେ ହିନ୍ଦୀ ଭାଷା ପ୍ରବର୍ତ୍ତନ କରିବା ପାଇଁ ଆଦେଶ ଦେଇଥିଲେ । ଏହାଥିଲା ଘୋର ଦୁଃଖ ତଥା ପରିତାପର କଥା । ସେତିକିରେ କଥା ସରି ନଥିଲା । ଉଡ୍‌ବର୍ଣ୍ଣ ସାହେବ ଅଧିକନ୍ତୁ ଆଦେଶ କରିଥିଲେ ଯେ ସମ୍ବଲପୁର ଜିଲ୍ଲାର କୋର୍ଟ-କଚେରୀରେ ଓଡ଼ିଆଭାଷା ବଦଳରେ ହିନ୍ଦୀଭାଷା ପ୍ରଚଳିତ ହେବ । ପୋଲିସ୍‌ମାନେ ବାଧତାମୂଳକ ଭାବେ ହିନ୍ଦୀ ଭାଷା ଶିଖିବେ । ହିନ୍ଦୀ ଭାଷା ଶିଖାଇବା ପାଇଁ ହିନ୍ଦୀ ଶିକ୍ଷକ ନିଯୁକ୍ତ ହେବେ ଓ ହିନ୍ଦୀ ଭାଷାରେ ସଫଳତା ହାସଲ କରୁଥିବା ବ୍ୟକ୍ତିଙ୍କୁ ପୁରସ୍କୃତ କରାଯିବ । ପୁରସ୍କାର ଧନରାଶି ସରକାରୀ ତହବିଲ୍‌ରୁ ବ୍ୟୟ କରାଯିବ । ଏପରି ଆଦେଶ କରିଥିବା ପ୍ରଶାସକ ଓଡ଼ିଆ ଭାଷାକୁ ହାତରେ ନମାରି ଭାତରେ ହିଁ ମାରି ଥିଲେ ବୋଲି କହିବାକୁ ହେବ । ତେଣୁ ଯଥାର୍ଥରେ ଫକୀରମୋହନ ଲେଖିଥିଲେ - 'ଓଡ଼ିଆ ଭାଷାର ହାଣି ଦେଇଛନ୍ତି ହାତ ।'

ଜନ୍ ଉଡ୍‌ବର୍ଣ୍ଣଙ୍କ ପ୍ରୋକ୍ତ ଆଦେଶ ବିରୋଧରେ ତତ୍କାଳୀନ ଓଡ଼ିଶାର ସର୍ବତ୍ର ଆନ୍ଦୋଳନ ଚେଇଁ ଉଠିଲା । ଏଇ ଦୁର୍ଭାଗ୍ୟଜନକ ଆଦେଶକୁ ମଧ ସମ୍ବଲପୁରର ତତ୍କାଳୀନ ଡେପୁଟୀ କମିଶନର୍ ମିଷ୍ଟର ଚେପ୍‌ମେନ୍ ଗ୍ରହଣ କରିପାରିନଥିଲେ । ଏଇ ସରକାରୀ ନିଷ୍ପତ୍ତି ବିରୋଧରେ 'ସମ୍ବଲପୁର ହିତୈଷିଣୀ' ଓ 'ଉତ୍କଳ ଦୀପିକା' ଆଦି ପତ୍ରପତ୍ରିକା ତୀବ୍ର ପ୍ରତିବାଦର ସ୍ୱର ଉଠାଇଥିଲେ । ସମ୍ବଲପୁରବାସୀ ଏହାକୁ ବିଧିବଦ୍ଧ ଚକ୍ରାନ୍ତ ବୋଲି ଅଭିହିତ କରିଥିଲେ । କବି ଗଙ୍ଗାଧର ମେହେର ଏଇ ଘଟଣାକୁ ନେଇ ଲେଖିଲେ ତାଙ୍କର କବିତା - 'ଭାରତୀରୋଦନ' (ଅକ୍ଟୋବର ୩, ୧୮୯୪ରେ ପ୍ରକାଶିତ) । କବି ଗଙ୍ଗାଧରଙ୍କ ଦୁଃଖ-କ୍ଷୋଭରେ ଯେପରି ସାରା ସମ୍ବଲପୁରବାସୀଙ୍କ ମନର କଥା ପ୍ରତିଫଳିତ ହୋଇଥିଲା । ତହିଁରୁ ଏକ ଝଲକ ନିମ୍ନରେ ପ୍ରଦତ୍ତ । ଯଥା-

'ହିନ୍ଦୀ ସରସ୍ୱତୀ ମୋ' ଛାତିରେ ବସି
କରିବ ପରା ରାଜତ୍ୱ
ମୋ' ଆଶା କାନନ ଭସ୍ମରାଶି ହେବ
ତା' ନବ ଉଦ୍ୟାନେ ଖତ ।'

ପ୍ରୋକ୍ତ ସରକାରୀ ବିଜ୍ଞପ୍ତିକୁ ବିରୋଧ କରି ତୀବ୍ର ପ୍ରତିକ୍ରିୟା ଓ ଆନ୍ଦୋଳନ କରାଗଲା, ଏହି ଆନ୍ଦୋଳନ ସଫଳ ହୋଇଥିଲା । ଫଳତଃ ସମ୍ବଲପୁରରେ ଓଡ଼ିଆଭାଷାର ମର୍ଯ୍ୟାଦା ରକ୍ଷା ପାଇ ଯାଇଥିଲା ଓ ୧୯୦୫ ମସିହାରେ ଓଡ଼ିଶା ସହ ସମ୍ବଲପୁର ଜିଲ୍ଲାର ମିଶ୍ରଣ ହୋଇଥିଲା । ସ୍ୱୀୟ ରଚନା 'ନନାଙ୍କ ପାଞ୍ଜି'ରେ ବ୍ୟାସକବି ଫକୀରମୋହନ, 'ଉତ୍କଳ ଦୀପିକା' ଓ 'ସମ୍ବଲପୁର ହିତୈଷିଣୀ' ପତ୍ରିକାର କାର୍ଯ୍ୟାବଳୀକୁ ପ୍ରଶଂସା କରି ଉଭୟକୁ ଚରଖିବାଣ ସହିତ ତୁଳନା କରି ସେ ଲେଖିଛନ୍ତି -

'ଘୂରୁଛନ୍ତି, ଚାରିଆଡ଼େ ଝୁଲ ବୁଣି ହୋଇ
ପଡୁଅଛି, ଘୂରା ବନ୍ଦ ହେଲେ କିନ୍ତୁ ଅନ୍ଧକାର ।'

ବ୍ୟାସକବି ଫକୀରମୋହନ ତତ୍କାଳୀନ ଓଡ଼ିଶାରେ ଚାଲୁଥିବା ଅନୀତି, କଦର୍ଯ୍ୟ କାର୍ଯ୍ୟ, ଶଠତା ଆଦିକୁ ପଦାରେ ପକାଇଛନ୍ତି ଏଇ କାବ୍ୟ ଜରିଆରେ । ଦୃଢ଼ କଣ୍ଠରେ ସେ ସବୁର ସମାଲୋଚନା କରିଛନ୍ତି, ତାଙ୍କର କଲମମୂନ ସଂସ୍କାରପ୍ରୟାସୀ ହୋଇଉଠିଛି । ପୁରୀ ପରି ତୀର୍ଥସ୍ଥାନମାନଙ୍କରେ ଘଟୁଥିବା ଅନୈତିକ କାର୍ଯ୍ୟ ଓ ପଣ୍ଡାମାନଙ୍କର ଅତ୍ୟାଚାରର ଚିତ୍ର ସହ ସ୍ୱୀକୀୟ ଅନୁଭୂତିର ପରଖ ରଖି କବି ଲେଖିନ୍ତି - 'କେରାଣ୍ଡିକୁ ଥଣ୍ଟେ ଆଣ୍ଟେ ଧରି ଯେହ୍ନେ ବକ' - ଯାତ୍ରୀଙ୍କୁ ପଣ୍ଡାମାନେ ସେହିପରି ଧରିଥାନ୍ତି । ଏଭଳି ଅତ୍ୟାଚାର ବିରୋଧରେ କବିଙ୍କର ମାନସିକ ପ୍ରତିକ୍ରିୟା ଭିତରେ ଅନୁଭବୀ ଅଗଣିତ ଜନତାର ପ୍ରତିକ୍ରିୟା ପ୍ରତିବିମ୍ବିତ ହୋଇଥିବାର ଅନୁଭବ କରାଯାଏ । ପୁରୀର ବିମଳା ମନ୍ଦିରର ଦର୍ଶନକାଳୀନ ଚିତ୍ର ଉପରେ ସେବକମାନଙ୍କର ଅତ୍ୟାଚାରର ରୂପରେଖ ସେ ସ୍ପଷ୍ଟ କରିଛନ୍ତି । ମୁକ୍ତିମଣ୍ଡପ ସଭାର ଭଣ୍ଡାମୀ ତଥା ଉତ୍କଳୀୟ ସଂସ୍କୃତିର ଅଧୋଗତି ସଂପର୍କରେ ତାଙ୍କର ବ୍ୟକ୍ତିଗତ ମତ ଭିତରେ ସବୁ ସଂସ୍କାରବାଦୀ ଯେପରି ସ୍ୱର ମିଳାଇଛନ୍ତି । ଯଥା-

'ଯେଉଁଠାରେ ହେଉଥିଲା ପଣ୍ଡିତଙ୍କ ମେଳା
ଏବେ ଦେଖ ସେ ସ୍ଥାନରେ ଠକ ଭେଳା ଭେଳା
ବିଦେଶୀ ପଣ୍ଡିତେ ଯହିଁ ହେଉଥିଲେ ରୁଣ୍ଡ
ଠକ ଜୁଆଚୋର ତହିଁ ମେଳିଛନ୍ତି ତୁଣ୍ଡ
କାହିଁଗଲା ବେଦପାଠ, କାହିଁ ଶାସ୍ତ୍ରାଳାପ
ଏବେ ତହିଁ ବିରାଜିତ ମୂର୍ତ୍ତିମନ୍ତ ପାପ ।
ପଣ୍ଡିତମାନଙ୍କ ଗାଦି ଖାଲିଅଛି ପଡ଼ି
ଯାବନ୍ତ ଶାସନଝଡ଼ା ପାତୁଛନ୍ତି ରଡ଼ି
ଦେଉଥିଲେ ଯାହା ମୁକ୍ତିମଣ୍ଡପ ବ୍ୟବସ୍ଥା
ଭାରତ ମଧ୍ୟରେ ହେଉ ନ ଥିଲା ଅନ୍ୟଥା ।
ହାୟ ସେ ପଣ୍ଡିତଗଣୁ ଜଣେ ମଧ୍ୟ ନାହିଁ ।
ମୁକତି ମଣ୍ଡପ କୁଳେ ବତୀ ଦେବା ପାଇଁ ... ।'

ଅତି ସରଳ ତରଳ ଭାଷାରେ ଅନ୍ୟତମ ତୀର୍ଥସ୍ଥାନ ଯାଜପୁର ଜିଲ୍ଲାର ବ୍ରାହ୍ମଣମାନଙ୍କ ଦୌରାତ୍ମ୍ୟକୁ ବର୍ଣ୍ଣନା କରି ସେ ଲେଖିଛନ୍ତି ଜଣେ ପ୍ରପୀଡ଼ିତ ଯାତ୍ରୀ ଭାବେ, ଯଥା-

'ରାମ ରାମ ରାମ ରାମ ପଢ଼ିଲିଣି ଥକି
ଘାଟିଆ ବାମୁଣଗଣ ସଙ୍ଗେ ବକି ବକି
ଆଉ ଭାଇ ଶୁଣିବାରେ ନାହିଁ ମୋର କାମ
ଚୌଦ ଚୌ ଛପନ ପୁରୁଷଙ୍କ ନାମଧାମ ।
ନିଅନନା ଟଙ୍କାଟିଏ କର ନାହିଁ ହୁରି ।
ଆପଣା ପୋଥିରେ ଦୟାକରି ଦିଅ ଡୋରି ।'

ଏହି ଫକୀରମୋହନ 'ଧୂଳିଆବାବା' ଗଳ୍ପରେ ସାଧୁଙ୍କର ଚିତା ଚଇତନ ତଳେ ଥିବା କଦର୍ଯ୍ୟ ରୂପକୁ ଖୋଲି ଦେଇଛନ୍ତି କଥାକାର ଭାବେ । କବିଭାବେ ଏହି କାବ୍ୟ 'ଉତ୍କଳ ଭ୍ରମଣଂ'ରେ ସେ ମଠମହନ୍ତଙ୍କର ସଇତାନ ପ୍ରକୃତି ପ୍ରତି ଅଙ୍ଗୁଳି ନିର୍ଦ୍ଦେଶ କରିବାକୁ ଆଦୌ ପଛାଇ ଯାଇ ନାହାନ୍ତି । ମହନ୍ତ ରଘୁନନ୍ଦନ ଓ ହୟଗ୍ରୀବ ଦାସଙ୍କର ହୀନ ପ୍ରକୃତି ବର୍ଣ୍ଣନାରେ କବିଙ୍କର ସୁରୁଚି ଓ ସୁନୀତି-ପ୍ରୀତି ସ୍ପଷ୍ଟତର ହୋଇଛି । ତାଙ୍କର ପ୍ରୋକ୍ତ ଭଣ୍ଡମାନଙ୍କ ପ୍ରତି ବୌଦ୍ଧିକ ଚାବୁକ୍ ପ୍ରହାର ଓ ମନ୍ତବ୍ୟ ଥିଲା -

'ଭାରି ପାଜି ଶୟତାନ ବଡ଼ ବଦମାସ ।'

ଅଧା ପାଠୁଆଙ୍କର ଅନ୍ଧାନୁସରଣକୁ ସମାଲୋଚନା କରିଛନ୍ତି କବି । ତା'ଛଡ଼ା ସେ ସମୟର ପାଠୁଆ ବାବୁ (Learned Baboo)ମାନଙ୍କର 'ଛେନାବରା' ଫିଙ୍ଗି 'ବିସ୍କୁଟ୍' ଖାଇବାଟାକୁ ସେ ଆଦୌ ସହି ପାରିନାହାନ୍ତି । ମୂଲ୍ୟବୋଧହାନି ଓ ପୁଷ୍ଟିହୀନତା ପ୍ରତି ଅଙ୍ଗୁଳି ନିର୍ଦ୍ଦେଶ କରି ସେ ଲେଖିଛନ୍ତି -

'ନିର୍ଦ୍ଧୁମ ଖରାରେ ପିନ୍ଧି ବନାତର କୋଟ୍
ଫିଙ୍ଗି ଦେଇ ଛେନାବରା ଖାଇଲ ବିସ୍କୁଟ୍ ।'

ଯେଉଁ ପ୍ରକାର ଆଚରଣ ବିଚରଣ କବିଙ୍କୁ ଭଲ ଲାଗି ନାହିଁ, ଯାହା ଦେଶ-ଜାତି-ସଂସ୍କୃତିର ପରିପନ୍ଥୀ ବୋଲି କବି ବିଚାର କରିଛନ୍ତି, ସେସବୁର କଡ଼ା ସମାଲୋଚନା କରି ତା'ର ନିରାକରଣ ପାଇଁ ବ୍ୟାକୁଳତା ପ୍ରକାଶ କରିଛନ୍ତି ।

କବିସୂର୍ଯ୍ୟ ବଳଦେବ ରଥଙ୍କର 'ଜଗତେ କେବଳ ଜନେ ହସିବେ' କବିତା ପରି ବ୍ୟାସକବି ତାଙ୍କର 'ଉତ୍କଳ ଭ୍ରମଣଂ' କାବ୍ୟରେ 'Waist Coat' ପିନ୍ଧା ବାବୁମାନଙ୍କୁ ପ୍ରତି ପଦଟିଏ କହିଛନ୍ତି । ମୟୂର ଲାଞ୍ଜକୁ ଗୁଞ୍ଜି କାଉ ମୟୂର ହୋଇ ନପାରେ । ସେହିପରି Waist Coat ପିନ୍ଧି ଇଂରେଜୀ କହିବାକୁ ଚେଷ୍ଟା କରୁଥିବା ଅପଗଣ୍ଡ ବାବୁ ଜଣକ ହେଲେ ମୟୂରପୁଚ୍ଛ ଗୁଞ୍ଜା କାଉ, ତୁଚ୍ଛା ବାୟସଗୁଡ଼ା ହେ ... ।

ଓଡ଼ିଶାର ଶିଳ୍ପକଳା, ସୁନ୍ଦର ପ୍ରକୃତି, ଦେବପୀଠ ଫକୀରମୋହନଙ୍କର କାବ୍ୟ 'ଉତ୍କଳ ଭ୍ରମଣଂ'ରେ ସ୍ଥାନିତ ହୋଇଛି । କଟକ ନଗରର ବିଶେଷତ୍ୱ, ଝିଙ୍ଗାରପୁରର ଶାସ୍ତ୍ରୀୟ ସଂଗୀତ, କପିଳାସର ଶିବ ମନ୍ଦିର, ଡୋମପଡ଼ାର ସାହିତ୍ୟ ଚର୍ଚ୍ଚା, କଣ୍ଟିଲୋର କଂସାବାସନ, ଦଶପଲ୍ଲାର ବସ୍ତ୍ର, ବ୍ରହ୍ମପୁରର ପାଟ, ଆଠଗଡ଼ ରାଜାଙ୍କର ବଦାନ୍ୟତା, ଢେଙ୍କାନାଳ ରାଣୀଙ୍କର ସ୍ନେହଶ୍ରଦ୍ଧା, ରାଜା ସୁଡ଼ଳ

ଦେବଙ୍କର ସାହିତ୍ୟ ପ୍ରୀତି, ପୁରୀକ୍ଷେତ୍ରର ମହାନତା, ଜାତିଭେଦ ଶୂନ୍ୟତା, ସତ୍ୟବାଦୀର ଆଦର୍ଶ ବନ ବିଦ୍ୟାଳୟ, ଖଲ୍ଲିକୋଟ ରାଣୀଙ୍କର ସାହିତ୍ୟାନୁରାଗ, ଚିକିଟି ରାଜାଙ୍କର ଦେଶପ୍ରୀତି, ପାରଳାଖେମୁଣ୍ଡି ରାଜାଙ୍କର ସାହିତ୍ୟ-ସଂସ୍କୃତି-ପ୍ରୀତି, ସମ୍ବଲପୁରର ଗୁରୁତ୍ୱପୂର୍ଣ୍ଣ ପ୍ରସଙ୍ଗ ଆଦିକୁ ନେଇ 'ଉତ୍କଳ ଭ୍ରମଣଂ' କାବ୍ୟ ଏକ ଐତିହାସିକ ଦଲିଲ ପାଲଟି ଯାଇଅଛି । ଏଥିରୁ କବିଙ୍କର ଲୋକଚରିତ୍ର ଅଧ୍ୟୟନ ତଥା ପର୍ଯ୍ୟବେକ୍ଷଣରେ ଗଭୀର ମନୀଷାର ପରିଚୟ ମିଳେ । ପ୍ରତିଟି ପୃଷ୍ଠାରେ ରସବ୍ୟଞ୍ଜନ ଓ ବୌଦ୍ଧିକତାର ପ୍ରଲେପକୁ ନେଇ 'ଉତ୍କଳ ଭ୍ରମଣଂ' ହୋଇଉଠିଛି ଏକ ଉଚ୍ଚକୋଟୀର ସାହିତ୍ୟ ସୃଷ୍ଟି ।

ସୁସମାଲୋଚକ ସୁରେନ୍ଦ୍ର ମହାନ୍ତିଙ୍କ ମତରେ 'ଅପୂର୍ବ କୃତିତ୍ୱ, ଅନର୍ଗଳ ପ୍ରକାଶ ରୀତି, ସମାଜ ପ୍ରତି ଗଭୀର ଦାୟିତ୍ୱବୋଧ, ସଂସ୍କାର, ପ୍ରଗତଧର୍ମୀ ପ୍ରଚଣ୍ଡ ଦୃଷ୍ଟିଭଙ୍ଗୀ ଓ ଏକ ସହାନୁଭୂତିଶୀଳ ମାନସ 'ଉତ୍କଳ ଭ୍ରମଣଂ'କୁ ଓଡ଼ିଆ ସାହିତ୍ୟରେ ଏକ ଓ ଅଦ୍ୱିତୀୟ କରିଅଛି ।'

**ସାରାଂଶ**

ସାରାଂଶରେ ଏତିକି କୁହାଯାଇପାରେ ଯେ ସରଳଭାଷା, ସଂଯୋଜିତ ଚିନ୍ତାଧାରାରେ ଊନବିଂଶ ଶତାବ୍ଦୀର ସାରା ଓଡ଼ିଶାର ବ୍ୟକ୍ତି, ସ୍ଥାନ, ସାମାଜିକ-ରାଜନୈତିକ-ସାଂସ୍କୃତିକ-ଅର୍ଥନୀତିକ ସ୍ଥିତିର ପରିପ୍ରକାଶ କରି 'ଉତ୍କଳ ଭ୍ରମଣଂ' ମହାର୍ଘ୍ୟ ସାହିତ୍ୟ ହୋଇଛି ଓ ତା'ର ରଚୟିତା ବ୍ୟାସକବି ଫକୀରମୋହନ ଅମର ହୋଇ ରହିଛନ୍ତି । ତାଙ୍କର ସୁଦୀର୍ଘ ପ୍ରଶାସନିକ ଅଭିଜ୍ଞତାରୁ ସଂଗୃହୀତ ତଥ୍ୟ ସନ୍ନିବେଶିତ ହୋଇ ଏହା ଏକ ସାମାଜିକ ତଥା କାବ୍ୟିକ ଇତିହାସରେ ପରିଣତ ହୋଇପାରିଛି । ଯଥାର୍ଥରେ 'ଉତ୍କଳ ଭ୍ରମଣଂ' - ଏକ ସଫଳ ସୃଷ୍ଟି । ଅନବଦ୍ୟ ସାହିତ୍ୟ । ଏଥିରେ କବିଙ୍କର ଜୀବନଦର୍ଶନ, ସାଧୁପ୍ରୀତି, ଉଦାର ମାନବିକତା, ସ୍ୱଦେଶ ପ୍ରୀତି ଆଦି ପ୍ରକଟିତ ହୋଇଅଛି ।

ସହାୟକ ପୁସ୍ତକ :


୧. ଫକୀରମୋହନ ଗ୍ରନ୍ଥାବଳୀ - କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର୍, କଟକ, ୧୯୬୩ ।

୨. ଆତ୍ମଜୀବନ ଚରିତ - ଲେ: ଫକୀରମୋହନ ସେନାପତି, ଶ୍ରୀ ରାଧାମୋହନ କୋ-ଅପରେଟିଭ୍ ପ୍ରେସ୍, କଟକ, ୧୯୨୭ ।

୩. ଫକୀରମୋହନ ସମୀକ୍ଷା - ଲେ: ସୁରେନ୍ଦ୍ର ମହାନ୍ତି ।

୪. ବିଶ୍ୱସାହିତ୍ୟରେ ଫକୀରମୋହନ - ଲେ: ଡକ୍ଟର ନୃସିଂହ ଷଡଙ୍ଗୀ ।



ଟିଚର ଏଡୁକେଟର
ଡି.ଆଇ.ଇ.ଟି, ଟିକାବାଲି
କନ୍ଧମାଳ-୭୬୨୦୧୦


---

# ରତ୍ନଗର୍ଭା ଉତ୍କଳ ଜନନୀ

ବିକ୍ରମ କେଶରୀ ବର୍ମା

ରତ୍ନଗର୍ଭା ଆମ ଉତ୍କଳ ଜନନୀ
ଭୂଇଁ ତଳେ ତା'ର ଅଛି ଭରପୂର
ଖଣିଜ ସଂପଦ କେତେ କହିତ ହବନି ।
ଲୌହ ଅଭ୍ର ମାଙ୍ଗାନିଜ କ୍ରୋମ
ଆଉ ରତନ ପଥର
ତାଳଚେର ଅଟେ ପୁଣି ଆମ କୋଇଲା ଘର
ପାରାଦୀପ ବନ୍ଦର
ହୀରାକୁଦ ବନ୍ଧ ଅଟେ ସଂପଦ ଆମର ।
ନୀଳାମ୍ବୁ ଚିଲିକା ଅଟେ ମରାଳ ମାଳିନୀ
ଧନ୍ୟ ମୋ ଜନନୀ ଶତ ମନ୍ଦିର ଶୋଭିନୀ
ମହୋଦଧି ଧୋଉଅଛି ତାହାର ଚରଣ
ମୁକୁଟ ସ୍ୱରୂପ ମୋହେ ଗିରି ମେଘାସନ
ପ୍ରଭୁ ଜଗନ୍ନାଥ ତା'ର ଅଟନ୍ତି ଠାକୁର
ନଦୀ ନାମ ମହାନଦୀ ଶମସାନ ଅଟେ ସ୍ୱର୍ଗଦ୍ୱାର
ସାତକୋଶିଆ ଗଣ୍ଡର ଭୀମକାନ୍ତ ରୂପ
ଖଣ୍ଡାଧାର ପ୍ରପାତର ମନୋଲୋଭା ରୂପ
କୋଣାର୍କର କାରୁକାର୍ଯ୍ୟ ଜଗତ ବିଖ୍ୟାତ
ଧଉଳିର ଶାନ୍ତିସ୍ତୂପ ରତ୍ନଗିରି ବୌଦ୍ଧ ପୀଠ
ପ୍ରକୃତିର ଶୋଭା ଗନ୍ତାଘର ଅଟେ ଏ ଉତ୍କଳ
ତା କୋଳେ ଜନମ ଲଭି ଧନ୍ୟ ଜୀବନ ଆମର ।

ବିଧାୟକ, ମାହାଙ୍ଗା

▪▪▪▪▪▪▪



# ବ୍ୟବସ୍ଥାପକ ଭୂମିକାରେ ମଧୁବାବୁ

ଡକ୍ଟର ସୋମା ଚାନ୍ଦ

'ମାନ୍ୟବର ସଭ୍ୟ ମହୋଦୟ ନିଜର କାର୍ଯ୍ୟଦକ୍ଷତା, ବାକ୍‌ପଟୁତା ଆଦି ଗୁଣାବଳୀ ଦ୍ୱାରା ଏହି ବଙ୍ଗଳା କାଉନ୍‌ସିଲର କାଟୋ ରୂପେ ନିଜକୁ ପ୍ରତିଷ୍ଠିତ କରାଇବାରେ ସକ୍ଷମ ହୋଇପାରିଛନ୍ତି । ପ୍ରସିଦ୍ଧ ଦାର୍ଶନିକ 'କାଟୋ'ଙ୍କ ବିଷୟରେ ଯାହା କୁହାଯାଇଥାଏ ଆପଣମାନେ ନିଶ୍ଚୟ ସେ ବିଷୟରେ ଜାଣିଥିବେ । ଯେଉଁସବୁ ଉଦ୍ୟମର ପରିଣତି ସଫଳତାରେ ପର୍ଯ୍ୟବସିତ ହେବାର ସମ୍ଭାବନା ଥାଏ, ସେଇ ପ୍ରକାର ଉଦ୍ୟମ ଦେବତାମାନଙ୍କର ପ୍ରିୟଭାବ ଅର୍ଜନ କରିଥାଏ । କିନ୍ତୁ ନିଶ୍ଚିତ ବିଫଳତା ଯେଉଁ ସବୁ ଉଦ୍ୟମର ଶେଷ ପରିଣତି, ସେପରି ଉଦ୍ୟମ ପାଇଁ ଦାର୍ଶନିକ କାଟୋଙ୍କର ଅଧିକ ପ୍ରିୟ ପ୍ରୟାସ ଥିଲା ।'

ଉପରୋକ୍ତ ଭାଷାରେ ବଙ୍ଗଳାର ଲେଫ୍‌ଟନାଣ୍ଟ ଗଭର୍ଣ୍ଣର ମିଷ୍ଟର ବଉରଡିଲନ୍ ବଙ୍ଗଳା କାଉନ୍‌ସିଲ୍ କକ୍ଷରେ ମଧୁବାବୁଙ୍କ ବ୍ୟବସ୍ଥାପକ ଭୂମିକାକୁ ଅଭିନନ୍ଦିତ କରିଥିଲେ ।

ଗଭର୍ଣ୍ଣରଙ୍କ ଅଭିନନ୍ଦନ ବକ୍ତବ୍ୟଟି ବାସ୍ତବରେ ପ୍ରାସଙ୍ଗିକତାର ଦାବି ରଖେ । ଏକଥା ସତ ଯେ ବହୁ କ୍ଷେତ୍ରରେ ମଧୁବାବୁ ବିଫଳତା ହାସଲ କରିଥିଲେ । କିନ୍ତୁ ବିଫଳତା କଦାପି ତାଙ୍କୁ ପଥଭ୍ରଷ୍ଟ କରିପାରି ନଥିଲା । ଅଧିକନ୍ତୁ ତାଙ୍କ ବିଫଳତାରୁ ଜନ୍ମ ନେଇଥିଲା ଭବିଷ୍ୟତର ଉଜ୍ଜ୍ୱଳ ସଫଳ ସମ୍ଭାବନା । ଆଉ ଏହି କଥାଟି ତାଙ୍କର ବ୍ୟବସ୍ଥାପକ ଜୀବନରେ ବାରମ୍ବାର ପ୍ରମାଣିତ ହୋଇଛି ।

ମଧୁବାବୁ ଜୀବନର ଅଧିକାଂଶ ସମୟରେ ବ୍ୟବସ୍ଥାପକ ଭୂମିକାରେ ଅବତୀର୍ଣ୍ଣ ହୋଇଛନ୍ତି । ୧୮୯୬ ମସିହାରେ ସେ ପ୍ରଥମେ ବଙ୍ଗ ବ୍ୟବସ୍ଥାପକ ସଭାର ସଭ୍ୟ ହୋଇଥିଲେ । ଏହାପରେ ୧୮୯୬, ୧୮୯୭, ୧୯୦୦, ୧୯୦୧, ୧୯୦୨, ୧୯୦୮, ୧୯୦୯, ୧୯୧୦ ଓ ୧୯୧୧ - ଏହି ନଅ ବର୍ଷ ସେ ବଙ୍ଗ ବ୍ୟବସ୍ଥାପକ ସଭାରେ ରହିଥିଲେ । ସେତେବେଳେ ଏହି ବ୍ୟବସ୍ଥାପକ ସଭାର କ୍ଷମତା ଖୁବ୍ ସୀମିତ ଥିଲା । ଏହା ଏକପ୍ରକାରେ ସରକାରଙ୍କ ପରାମର୍ଶଦାତା ସଭା ପରି କାର୍ଯ୍ୟ କରୁଥିଲା । ସରକାରଙ୍କ ସଙ୍ଗେ ସହଯୋଗ କରି ସାମ୍ବିଧାନିକ ମାର୍ଗରେ ଜାତୀୟ କାର୍ଯ୍ୟ କରିବା ଥିଲା ମଧୁବାବୁଙ୍କ ନୀତି ।

ଏହି ଦୃଷ୍ଟିକୋଣରୁ ମଧୁବାବୁ ଜଣେ ନରମପନ୍ଥୀ ଭାବରେ ପରିଚିତ ଥିଲେ । ସାମ୍ବିଧାନିକ ମାର୍ଗ ଅନୁସରଣ କରି ସିଏ କାର୍ଯ୍ୟ ସମ୍ପାଦନ କରୁଥିଲେ ମଧ୍ୟ ତାଙ୍କର ସାମାଜିକ ଓ ଅର୍ଥନୈତିକ ଆଭିମୁଖ୍ୟ ଥିଲା ଆଶ୍ଚର୍ଯ୍ୟଜନକ ଭାବେ ପ୍ରଗତିଶୀଳ । ପୁରାତନପନ୍ଥୀମାନଙ୍କ ମଧ୍ୟରେ ସେ ଥିଲେ ସର୍ବଶ୍ରେଷ୍ଠ ପ୍ରଗତିବାଦୀ ।

ବଙ୍ଗ ବ୍ୟବସ୍ଥାପକ ସଭାର ସୀମିତ କର୍ମକ୍ଷେତ୍ର ଭିତରେ ମଧ୍ୟ ମଧୁବାବୁ ବଜେଟ୍ ଭାଷଣରେ ଶିକ୍ଷା ପାଇଁ ଅଧିକ ଅର୍ଥ ଦାବି କରିଥିଲେ । ଓଡ଼ିଆ ଆଇନ ଉପାଧିଧାରୀମାନେ ଯେପରି ମୁନସିଫ୍ ହେବାର ସୁଯୋଗ ପାଇବେ ସେଥିପାଇଁ ମଧ୍ୟ ସେ ସଭା ପ୍ରକୋଷ୍ଠରେ ସ୍ୱର ଉତ୍ତୋଳନ କରିଥିଲେ । ସରକାର ଅବଶ୍ୟ ସଭାର ମତାମତ ଗ୍ରହଣ କରିବାକୁ ବାଧ୍ୟ ନଥିଲେ କିମ୍ବା ବ୍ୟବସ୍ଥାପକ ସଭା ପାଖରେ ସରକାରଙ୍କର କୌଣସି ଦାୟିତ୍ୱ ନଥିଲା ।

ସାମ୍ବିଧାନିକ ମାର୍ଗ ଅନୁସରଣ କରିବାରେ ମଧୁବାବୁ ଅତିମାତ୍ରାରେ ଆଗ୍ରହୀ ଥିବାରୁ କେହି କେହି ତାଙ୍କୁ ରାଜାନୁରକ୍ତ ବୋଲି ଉପହାସ କରୁଥିଲେ, କିନ୍ତୁ ଦରକାର ପଡ଼ିଲେ ଏହି ରାଜାନୁରକ୍ତ ମଧ୍ୟ ରାଜବିରୋଧୀ ହୋଇ କଠୋର କଣ୍ଠରେ ସମାଲୋଚନା କରିବାକୁ ପଛାଉନଥିଲେ ।

ବଙ୍ଗ ବ୍ୟବସ୍ଥାପକ ସଭାରେ ଥରେ ବଜେଟ୍ ଉପରେ ଆଲୋଚନା ହେଉଥିବା ବେଳେ ଦେଶର ଶିଳ୍ପ ଅଧୋଗତି ସମ୍ବନ୍ଧରେ ମଧୁବାବୁ ଯେଉଁ ବଳିଷ୍ଠ ସମାଲୋଚନାର ଉପସ୍ଥାପନା କରିଥିଲେ ତାହା ତାଙ୍କ ବ୍ୟବସ୍ଥାପକ ଦୃଷ୍ଟିଭଙ୍ଗୀର ଆଭିମୁଖ୍ୟ ପ୍ରଦାନ କରେ । ତାଙ୍କ ବକ୍ତବ୍ୟର କିୟଦଂଶ ନିମ୍ନରେ ପ୍ରଦତ୍ତ ହେଲା ।

'ଅତୀତରେ ଏଇ ଦେଶରେ ଯେଉଁ ସବୁ ଶିଳ୍ପ ପ୍ରଚଳିତ ଥିଲା ସେସବୁ ଏବେ ଆଉ ଆଖିରେ ପଡୁନାହିଁ । ଅତୀତର ସେହି ଅବସ୍ଥାକୁ ବର୍ତ୍ତମାନର ଅବସ୍ଥା ସହ ମିଶାଇ ବିଚାର କଲେ ଯେକୌଣସି ଭାରତୀୟର ମନେହୁଏ ଯେ ଶିଳ୍ପକ୍ଷେତ୍ରରେ ଭାରତର ଉପସ୍ଥିତ ଅଧୋଗତି ପାଇଁ ଇଂରେଜ ଶାସନର କ୍ଷୟିଷ୍ଣୁ ପ୍ରଭାବ ହିଁ ମୁଖ୍ୟତଃ ଦାୟୀ । ଇଂରେଜ ଶାସନ ଯେ କିପରି ଓ କେତେବେଳେ ଅବା କେଉଁ

ପରିସ୍ଥିତିରେ ଏଇ ଦେଶର ଶିଳ୍ପକୁ ନଷ୍ଟ କରିଦେଲା ସେ ବିଷୟରେ ବିଶେଷ କିଛି ମୁଁ ଏଠାରେ କହିବାକୁ ଚାହୁଁନାହିଁ କାରଣ ତାହା କରିବାକୁ ହେଲେ ସେମାନଙ୍କ ମଧ୍ୟରୁ ଅନେକଙ୍କୁ ମୋତେ ବାଧ ହୋଇ କବର ଗାତରୁ ଖୋଳି ପଦାରେ ପକାଇବାକୁ ହେବ । କିନ୍ତୁ ଆପଣମାନେ ଏତିକି ଜାଣି ରଖିଲେ ଯଥେଷ୍ଟ ହେବ ଯେ କବରଗାତର ସେସବୁ ମଲାହାଡ଼ର କରାମତି ବହୁତ । ଜୀଅନ୍ତା ମଣିଷକୁ ସେମାନେ ଅକ୍ଳେଶରେ ମଲାମଡ଼ାରେ ପରିଣତ କରି ଦେଇପାରିବେ ।'

ଏଇ ସ୍ୱର କ'ଣ ଜଣେ ବ୍ୟକ୍ତିର ନା ଉତ୍କଳର ଅନ୍ତରାତ୍ମା ମଧୁବାବୁଙ୍କର ! ବ୍ୟବସ୍ଥାପକ ପଣିଆ ଭିତରେ ସେ ଭୁଲିନାହାନ୍ତି ନିଜର ପ୍ରାଥମିକ ମୌଳିକ କର୍ତ୍ତବ୍ୟ ।

ବ୍ୟବସ୍ଥାପକ ଜୀବନର ପ୍ରଥମ ଭାଗରେ ଅର୍ଥାତ୍ ୧୮୯୬ ମସିହାରୁ ୧୯୧୧ ମସିହା ଭିତରେ ସେ ବଙ୍ଗ ବ୍ୟବସ୍ଥାପକ ସଭାରେ ବହୁ ପ୍ରସଙ୍ଗରେ ସରକାରଙ୍କ ଦୃଷ୍ଟି ଆକର୍ଷଣ କରିଥିଲେ । ତନ୍ମଧ୍ୟରୁ ଓଡ଼ିଶାର ଲୁଣ ବିଭାଗକୁ ମାନ୍ଦ୍ରାଜରୁ ବଙ୍ଗଳାକୁ ସ୍ଥାନାନ୍ତରୀକରଣ ଓଡ଼ିଶାରେ କୃଷି କଲେଜ ସ୍ଥାପନ ପାଇଁ ଯୁକ୍ତି କରିବା ଓ ବଙ୍ଗ ସରକାରୀ ବିଭାଗରେ ଓଡ଼ିଆମାନଙ୍କ ଅବହେଳିତ ଅବସ୍ଥା ଉପରେ ଆଲୋକପାତ ଆଦି ପ୍ରଧାନ । ତାଙ୍କର ସମସାମୟିକ ପ୍ରମୁଖ ସଭ୍ୟ ଶ୍ରୀ ସୁରେନ୍ଦ୍ର ନାଥ ବାନାର୍ଜୀ, ସାର୍ ଆଶୁତୋଷ ମୁଖାର୍ଜୀ ମଧୁବାବୁଙ୍କ ବ୍ୟବସ୍ଥାପକ ଭୂମିକାର ଉଚ୍ଚ ପ୍ରଶଂସକ ଥିଲେ ।

୧୯୧୨ ମସିହାରେ ବଙ୍ଗଠାରୁ ଅଲଗା ହୋଇ ବିହାର-ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହୋଇଗଲା । ତେଣୁ ମଧୁବାବୁ ବଙ୍ଗ ବ୍ୟବସ୍ଥାପକ ସଭାର ସଭ୍ୟପଦ ଛାଡ଼ି ଦେଇଥିଲେ । ଏହାପରେ ବିହାର-ଓଡ଼ିଶା ବ୍ୟବସ୍ଥାପକ ସଭାରେ ୧୯୧୩ରୁ ୧୯୧୮ ମସିହା ପର୍ଯ୍ୟନ୍ତ ଏବଂ ୧୯୨୧ରୁ ୧୯୨୩ ମସିହା ପର୍ଯ୍ୟନ୍ତ ନଅ ବର୍ଷ ସେ ସଭ୍ୟ ରହିଥିଲେ । ଆଉ ଏଇ ସମୟରେ ଘଟିଥିଲା ତାଙ୍କ ବ୍ୟବସ୍ଥାପକ ଜୀବନର ଅନେକଗୁଡ଼ିଏ ଉଲ୍ଲେଖନୀୟ ଘଟଣା ।

୧୯୧୩ ମସିହାରେ ବିହାର-ଓଡ଼ିଶା ବ୍ୟବସ୍ଥାପକ ସଭା ତରଫରୁ ସେ ଇମ୍ପେରିଆଲ ଲେଜିସ୍‌ଲେଟିଭ୍ କାଉନ୍‌ସିଲକୁ ସଭ୍ୟ ହୋଇ ଯାଇଥିଲେ । ୧୯୨୧ ମସିହାରେ ସେ ପ୍ରଥମ ଓଡ଼ିଆ ମନ୍ତ୍ରୀ ହେବାର ସୌଭାଗ୍ୟ ଅର୍ଜନ କରିଥିଲେ । ସେତେବେଳକୁ ତାଙ୍କର ବୟସ ହୋଇଥିଲା ତେସ୍ତରୀ । ଏହାର ମାତ୍ର ଦୁଇ ବର୍ଷ ପରେ ଅର୍ଥାତ୍ ୧୯୨୩ ମସିହାରେ ଗୋଟିଏ ନୀତିଗତ ପ୍ରଶ୍ନ ଉପରେ ସେ ମନ୍ତ୍ରିତ୍ୱରୁ ବିଦାୟ ନେବାକୁ ମଧ୍ୟ କୁଣ୍ଠାବୋଧ କରିନଥିଲେ । ଆଉ ଏଇଥିରେ ହିଁ ଥିଲା ତାଙ୍କ ବ୍ୟବସ୍ଥାପକ ଜୀବନର ବଳିଷ୍ଠ ଭୂମିକା ।

ବିହାର ସହିତ ଓଡ଼ିଶା ମିଶି ରହିଥିଲେ ମଧ୍ୟ ଓଡ଼ିଶା ବିଷୟରେ ସବୁ ସ୍ୱତନ୍ତ୍ର ଭାବରେ ବିଚାର କରିବାର ଆବଶ୍ୟକତା ସେ ସବୁବେଳେ ଉପଲବ୍ଧି କରୁଥିଲେ । ସେଥିପାଇଁ ଓଡ଼ିଶାର ବହୁବିଧ ସମସ୍ୟା ବିଷୟ ସେ କାଉନ୍‌ସିଲରେ ଉତ୍‌ଥାପନ କରି ସେସବୁର ପ୍ରତିକାର ଲୋଡୁଥିଲେ ।

ବ୍ୟବସ୍ଥାପକ ସଭାରେ ମଧୁସୂଦନଙ୍କର ଅନ୍ୟ ଏକ ନାମ ଥିଲା ସାପୁଆ-କେଳା । ସରକାରୀ କଳର ତୀବ୍ର ସମାଲୋଚକ ଥିଲେ ମଧ୍ୟ କେଳା ଯେପରି ସାପକୁ ବଶ କରେ ସେହିପରି ସରକାରଙ୍କୁ ମଙ୍ଗେଇ ନିଜ ମତକୁ ଆଣିପାରୁଥିବାରୁ ତାଙ୍କୁ ସମସାମୟିକମାନେ ସାପୁଆ-କେଳା ନାଁରେ ଅଭିହିତ କରିଥିଲେ । ପ୍ରାଦେଶିକ ବ୍ୟବସ୍ଥାପକ ସଭାରେ ସିଏ ଯେପରି ସକ୍ରିୟ ଅଂଶଗ୍ରହଣ କରୁଥିଲେ, କେନ୍ଦ୍ର ବ୍ୟବସ୍ଥାପକ ସଭାରେ ମଧ୍ୟ ତାହାଠାରୁ ଅଧିକ ପ୍ରଭାବଶାଳୀ ଓ ପାରଦର୍ଶୀ ବ୍ୟବସ୍ଥାପକ ରୂପେ ନିଜକୁ ପ୍ରତିଷ୍ଠିତ କରିଥିଲେ ।

ବିହାର-ଓଡ଼ିଶା ବ୍ୟବସ୍ଥାପକ ସଭାରେ ମଧୁବାବୁ ନିଜର ବ୍ୟବସ୍ଥାପକ ଭୂମିକା ସକ୍ରିୟ ରଖିଥିଲେ । ଏଇ ଦେଶରେ ଯେତେବେଳେ ପବ୍ଲିକ ସେକ୍ଟର ବା ଜାତୀୟକରଣର ନାଁ ଗନ୍ଧ ଶୁଣିବାକୁ ମିଳୁ ନଥିଲା ସେତେବେଳେ ମଧୁବାବୁ ଦେଶର ରେଳପଥଗୁଡ଼ିକ ଜାତୀୟକରଣ କରିବା ଲାଗି ପ୍ରସ୍ତାବ ଦେଇ ସଭା ପ୍ରକୋଷ୍ଠରେ କହିଥିଲେ -

'ବ୍ୟବସାୟିକ ବୁଦ୍ଧିର ବିଚାର ଛାଡ଼ି ସରକାର ଦେଶର ମହତ୍ତର ଉପକାରକୁ ଲକ୍ଷ୍ୟ ରୂପେ ଗ୍ରହଣ କରି ରେଳ ଚଳାଚଳ ବ୍ୟବସ୍ଥା କରିବା ଉଚିତ କାରଣ ବ୍ୟବସାୟ ବୁଦ୍ଧିରେ ପରିଚାଳିତ ହୋଇ ଓ ଦେଶର ବୃହତ୍ତର ସ୍ୱାର୍ଥ ପ୍ରତି ଦୃଷ୍ଟି ନଦେଇ କାର୍ଯ୍ୟ କରିବା ପରିଣାମରେ ଇଷ୍ଟଇଣ୍ଡିଆ କମ୍ପାନୀ ସରକାରର କାର୍ଯ୍ୟାବଳୀ ଏ ଦେଶର ଯେଉଁ କ୍ଷତି ସାଧନ କରିଅଛି ସେ ବିଷୟରେ ଆପଣମାନେ ସମ୍ପୂର୍ଣ୍ଣ ଅବଗତ ଅଟନ୍ତି ।'

ମଧୁବାବୁ ବଙ୍ଗ ବ୍ୟବସ୍ଥାପକ ସଭାରେ ସଭ୍ୟ ଥିବାବେଳେ ୧୯୧୧ ମସିହାରେ ଓଡ଼ିଶା ପ୍ରଜାସତ୍ତ୍ୱ ଆଇନ ବିଲ୍ ଆସିଥିଲା । ଏହା ପୂର୍ବରୁ ମଧୁବାବୁ ଓଡ଼ିଶାର ଗାଁ ଗାଁରେ ପ୍ରଜା ପ୍ରତିନିଧି ସଭା ନାମରେ ଗୋଟିଏ ଗୋଟିଏ ଅନୁଷ୍ଠାନ ଗଢ଼ିଥିଲେ । ସେ ବୁଝିଥିଲେ ଯେ କୃଷକର ଜମିରେ ଅଧିକାର ନ ଆସିବା ଯାଏ ଜମିର ଉନ୍ନତି ବା ପ୍ରଜାର ଆର୍ଥିକ ଅବସ୍ଥାରେ ପରିବର୍ତ୍ତନ ସମ୍ଭବ ନୁହେଁ । ସେଇ ସମୟର ପରିସ୍ଥିତିକୁ ବିଚାର କରି ମଧୁବାବୁ ବୁଝିଥିଲେ ଯେ ଶତକଡ଼ା ପଚିଶ ଟଙ୍କା ଜମିଦାର ନିଅନ୍ତୁ ପଛକେ ଜମିରେ ପ୍ରଜାମାନଙ୍କର ସ୍ଥାୟୀ ସତ୍ତ୍ୱ ରହୁ । ଜମିଦାରର ଅନୁମତି ପୂର୍ବରୁ ଗ୍ରହଣ ନକରି ପ୍ରଜା ଜମି ହସ୍ତାନ୍ତର କରିପାରୁ । ଜମିଦାର ତାକୁ ଜମିରୁ ବେଦଖଲ କରିନପାରୁ । ଏଇ ପରିସ୍ଥିତି ମଧ୍ୟରେ ସେ ପ୍ରଜାସତ୍ତ୍ୱ ଆଇନର ସଂଶୋଧନ ଓ ଜମିଦାରୀ ପ୍ରଥାର ଉଚ୍ଛେଦ ସମ୍ପର୍କରେ ଯେଉଁ ଦାବିର ସ୍ମାରକପତ୍ର ଉପସ୍ଥାପନ କରିଥିଲେ ତାହା ଭବିଷ୍ୟତରେ ଜମିଦାରୀ ଉଚ୍ଛେଦ ସମ୍ପର୍କରେ ଥିଲା ଅତି ମୂଲ୍ୟବାନ ଦଲିଲ ସ୍ୱରୂପ । ଜଣେ ବ୍ୟବସ୍ଥାପକ ଭାବେ ତାଙ୍କର ଏଇ ଦାନ ଥିଲା ବାସ୍ତବରେ ଅତୁଳନୀୟ ।

ମଧୁବାବୁଙ୍କ ଏହି ଚିନ୍ତାଧାରା ପରବର୍ତ୍ତୀ ସମୟରେ ଭାରତର ଅନ୍ୟତ୍ର କାର୍ଯ୍ୟକାରୀ ହୋଇଛି । ଚାଷୀକୁଳ ଉପକୃତ ହୋଇଛନ୍ତି । ବାସ୍ତବିକ ଏହା ଥିଲା ପ୍ରକୃତ ଚାଷୀ ବା ରୟତମାନଙ୍କ ସ୍ୱାଧୀନତାର ଏକ ମୌଳିକ ଦସ୍ତାବିଜ ।

୧୯୨୧ ମସିହାରେ ମଧୁସୂଦନ ମନ୍ତ୍ରୀ ହୋଇଥିଲେ । ସେତେବେଳେ ଭାରତବର୍ଷରେ ଚାଲିଥାଏ ଜାତୀୟତାର ବହମାନ ସ୍ରୋତ ଅସହଯୋଗ ଆନ୍ଦୋଳନ ମାଧ୍ୟମରେ । ମଧୁବାବୁ ନିଜେ ଅସହଯୋଗର ସମର୍ଥକ ନଥିବାରୁ ମନ୍ତ୍ରିତ୍ୱ ଗ୍ରହଣ କରିଥିଲେ । ତେଣୁ ତାଙ୍କୁ ସାମ୍ନା କରିବାକୁ ପଡ଼ିଥିଲା ବିଭିନ୍ନ ଅପପ୍ରଚାରଯୁକ୍ତ ସମାଲୋଚନା । ଏପରିକି ତାଙ୍କ ନାମରେ ବେନାମି ଛାପା ପ୍ରଚାରପତ୍ର ବଣ୍ଟନ କରାଯାଇଥିଲା । ସେଥିରୁ ଦୁଇ ତିନୋଟିର ଉଦ୍ଧୃତି ଦିଆଗଲା -

'- ଅଶି ବରଷରେ ମଧୁବାବୁ ଚାକିରିଆ - ସ୍ୱପ୍ନ କି ସତ୍ୟ ?

- ପାଇବେ ବର୍ଷରେ ଷାଠିଏ ହଜାର - କାହାଠାରୁ ? ଆମରି ଅନ୍ନକଷ୍ଟିଆ ପୁରୀଆ ଭାଇ, ଧୋଇଆ କଟକୀ, ସମ୍ବଲପୁରୀଆ ଜରୁଆ, ବାଲେଶ୍ୱରିଆ ଭାଇ । ଆମରି ଟିକସରେ ସରକାରଙ୍କର ତ ପାଣ୍ଠି ।'

ଏହି ପ୍ରଚାରପତ୍ରମାନଙ୍କରେ ତାଙ୍କର ମନ୍ତ୍ରିତ୍ୱ ଗ୍ରହଣ କାର୍ଯ୍ୟକୁ ନାପସନ୍ଦ କରାଯାଇ ଇସ୍ତଫା ଦାବି କରାଯାଇଥିଲା । ଦେଶର ଘଡ଼ିସନ୍ଧି ମୁହୂର୍ତ୍ତରେ ମନ୍ତ୍ରିତ୍ୱ ଗ୍ରହଣ କରିବା ଦ୍ୱାରା ସରକାରଙ୍କ ଦମନ ନୀତିକୁ ସମର୍ଥନ କରିବାକୁ ବାଧ ହୋଇ ସେଥିରେ ଅଂଶୀଦାର ହେବାକୁ ପଡ଼ିବ - ଏହି କଥା ମଧୁବାବୁଙ୍କ ଅନେକ ହିତାକାଂକ୍ଷୀ ବନ୍ଧୁ ମଧ ଚାହୁଁନଥିଲେ । ତେବେ ଚିର ଅବହେଳିତ ଓଡ଼ିଶାରୁ ଜଣେ ମନ୍ତ୍ରୀ ହେବ - ଏହା ମଧ କେହି କେବେ କଳ୍ପନା କରିନଥିଲେ । ଅନ୍ୟପକ୍ଷରେ ସେତେବେଳର ଓଡ଼ିଆଙ୍କ ଅଧୋଗତି ଓ ଶାସନ କ୍ଷେତ୍ରରେ ଅସହାୟ ଅବସ୍ଥା ଦୃଷ୍ଟିରୁ ବହୁ ଓଡ଼ିଆ ଭାବୁଥିଲେ ଯେ ଜଣେ ଓଡ଼ିଆ ମନ୍ତ୍ରୀ ରୂପେ ନିଯୁକ୍ତ ହେବା ଦ୍ୱାରା ଜାତିର ଅସ୍ତିତ୍ୱକୁ ସ୍ୱୀକୃତି ଦିଆଗଲା ବୋଲି ଧରିବାକୁ ହେବ । ଏହାଛଡ଼ା ଓଡ଼ିଆଙ୍କ ଭିତରେ ମନ୍ତ୍ରୀ ହେବାର ଯୋଗ୍ୟବ୍ୟକ୍ତିର ଅଭାବ ବୋଲି ଯେଉଁ ଧାରଣା ଥିଲା ତାହା ମଧ ଏତେ ଦିନକେ ଦୂର ହୋଇଥିଲା ।

ମନ୍ତ୍ରୀ ଥିବା ବେଳେ ମଧ ମଧୁବାବୁ ନିଜର ବ୍ୟବସ୍ଥାପକ ଭୂମିକାକୁ ସକ୍ରିୟ ଭାବେ ପାଳନ କରିବାକୁ ପଛେଇ ନଥିଲେ । ସେହି ସମୟରେ ସେ ସ୍ୱାୟତ୍ତ ଶାସନ ଆଇନରେ ସଂଶୋଧନ ଆଣିବା ପାଇଁ ଯଥେଷ୍ଟ ଚେଷ୍ଟା କରିଥିଲେ । ସ୍ୱରାଜ୍ୟ ଶାସନ, ଆତ୍ମଶାସନ ଓ ଦାୟିତ୍ୱପୂର୍ଣ୍ଣ ଶାସନ ସମ୍ବନ୍ଧରେ ସେ ଲୋକଙ୍କୁ ସଚେତନ କରି ବ୍ୟବସ୍ଥାପକ ସଭାଗୃହରେ ସରକାରୀ କଳକୁ ଯେପରି ଭାବରେ ସମାଲୋଚନା କରିଥିଲେ ତାହା ସାରା ଭାରତରେ ଚହଳ ସୃଷ୍ଟି କରିଥିଲା । ତେବେ ମଧୁବାବୁଙ୍କ ପ୍ରତିଷ୍ଠା ଓ ଅଭିଜ୍ଞତା ଦୃଷ୍ଟିରୁ ତାଙ୍କର ଏହି ସମାଲୋଚନାର ପ୍ରଭାବ ସର୍ବତ୍ର ପ୍ରତିଫଳିତ ହୋଇଥିଲା । ବିଶେଷତଃ ସରକାରଙ୍କ ସମାଲୋଚକମାନେ ଓ ବିଧାନସଭାର ବିରୋଧୀଦଳର ସଭ୍ୟମାନେ ଏହାକୁ ଦୃଷ୍ଟାନ୍ତ ସ୍ୱରୂପ ଉଦ୍ଧୃତ କରି ଶାସନ ସଂସ୍କାରରେ ଦିଆଯାଇଥିବା ସ୍ୱାୟତ୍ତଶାସନ ପ୍ରକୃତରେ ସ୍ୱାୟତ୍ତ ନହୋଇ ଅନ୍ତଃସାର ଶୂନ୍ୟ ବୋଲି ଦର୍ଶାଇଥିଲେ ଓ ଜଣେ ମନ୍ତ୍ରୀଙ୍କ ଅନୁଭୂତିର ସ୍ୱୀକାରୋକ୍ତିକୁ ଅକାଟ୍ୟ ପ୍ରମାଣ ରୂପେ ଉପସ୍ଥାପିତ କରିଥିଲେ ।

ଏହି ସମୟର ଅନ୍ୟ ଏକ ଉଲ୍ଲେଖନୀୟ ଘଟଣା ହେଲା ମଧୁସୂଦନଙ୍କର ମନ୍ତ୍ରିତ୍ୱ ତ୍ୟାଗ । ଅବୈତନିକ ଭାବରେ ସେ ମନ୍ତ୍ରୀ ରହିବାକୁ ଚାହିଁବାରୁ ଶାସନ କଳ ସହିତ ତାଙ୍କର ମତାନ୍ତର ସୃଷ୍ଟି ହୋଇଥିଲା ଓ ସେ ୧୯୨୩ ମସିହା ମାର୍ଚ୍ଚ ଆଠ ତାରିଖରେ ମନ୍ତ୍ରୀପଦ ତ୍ୟାଗ କରିଥିଲେ । ମନ୍ତ୍ରୀମାନେ ଅବୈତନିକ ଭାବେ କାର୍ଯ୍ୟ କରିବା ଉଚିତ ବୋଲି ଯେଉଁ ନୀତି ସିଏ ବ୍ୟକ୍ତ କରିଥିଲେ, ନିଜେ ତାହା ପାଳନ କରି ଏକ ଆଦର୍ଶ ବ୍ୟବସ୍ଥାପକ ପରମ୍ପରା ରଖି ଯାଇଥିଲେ ।

ବ୍ୟବସ୍ଥାପକ ମଧୁବାବୁଙ୍କର ଅନ୍ୟ ଏକ ଲକ୍ଷଣୀୟ ଗୁଣ ମଧ ଥିଲା । ଅନ୍ୟମାନଙ୍କ ସହିତ ବ୍ୟବହାରରେ ମଧୁସୂଦନଙ୍କ ସ୍ୱଭାବ ବେଶ ଶାନ୍ତ, କୋମଳ ଓ ଭଦ୍ର ଥିଲେ ମଧ କ୍ଷମତାସୀନ ସରକାରୀ କର୍ମକର୍ତ୍ତାଗଣ ଯେତେବେଳେ ଖାମଖିଆଲି ଢଙ୍ଗରେ ହାମବଡ଼ା ନୀତିରେ ଓଡ଼ିଶା ପ୍ରତି ତାଚ୍ଛଲ୍ୟ ପ୍ରଦର୍ଶନ କରୁଥିଲେ, ସେତେବେଳେ ମଧୁବାବୁ ସେମାନଙ୍କର ଅନ୍ୟାୟ ଓ ଉପେକ୍ଷା ମନୋବୃତ୍ତିକୁ ଦୃଢ଼ ସମାଲୋଚନା କରୁଥିଲେ । ଇମ୍ପିରିଆଲ କାଉନ୍ସିଲରେ ଓଡ଼ିଶା ଓ ଓଡ଼ିଆଙ୍କ ପ୍ରତି ଅବହେଳାପୂର୍ଣ୍ଣ ଦୃଷ୍ଟିଭଙ୍ଗୀ ତାଙ୍କ ମନରେ ଭରି ଦେଇଥିଲା ଗଭୀର ହତାଶା । କିନ୍ତୁ ଯେତେବେଳେ ଯେକୌଣସି ବିଲ୍‌ରେ ଓଡ଼ିଶାର ସ୍ୱାର୍ଥ ବିରୋଧୀ ପଦକ୍ଷେପମାନ ଦେଖୁଥିଲେ, ସେତେବେଳେ ସେ ଏହାର ପ୍ରତିବାଦ କରିବାକୁ ଥିଲେ ଦୃଢ଼ ପରିକର ।

ଥରେ ଇମ୍ପିରିଆଲ କାଉନ୍ସିଲର କମର୍ସ ମେମ୍ବର ମିଷ୍ଟର କ୍ଲାର୍କ କାଉନ୍ସିଲରେ ଭାରତୀୟ କମ୍ପାନୀ ବିଲ୍ ଆଣିଲାବେଳେ ମଧୁବାବୁ ଏହା ଭିତରେ ଓଡ଼ିଶାର ସ୍ୱାର୍ଥ ବିରୋଧୀ କିଛି ବିଧିବ୍ୟବସ୍ଥା ଲକ୍ଷ୍ୟ କରିଥିଲେ । ସେଥିପାଇଁ ମଧୁବାବୁଙ୍କ ପ୍ରରୋଚନାରେ ଓଡ଼ିଆ ଏସୋସିଏସନ୍ କିଛି ବିରୁଦ୍ଧାତ୍ମକ ସ୍ୱର ଉଠାଇଥିଲା । ଏହାର ଉତ୍ତରରେ ମିଷ୍ଟର କ୍ଲାର୍କ ଓଡ଼ିଶାର ଅନୁନ୍ନତ ଅବସ୍ଥା, ଓଡ଼ିଆମାନଙ୍କର ଠକ ତଥା ବଦମାସ୍ ମନୋବୃତ୍ତିର ଉଦ୍ଧୃତି ଦେଇ ଓଡ଼ିଆ ଆସୋସିଏସନ୍‌ର ଦାବିକୁ ଏଡେଇ ଦେଇଥିଲେ ।

କ୍ଲାର୍କଙ୍କର ଏଇ ବ୍ୟଙ୍ଗବିଦ୍ରୂପ ଓ ନିନ୍ଦାଗାନକୁ ମଧୁବାବୁ ହଜମ କରିପାରିନଥିଲେ । ଏହି ଘଟଣାର କିଛିମାସ ପରେ ବିହାର ଓଡ଼ିଶା ପ୍ରଦେଶର ଶିକ୍ଷା ଓ ସ୍ୱାସ୍ଥ୍ୟ ବିଭାଗର ଖର୍ଚ୍ଚଦାବି ସଂକ୍ରାନ୍ତୀୟ ବିଲ୍‌ର ଆଲୋଚନା ସମୟରେ ପୂର୍ବଘଟଣା ମନେପକାଇ ମଧୁବାବୁ ମିଷ୍ଟର କ୍ଲାର୍କଙ୍କୁ ଏକ ଠିକଣା ଜବାବ ଦେଇଥିଲେ ।

'ଓଡ଼ିଶାର ବଣ ଜଙ୍ଗଲରେ ବହୁତ ବଦମାସ୍ ହାତୀ ଅଛନ୍ତି । ମାନ୍ୟବର ସଭ୍ୟ ଯଦି କେବେ ଓଡ଼ିଶା ଜଙ୍ଗଲକୁ ଶିକାର କରିବାକୁ ଯାଆନ୍ତି, ତେବେ ସେଠାକାର ଜଙ୍ଗଲରେ ଥିବା ବଦମାସ୍ ହାତୀଗୁଡ଼ିକ ନିଶ୍ଚୟ ତାଙ୍କ ଜୀବନକୁ ବିପନ୍ନ କରି ପକାଇବେ ଏହା ନିହାତି ସତ କଥା । କିନ୍ତୁ ମାନ୍ୟବର ସଭ୍ୟ ଦେଖିପାରିବେ ଯେ ହାତୀଗୁଡ଼ାକ ତାଙ୍କ ପାଖରୁ ଟଙ୍କା ପଇସା ଠକେଇ ନେଇ ନାହାନ୍ତି ବରଂ ପିକାଡେଲି ସର୍କସ ଅଞ୍ଚଳରେ ତାଙ୍କ ପକେଟରେ ଥିବା ଟଙ୍କା ପଇସାର ଯେଉଁ ଦୁର୍ଗତି ଘଟିବାର ସମ୍ଭାବନା ବରାବର ରହିଅଛି, ଓଡ଼ିଶାର ଘୋର ଜଙ୍ଗଲ ଭିତରେ ସେ ପ୍ରକାର ପରିସ୍ଥିତିରୁ ତାଙ୍କ ପକେଟ୍ ଅବଶ୍ୟ ନିଶ୍ଚିତ ଭାବେ ରକ୍ଷା ପାଇଯାଇଥିବ ।'

ଏହି ତୀର୍ଯ୍ୟକ୍ ସମାଲୋଚନାର ଅର୍ଥ ଅତ୍ୟନ୍ତ ସ୍ପଷ୍ଟ ଥିଲା । ମାସ କେତେଟା ତଳେ ଓଡ଼ିଆ ଏସୋସିଏସନ୍‌ର ପ୍ରତିନିଧିଙ୍କୁ ମିଷ୍ଟର କ୍ଲାର୍କଙ୍କର କଟୁକଥା ଶୁଣି ଫେରିବାକୁ ପଡ଼ିଥିଲା ସତ କିନ୍ତୁ ପିକାଡେଲି ସର୍କସର ପ୍ରତିନିଧି ଅର୍ଥାତ୍ ମିଷ୍ଟର କ୍ଲାର୍କଙ୍କୁ ନୀରବ କ୍ରୋଧର ଅନ୍ତର୍ଦାହ ସହ୍ୟ କରି ସେଦିନ ଏକାକୀ କାଉନ୍‌ସିଲ ଚେମ୍ବରରୁ ଫେରିବାକୁ ପଡ଼ିଥିଲା ।

ମଧୁବାବୁ ଥିଲେ ଜଣେ ବୁଦ୍ଧିଜୀବୀ । ତାଙ୍କର ତୀକ୍ଷ୍ଣ ବୌଦ୍ଧିକତା ଦୃଷ୍ଟିରୁ ସେ ସମସ୍ୟାର ଚିଙ୍କିନିଖି ବିଶ୍ଳେଷଣ କରିପାରୁଥିଲେ । ବ୍ୟବସ୍ଥାପକ ସଭାର ସଭ୍ୟ ହିସାବରେ ସେ ଓଡ଼ିଶାର ବିଭିନ୍ନ ସମସ୍ୟା ଉପରେ ଆଲୋକପାତ କରି ନିଜସ୍ୱ ଆଭିମୁଖ୍ୟ ଓ ଦୃଷ୍ଟିଭଙ୍ଗୀ ଦ୍ୱାରା ସମାଧାନ ଆଣିବାକୁ ଚାହୁଁଥିଲେ । ସମଗ୍ର ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ଏକତ୍ର କରି ଏହାର ସ୍ୱତନ୍ତ୍ରତା ଦାବି ଓ ଓଡ଼ିଶାର ଶିଳ୍ପାୟନ ପାଇଁ ତାଙ୍କର ସୁଚିନ୍ତିତ ମତାମତ - ମଧୁବାବୁଙ୍କ ବୈଧାନିକ ପ୍ରଜ୍ଞାର ଅନ୍ୟତମ ପରିଚାୟକ ।

ତାଙ୍କ ବ୍ୟବସ୍ଥାପକ ଭାଷଣରୁ ଜଣାଯାଏ ଯେ ସିଏ ଶିଳ୍ପାୟନର ମୂଳଭିତ୍ତି - ଶ୍ରମ ଓ ପୁଞ୍ଜିର ସମୁଚିତ ବିନିଯୋଗ ଚାହୁଁଥିଲେ । ସେଥିପାଇଁ ସେ ପାରମ୍ପରିକ ଶିଳ୍ପର ଯଥାସମ୍ଭବ ଆଧୁନିକୀକରଣର ପକ୍ଷପାତୀ ଥିଲେ । ଏହା ସହିତ ଲୋକଶକ୍ତି ବିନିଯୋଗ ସହ ଶୃଙ୍ଖଳିତ ସମନ୍ୱୟ ଉତ୍ପାଦନର କିପରି ଗୁଣାତ୍ମକ ବିକାଶ କରାଯାଇପାରିବ ସେଥିପ୍ରତି ମଧ ଦୃଷ୍ଟି ଦେଉଥିଲେ ।

ବିଲାତି ଶାସନର କୌଣସି ସୁବିଧା ଓଡ଼ିଶା ପାଇପାରୁନଥିଲା । ସେଥିପାଇଁ ଅନେକ ସମୟରେ ମଧୁବାବୁ ଶାସନ ସହ ସହଯୋଗ କରି ସାମାଜିକ ପରିବର୍ତ୍ତନ ଚାହୁଁଥିଲେ । ଫଳରେ ବ୍ୟବସ୍ଥାପକ ସଭାରେ ତାଙ୍କର ଭାଷଣ ତାଙ୍କୁ ଆଣି ଦେଇଥିବା ସମ୍ମାନର ପୂର୍ଣ୍ଣ ଉପଯୋଗ ସେ କରୁଥିଲେ । ଓଡ଼ିଶାର ରାଜା ଓ ଜମିଦାରଙ୍କ ସହିତ ଏଇ ପ୍ରତିଷ୍ଠା ତାଙ୍କୁ ବନ୍ଧୁତା ଆଣି ଦେଇଥିଲା ।

ସ୍ୱାଧୀନତାର ଅର୍ଦ୍ଧଶତାବ୍ଦୀ ପରେ ମଧୁସୂଦନଙ୍କ ବ୍ୟବସ୍ଥାପକ ଜୀବନର ବିଶ୍ଳେଷଣ କଲାବେଳେ ତତ୍କାଳୀନ ସାମାଜିକ ଅବସ୍ଥା ଓ ମିଳୁଥିବା ସୁଯୋଗ ସୁବିଧାକୁ ବିଚାର କରିବାକୁ ହେବ । ସେହି ଦୃଷ୍ଟିରୁ ମଧୁବାବୁ ଥିଲେ ଜଣେ ଅତି ଉଚ୍ଚଶ୍ରେଣୀର ବ୍ୟବସ୍ଥାପକ । ଉଦାରବାଦୀ ରାଜନୀତିଜ୍ଞ ହିସାବରେ ସେ ଆନ୍ଦୋଳନାତ୍ମକ ରାଜନୀତିର ପକ୍ଷପାତୀ ନଥିଲେ ମଧ ସାଧାରଣ ମଣିଷର ସୁଖଦୁଃଖ ପ୍ରତି ସମ୍ବେଦନଶୀଳ ଥିଲେ । ଗ୍ରାମାଞ୍ଚଳ ବିଷୟରେ ତାଙ୍କର ଯଥେଷ୍ଟ ଧ୍ୟାନ ଧାରଣା ଥିଲା ଏବଂ ଆଧୁନିକ ଭାରତର ମୂଳପିଣ୍ଡ ସହରୀ ଜୀବନକୁ ସେ ସୁସଙ୍ଗଠିତ କରିବାକୁ ଚାହୁଁଥିଲେ । ସେହି ଦୃଷ୍ଟିରୁ ସେ ଶ୍ରେଣୀ ସହଯୋଗକୁ ଶ୍ରେଣୀ ସଂଘର୍ଷ ଅପେକ୍ଷା ଅଗ୍ରାଧିକାର ଦେଉଥିଲେ ।

ବ୍ୟବସ୍ଥାପକ ମଧୁବାବୁ ଆଧୁନିକ ଅର୍ଥନୈତିକ ସୁଯୋଗ ଧାରାକୁ ଓଡ଼ିଶାକୁ ଆଣିବା ପାଇଁ ସରକାରୀ କର୍ମଚାରୀ ଓ ଜନସାଧାରଣଙ୍କ ସହଯୋଗ କାମନା କରିଥିଲେ । ତତ୍କାଳୀନ ପରିସ୍ଥିତିରେ ତାହା ହିଁ ତାଙ୍କ ପାଇଁ ଉପଯୁକ୍ତ ମାର୍ଗ ଥିଲା ବୋଲି ସେ ଭାବୁଥିଲେ । କିନ୍ତୁ ତାଙ୍କର ସବୁ କର୍ମକାଣ୍ଡ ଭିତରେ ନିହିତ ଥିଲା ଅଦମ୍ୟ ଉତ୍କଳପ୍ରୀତି । ତାଙ୍କର ବହୁମୁଖୀ କର୍ମଯୋଜନା ଓ ଅଟଳ ସାଧନାର ଆବେଗ ପ୍ରତିଫଳିତ ହୋଇଛି ତାଙ୍କ ବ୍ୟବସ୍ଥାପକ ଜୀବନର ପ୍ରତିଟି କର୍ମସୂଚୀରେ ଯାହା ତାଙ୍କୁ ଜାତୀୟତାର ଏକ ଜୀବନ୍ତ ବିଗ୍ରହ ରୂପେ ଉତ୍ତରସୂରୀଙ୍କ ପାଖରେ ପ୍ରତିଷ୍ଠିତ କରିପାରିଛି ।

ପ୍ରାଧ୍ୟାପିକା
ଇତିହାସ ବିଭାଗ, ରେଭେନ୍‌ସା କଲେଜ
କଟକ





# ବୃହତ୍ ଓଡ଼ିଶାର ସ୍ରଷ୍ଟା ଡକ୍ଟର ମହତାବ

ଅଧ୍ୟାପକ ସରୋଜ କୁମାର ପଣ୍ଡା

**ଭା**ରତରେ ପ୍ରଥମ ଭାଷା ଭିତ୍ତିକ ପ୍ରଦେଶ ରୂପେ ଓଡ଼ିଶାର ଅଭ୍ୟୁଦୟ ୧୯୩୬ ମସିହାରେ ହୋଇଥିଲେ ହେଁ ବୃହତ୍ ଓଡ଼ିଶାର ଗଠନ ୧୯୪୮ରେ ହୋଇଥିଲା । ଏହା ସମ୍ଭବ ହୋଇପାରିଥିଲା ଡକ୍ଟର ହରେକୃଷ୍ଣ ମହତାବଙ୍କ ଗଡ଼ଜାତ ରାଜ୍ୟଗୁଡ଼ିକର ମିଶ୍ରଣର ପ୍ରଯତ୍ନ ଯୋଗୁଁ । ବିଶେଷ କରି ଓଡ଼ିଶାର ଗଡ଼ଜାତ ରାଜ୍ୟଗୁଡ଼ିକୁ ଏକତ୍ରିତ କରି ଓଡ଼ିଶା ପ୍ରଦେଶ ସହ ସଂଯୋଗ କରିବାରେ ତାଙ୍କର ଭୂମିକା ଥିଲା ପ୍ରଶଂସନୀୟ ।

ପ୍ରାଚୀନକାଳରୁ ଓଡ଼ିଶାର ଗଡ଼ଜାତ ରାଜ୍ୟଗୁଡ଼ିକ ନିଜର ସ୍ୱତନ୍ତ୍ରତା ପ୍ରତିପାଦନ କରିଆସୁଥିଲେ । ଦୁର୍ଗମ ପାହାଡ଼ ଓ ଜଙ୍ଗଲ ଅଞ୍ଚଳରେ ଅବସ୍ଥିତ ଥିବାରୁ ଏହି ରାଜ୍ୟଗୁଡ଼ିକ ବୈଦେଶିକ ଶକ୍ତିମାନଙ୍କ ପାଇଁ ପ୍ରବେଶସାଧ୍ୟ ନଥିଲା । ଏପରିକି ମୋଗଲ ଓ ମରହଟ୍ଟା ଶାସକମାନେ ଗଡ଼ଜାତ ରାଜ୍ୟର ଆଭ୍ୟନ୍ତରୀଣ ଶାସନ କ୍ଷେତ୍ରରେ ହସ୍ତକ୍ଷେପ କରିବାକୁ ସାହସ କରିନଥିଲେ । ଇଂରେଜମାନଙ୍କ ଓଡ଼ିଶା ପ୍ରବେଶ ପରେ ଏହି ରାଜ୍ୟଗୁଡ଼ିକ ଚୁକ୍ତି ଜରିଆରେ ସେମାନଙ୍କ (ଇଂରେଜମାନଙ୍କ) ସାର୍ବଭୌମତ୍ୱ ସ୍ୱୀକାର କରିଥିଲେ ହେଁ ନିଜର ଆଭ୍ୟନ୍ତରୀଣ ଶାସନରେ ପ୍ରବେଶ କରିବାକୁ ଅନୁମତି ଦେଇନଥିଲେ ।

ଓଡ଼ିଶାର ଦେଶୀୟ (ଗଡ଼ଜାତ) ରାଜ୍ୟଗୁଡ଼ିକ ତିନୋଟି ଦଳରେ ବିଭକ୍ତ ଥିଲେ । ପ୍ରଥମ ଦଳରେ ୧୭ଟି କରଦ ରାଜ୍ୟ ରହିଥିଲେ, ଯେଉଁମାନେ ଓଡ଼ିଶା ଡିଭିଜନ୍ ସହ ସଂଯୁକ୍ତ ହୋଇ କଟକଠାରେ ଅବସ୍ଥାପିତ ଓଡ଼ିଶାର କମିଶନରଙ୍କ ଅଧୀନରେ ରହିଥିଲେ । ଏମାନଙ୍କ ମଧ୍ୟରୁ ଦୁଇଟି ରାଜ୍ୟ - ବୌଦ୍ଧ ଓ ଆଠମଲ୍ଲିକ କିଛି ସମୟ ପାଇଁ ରାଞ୍ଚିରେ ଅବସ୍ଥାପିତ ଦକ୍ଷିଣ-ପଶ୍ଚିମ ସୀମାନ୍ତ ଏଜେନ୍ସିରେ ରହିଥିଲେ ହେଁ ୧୮୩୭ରେ ଓଡ଼ିଶା ଅଧୀନକୁ ଆସିଥିଲେ । ୧୯୦୫ରେ ପାଞ୍ଚୋଟି ଓଡ଼ିଆ ଭାଷାଭାଷୀ ରାଜ୍ୟ ଯଥା- ପାଟଣା, କଳାହାଣ୍ଡି, ସୋନପୁର, ବଡ଼ମ୍ବା ଓ ରେଢ଼ାଖୋଲ ମଧ୍ୟ ସେଣ୍ଟ୍ରାଲ ପ୍ରୋଭିନ୍ସରୁ ଓଡ଼ିଶା ଡିଭିଜନକୁ ସ୍ଥାନାନ୍ତରିତ କରାଯାଇଥିଲା । ଏହି ସମୟରେ ଛତିଶଗଡ଼ ଡିଭିଜନରୁ ବଣାଇଁ ଓ ନାଗପୁରକୁ ମଧ୍ୟ ଓଡ଼ିଶା ସବ୍‌ଡିଭିଜନକୁ ବଦଳି କରାଗଲା । ଏହିପରି ୨୬ଟି ସମ୍ମିଳିତ ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ନେଇ ଓଡ଼ିଶା କରଦ ରାଜ୍ୟ ସମୂହର ଗଠନ ହୋଇଥିଲା ଏବଂ ଇଂରେଜମାନଙ୍କ ଦ୍ୱାରା 'ପଲିଟିକାଲ୍ ଏଜେଣ୍ଟ' ରାଜ୍ୟର ମୁଖ୍ୟମାନଙ୍କୁ ସାହାଯ୍ୟ କରିବାକୁ ନିଯୁକ୍ତ ହେଲେ ।

ଇଂରେଜ ସମର୍ଥିତ କରଦ ରାଜ୍ୟର ରାଜାମାନଙ୍କ କୁ-ଶାସନ ବିରୁଦ୍ଧରେ ୧୯୩୮ରେ ପ୍ରଜାମଣ୍ଡଳଗୁଡ଼ିକ ଗଢ଼ି ଉଠିଥିଲା । ଏଥିରେ ସାରଙ୍ଗଧର ଦାସ, ବାଲୁଙ୍କେଶ୍ୱର ଆଚାର୍ଯ୍ୟ, ପବିତ୍ରମୋହନ ପ୍ରଧାନ ପ୍ରମୁଖ ବିଶେଷ ଭୂମିକା ଗ୍ରହଣ କରିଥିଲେ । ଡଃ ମହତାବ ସେମାନଙ୍କ ଦିଗ୍‌ଦର୍ଶକ ରହି ଗାନ୍ଧିଜୀଙ୍କ ଅହିଂସା ନୀତିରେ ପରିଚାଳିତ ଅସହଯୋଗ ମାଧ୍ୟମରେ ସଂଗ୍ରାମ ଜାରି ରଖିବାକୁ ପରାମର୍ଶ ଦେଇଥିଲେ । ପ୍ରଥମେ ନୀଳଗିରିରେ ଶାନ୍ତିପୂର୍ଣ୍ଣ ଭାବରେ ପ୍ରଜା ଆନ୍ଦୋଳନ ଆରମ୍ଭ ହୋଇଥିଲା । ପରେ ତାଳଚେର ଓ ଢେଙ୍କାନାଳରେ ମଧ୍ୟ ତଦାନୁରୂପ ଆନ୍ଦୋଳନ ସଂଗଠିତ ହେଲା । ଡଃ ମହତାବଙ୍କ ପ୍ରତ୍ୟକ୍ଷ ଓ ପରୋକ୍ଷ ପ୍ରେରଣାରେ ଉଭୟ ରାଜ୍ୟରେ ଆନ୍ଦୋଳନ ସଫଳ ହୋଇଥିଲା । କ୍ରମେ ଅନ୍ୟ ରାଜ୍ୟରେ ପ୍ରଜା ଆନ୍ଦୋଳନ ଅଧିକ କ୍ରିୟାଶୀଳ ହେଲା । ତେବେ ବେଜେଲ୍‌ଗେଟ୍ ହତ୍ୟାକାଣ୍ଡ ପରେ ରଣପୁରର ଅବସ୍ଥା ସମ୍ଭାଳିବାରେ ମହତାବଙ୍କ ଭୂମିକା ଥିଲା ସ୍ୱାଗତଯୋଗ୍ୟ ।

ଡଃ ମହତାବଙ୍କ ଗଡ଼ଜାତ ମିଶ୍ରଣର ଚିନ୍ତାଧାରା ପ୍ରଥମେ ପରିପ୍ରକାଶ ହୋଇଥିଲା ୧୯୪୨ରେ, ଯେତେବେଳେ କ୍ରିପସ୍ ମିଶନ ଭାରତ ଭ୍ରମଣରେ ଆସିଥିଲେ । ମାତ୍ର ରାଜନୈତିକ ବିଭାଗର ସ୍ୱୀକୃତି ସତ୍ତ୍ୱେ ଏହା ଫଳପ୍ରଦ ହୋଇପାରିନଥିଲା । ପରବର୍ତ୍ତୀ ସମୟରେ କ୍ରିପସ୍‌ଙ୍କୁ ଏକ ବିବରଣୀ ପ୍ରଦାନ କରି ମହତାବ ଓଡ଼ିଶା ପ୍ରଦେଶ ସହ ଓଡ଼ିଶାର ଦେଶୀୟ ରାଜ୍ୟଗୁଡ଼ିକର ମିଶ୍ରଣ ସପକ୍ଷରେ କଂଗ୍ରେସର ଦାବି ଜଣାଇଥିଲେ । ଏଥିରେ ସେ ସତର୍କ କରି ଲେଖିଥିଲେ ଯେ, ଯଦି କରଦ ରାଜ୍ୟଗୁଡ଼ିକ ଇଂରେଜ ଶାସନାଧୀନ ଭାରତ ସହ ନ ମିଶେ, ତେବେ ଦେଶର ଅଖଣ୍ଡତା ଓ ସୁରକ୍ଷାରେ ବାଧା ଆସିବ ।

ତେଣୁ ଭାଷାଭିତ୍ତିରେ ଗଠନ କରାଯାଇଥିବା ପ୍ରଦେଶଗୁଡ଼ିକରେ ସଂପୃକ୍ତ ଅଞ୍ଚଳର ରାଜ୍ୟଗୁଡ଼ିକ ସାମିଲ ହେବା ଉଚିତ୍ ।

୧୯୪୬ରେ କ୍ଷମତା ହସ୍ତାନ୍ତର ସମ୍ପର୍କରେ ନିଷ୍ପତ୍ତି ନେବାକୁ କ୍ୟାବିନେଟ୍ ମିଶନ ଭାରତ ଆସିଥିଲା । ମହତାବ ଏକ ସ୍ମାରକପତ୍ର ପ୍ରଦାନ କରି ମିଶନର ପ୍ରତିନିଧିମାନଙ୍କ ସହ ଗଡ଼ଜାତ ମିଶ୍ରଣ ସମ୍ବନ୍ଧରେ ଆଲୋଚନା କରିଥିଲେ । ମେ ୧୪ରେ ରାଜ୍ୟ ସମୂହର ସଂପାଦକ ପ୍ୟାଥିକ ଲରେନ୍‌ସ ଓ ଭାଇସରାୟ ଲର୍ଡ଼ ୱାଭେଲଙ୍କୁ ଏ ବିଷୟରେ ତାର ପ୍ରେରଣ କରି ଓଡ଼ିଶାଟି ୨୬ଟି ଦେଶୀୟ ରାଜ୍ୟର ମିଶ୍ରଣ ଏକାନ୍ତ ଆବଶ୍ୟକ ବୋଲି ଜଣାଇଥିଲେ । କ୍ୟାବିନେଟ୍ ମିଶନ୍ ସମସ୍ତ ବିଷୟରେ ଅବଗତ ହୋଇଥିଲେ ହେଁ ପୂର୍ବରୁ କିଛି ବିଚାର ହୋଇନଥିବାରୁ କ୍ଷୋଭ ପ୍ରକାଶ କରିଥିଲା । ମାତ୍ର ଏହି କାର୍ଯ୍ୟ ମିଶନର ପରିସରଭୁକ୍ତ ନଥିବାରୁ ପଦକ୍ଷେପ ନେବାକୁ ଅସମର୍ଥ ଥିଲା । ଇତ୍ୟବସରରେ ମହତାବ କେତେକ ଗଡ଼ଜାତ ରାଜ୍ୟର ଶାସକମାନଙ୍କ ସହ ପ୍ରାକୃତିକ ସମ୍ପଦର ସୁରକ୍ଷା ଓ ମିଳିତ ବ୍ୟବହାରର ଉପଯୋଗିତା ଉପରେ ବିଚାରବିମର୍ଷ କରିଥିଲେ ।

ପରିଶେଷରେ ୧୯୪୭ ଅଗଷ୍ଟ ୧୫ ତାରିଖରେ ଇଂରେଜମାନେ ଯେ କେବଳ ଭାରତ ଛାଡ଼ିଲେ ତା' ନୁହେଁ, ସେମାନେ ଭାରତ, ପାକିସ୍ଥାନ ଓ ୫୯୨ଟି ମୁକ୍ତ ଦେଶୀୟ ରାଜ୍ୟ ଛାଡ଼ିଗଲେ, ଯାହାକି ଦେଶରେ ଏକ ଭୟାନକ ପରିସ୍ଥିତି ସୃଷ୍ଟି କରିଥିଲା । ଭାରତକୁ ପାକିସ୍ଥାନ ସହିତ ଏହି ଛୋଟ ଛୋଟ ସ୍ୱାଧୀନ ରାଜ୍ୟଗୁଡ଼ିକୁ ସମ୍ମୁଖୀନ ହେବାକୁ ପଡ଼ିଲା । କାରଣ ଏହି ରାଜ୍ୟଗୁଡ଼ିକ ଚାହିଁଲେ ନିଜ ନିଜର ସ୍ୱତନ୍ତ୍ରତା ବଜାୟ ରଖିପାରିବେ କିମ୍ବା ଦୁଇ ବା ଅନେକ ମିଶି ଅନ୍ୟ ଏକ ସଂଗଠିତ ରାଷ୍ଟ୍ରର ପରିକଳ୍ପନା କରିପାରିବେ । ବାସ୍ତବରେ ତାହା ହିଁ ହେଲା । ହାଇଦ୍ରାବାଦ ଭାରତ ସହ କୌଣସି ମେଳ ନରଖିବାକୁ ଘୋଷଣା କରିଥିଲା । ସେହିଭଳି କେତେକ ଦେଶୀୟ ରାଜ୍ୟ ଏକାଠି ହୋଇ 'ଦାକ୍ଷିଣାତ୍ୟ ରାଜ୍ୟ ସମୂହ ସଂଗଠନ' ଓ ଅନ୍ୟ କେତେକ 'ପୂର୍ବ ରାଜ୍ୟସମୂହ ସଂଗଠନ'ରେ ସାମିଲ ହେଲେ । ଏପରିକି ଏହି ସଂଗଠନମାନ ବିଦ୍ରୋହ ଆଶଙ୍କା କରି ନିଜ ନିଜର ସୈନ୍ୟବାହିନୀ ଗଢ଼ି ତୋଳିଥିଲେ । ଓଡ଼ିଶାର ସମସ୍ତ ଗଡ଼ଜାତ ରାଜ୍ୟ ଏବଂ ମଧ୍ୟପ୍ରଦେଶର ଛତିଶଗଡ଼ ରାଜ୍ୟଗୁଡ଼ିକ 'ପୂର୍ବ ରାଜ୍ୟସମୂହ ସଂଗଠନ'ରେ ଅନ୍ତର୍ଭୁକ୍ତ ହୋଇଥିଲେ । କ୍ୟାବିନେଟ୍ ମିଶନ ଦ୍ୱାରା ସମ୍ବିଧାନ ପ୍ରସ୍ତୁତ ପାଇଁ ଅନୁସୃତ ବ୍ୟବସ୍ଥାପକ ସଭାକୁ ପ୍ରତିନିଧି ପଠାଇ ନିଜର ଦାବିକୁ ଉପସ୍ଥାପନା କରିବାକୁ 'ପୂର୍ବ ରାଜ୍ୟସମୂହ ସଂଗଠନ' ଯୋଜନା କରିଥିଲା । ଅନ୍ୟପକ୍ଷରେ ମହତାବ ଏଭଳି ଏକ ସଂଗଠନକୁ ଅନୁମତି ଦେବାକୁ ପ୍ରସ୍ତୁତ ନଥିଲେ ।

ନୀଳଗିରିରେ ସାନ୍ତାଳୀମାନେ ଶାସକଙ୍କ ଇଙ୍ଗିତରେ ଅନ୍ୟ ପ୍ରଜାମାନଙ୍କ ବିପକ୍ଷରେ ବିଦ୍ରୋହ କରିଥିଲେ । ଆଇନ ଶୃଙ୍ଖଳା ବିପର୍ଯ୍ୟସ୍ତ ହେବାରୁ ଓଡ଼ିଶା ସରକାର ସେନାବାହିନୀ ପଠାଇ ସେଠାକାର ଶାସନଭାର ହାତକୁ ନେଇଥିଲେ । ଏହି ସମୟରେ ସର୍ଦ୍ଦାର ପଟେଲଙ୍କ ସଚିବ ଭି.ପି. ମେନନ୍ ଗଡ଼ଜାତ ପାଇଁ ଏକ ସ୍ୱତନ୍ତ୍ର ବ୍ୟବସ୍ଥା ପ୍ରଣୟନ କଲେ । ଏହା ବଳରେ ଓଡ଼ିଶାରେ ଓଡ଼ିଶା ସରକାର ସାର୍ବଭୌମ କ୍ଷମତାର ଅଧିକାରୀ ରହିଲେ ଓ ଗଡ଼ଜାତ ଶାସକମାନଙ୍କୁ ନିଜ ନିଜର ରାଜ୍ୟ ପରିଚାଳନା ଦାୟିତ୍ୱ ଦିଆଗଲା । କିନ୍ତୁ ଏଭଳି ବ୍ୟବସ୍ଥା ବେଶୀ ଦିନ ତିଷ୍ଠି ପାରିନଥିଲା ।

୧୯୪୭ ଡିସେମ୍ବର ୧୩ ତାରିଖରେ ସର୍ଦ୍ଦାର ପଟେଲ କଟକ ଆସିଥିଲେ । ଡଃ ମହତାବଙ୍କ ସହ ତାଙ୍କର ଦୀର୍ଘ ଅନୁସନ୍ଧାନମୂଳକ ଆଲୋଚନା ହୋଇଥିଲା । ପରିଶେଷରେ ସେ ଏହି ନିଷ୍ପତ୍ତିରେ ଉପନୀତ ହେଲେ ଯେ, ଗଡ଼ଜାତ ସମସ୍ୟା ସମାଧାନର ଏକମାତ୍ର ପନ୍ଥା ହେଉଛି, ଓଡ଼ିଶା ପ୍ରଦେଶ ସହ ସେମାନଙ୍କ ମିଶ୍ରଣ । ଏହି ପରିପ୍ରେକ୍ଷୀରେ ପଟେଲ କହିଥିଲେ, 'ଦଶବର୍ଷ ପୂର୍ବରୁ ମହତାବ ଓଡ଼ିଶାର ଭବିଷ୍ୟତ ଯୋଜନା ପ୍ରସ୍ତୁତ କରିଥିଲେ ଯାହାକି ସୌଭାଗ୍ୟକୁ ତାଙ୍କ ଜୀବଦ୍ଦଶାରେ ସଫଳ ହେବାକୁ ଯାଉଛି । ମୁଁ ଖୁସି, ମୁଁ ଯେ କେବଳ ତାଙ୍କୁ (ମହତାବଙ୍କୁ) ତାଙ୍କର ଆକାଂକ୍ଷା ପୂରଣ ହେବାରେ ସାହାଯ୍ୟ କରୁନାହିଁ, ଏଥିସହ ସମସ୍ତ ଓଡ଼ିଆମାନଙ୍କ ଲକ୍ଷ୍ୟ ଓ ସ୍ୱପ୍ନ ସାକାର ହେବାରେ ସହଯୋଗ କରୁଛି । ଏହା ହେଉଛି ଏଭଳି ଏକ ପଛୁଆ ରାଜ୍ୟ, ଯାହାକି ଏ ଦିଗରେ ଭାରତର ଅନ୍ୟ ପ୍ରଦେଶଗୁଡ଼ିକୁ ପଥ ପ୍ରଦର୍ଶନ କରିବ ।'

୧୯୪୭ ମସିହା ଡିସେମ୍ବର ୧୫ ତାରିଖରେ ଓଡ଼ିଶାର ଗଡ଼ଜାତ ଶାସକମାନେ ଓଡ଼ିଶା ପ୍ରଦେଶ ସହ ମିଶିବା ପାଇଁ ଚୁକ୍ତିବଦ୍ଧ ହେଲେ ଓ ୧୯୪୮ ମସିହା ଜାନୁଆରୀ ପହିଲାରୁ ଗଡ଼ଜାତ ମିଶ୍ରଣ କାର୍ଯ୍ୟକାରୀ ହେଲା । ୧୯୪୯ ମସିହା ଜାନୁଆରୀ ପହିଲାରେ ମୟୂରଭଞ୍ଜ ଶେଷ ଓଡ଼ିଆ ଦେଶୀୟ ରାଜ୍ୟ ଭାବେ ଓଡ଼ିଶା ପ୍ରଦେଶ ସହ ମିଶ୍ରଣ ପରେ ବୃହତ୍ ଓଡ଼ିଶା ସୃଷ୍ଟି ହେଲା । ଏହାର ସ୍ରଷ୍ଟା ଡଃ ମହତାବ ଇତିହାସରେ ଚିରକାଳ ଅମର ରହିବେ ।

ଅଧ୍ୟକ୍ଷ, ଗାଦିବ୍ରହ୍ମ କଲେଜ
ଡେଲାଙ୍ଗ, ପୁରୀ



# ପୂର୍ଣ୍ଣାଙ୍ଗ ଓଡ଼ିଶା ଗଠନରେ ଡଃ ହରେକୃଷ୍ଣ ମହତାବଙ୍କ ଭୂମିକା

ଡଃ ମନ୍ଦାକିନୀ ଦାସ

ମୌଳିକ ପ୍ରତିଭାର ଏକ ସ୍ୱୟଂ ସଂପୂର୍ଣ୍ଣ ଅନୁଷ୍ଠାନ ରୂପେ ପରିଚିତ ଡଃ ହରେକୃଷ୍ଣ ମହତାବଙ୍କର ସାମାଜିକ, ସାଂସ୍କୃତିକ, ଦାର୍ଶନିକ, ଐତିହାସିକ, ରାଜନୈତିକ, ସାହିତ୍ୟ ପ୍ରଭୃତି ବହୁ କ୍ଷେତ୍ରକୁ ଅତୁଳନୀୟ ଅବଦାନ ରହିଥିଲେ ମଧ ଦେଶ ମିଶ୍ରଣ ଆନ୍ଦୋଳନର ଅୟମାରମ୍ଭ କରି ଜାତୀୟ ସଂହତି ଓ ଭୌଗୋଳିକ ଅଖଣ୍ଡତା ରକ୍ଷା କ୍ଷେତ୍ରରେ ତାଙ୍କର ଭୂମିକା ଗୁରୁତ୍ୱପୂର୍ଣ୍ଣ ରୂପେ ପରିଗଣିତ ହେଉଛି । ରାଜନୈତିକ ସ୍ୱାଧୀନତା ମିଳିଲା ପରେ ଦେଶର ଭୌଗୋଳିକ ଅଖଣ୍ଡତା ରକ୍ଷା ଲାଗି ସେ ଯେଉଁ ଉଦ୍ୟମ ଆରମ୍ଭ କରିଥିଲେ, ପରବର୍ତ୍ତୀ ସମୟରେ ତାହା କେବଳ ଏକ ପୂର୍ଣ୍ଣାଙ୍ଗ ଓଡ଼ିଶା ଗଠନ କରିଥିଲା ତାହା ନୁହେଁ ବରଂ ଏକ ପୂର୍ଣ୍ଣାଙ୍ଗ ଭାରତ ଗଠନର ସ୍ୱପ୍ନକୁ ସାକାର କରିପାରିଥିଲା ।



ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ ଏସିଆ, ଆଫ୍ରିକା ଓ ଲାଟିନ ଆମେରିକାରେ ଯେଉଁ ଉପନିବେଶଗୁଡ଼ିକ ସ୍ୱାଧୀନତା ଲାଭ କରିଥିଲେ ସେମାନେ ନିଜ ଦେଶର ଭୌଗୋଳିକ ଅଖଣ୍ଡତା ଓ ଜାତୀୟ ସଂହତି ରକ୍ଷା କରିବା ଦିଗରେ ଦୃଢ଼ ଉଦ୍ୟମ କରିଥିଲେ । ଗୌରବର କଥା ଯେ ଭାରତର ଭୌଗୋଳିକ ଅଖଣ୍ଡତା ପାଇଁ ଉଦ୍ୟମ ଆରମ୍ଭ ହୋଇଥିଲା ଓଡ଼ିଶାରୁ ଓ ତାହା ସମ୍ଭବ ହୋଇଥିଲା ଡଃ ହରେକୃଷ୍ଣ ମହତାବଙ୍କ ଦିଗ୍‌ଦର୍ଶନରେ । ଯେଉଁ କେତେକ ଗଡ଼ଜାତ ଅଞ୍ଚଳ ବିଭିନ୍ନ ଆଳରେ ନିଜର ସ୍ୱାଧୀନତା/ସାର୍ବଭୌମତା ବଞ୍ଚାଇ ରଖି ଭାରତର ଅନ୍ତର୍ଭୁକ୍ତ ହେବାକୁ ଚାହୁଁ ନଥିଲେ, ସେମାନେ ସମସ୍ତେ ମହତାବଙ୍କ ମାନସ ପ୍ରସୁତ ଐକୀକରଣ ପ୍ରକ୍ରିୟାରେ ଅଂଶୀଦାର ହେବାକୁ ବାଧ ହେଲେ । 'ମହତାବ ଯୋଜନା'ର ସଫଳ ପ୍ରୟୋଗ ଫଳରେ ଦେଶରେ ଏକତା ଓ ସଂହତି ସ୍ଥାପିତ ହୋଇପାରିଛି ।

ଇଂରେଜ ସରକାରଙ୍କ କୁଟନୀତି ଫଳରେ ଯେଉଁ ଭାରତ ସ୍ୱାଧୀନତା ଆଇନ ଅନୁମୋଦିତ ହୋଇଥିଲା, ତଦ୍ୱାରା ଛଅଶହରୁ ଊର୍ଦ୍ଧ୍ୱ ଦେଶୀୟ ରାଜ୍ୟ ବା ଗଡ଼ଜାତଙ୍କୁ ସାର୍ବଭୌମ କ୍ଷମତା ମିଳିଥିଲା । ସେହି ରାଜ୍ୟର ସର୍ବୋଚ୍ଚ ଶାସକ ରୂପେ ରାଜା/ମହାରାଜାମାନେ ରାଜ୍ୟ ଶାସନର ଅଖଣ୍ଡ ସ୍ୱାଧୀନତା ଲାଭ କରିଥିଲେ । ଓଡ଼ିଶାର କେତେକ ଦେଶୀୟ ରାଜ୍ୟ, ମଧ୍ୟପ୍ରଦେଶ ସହ ମିଶି ମିଳିତ ରାଜ୍ୟ ଗଠନ ପାଇଁ ଉଦ୍ୟମ କଲେ । ତଦ୍ୱାରା ସେମାନେ ନିଜକୁ ଅଧିକ ଶକ୍ତିଶାଳୀ କରିବା ସହିତ ନିଜ ରାଜପଦର ସୁରକ୍ଷା କରିବାକୁ ଚାହୁଁଥିଲେ । ଓଡ଼ିଶାରେ ଥିବା ୨୬ଟି ଦେଶୀୟ ରାଜ୍ୟଗୁଡ଼ିକୁ ଲାଗି ରହିଥିବା ଅଞ୍ଚଳ ପାଇଁ ପ୍ରଶାସନିକ ସମସ୍ୟାମାନ ସୃଷ୍ଟି ହେଲା । ଏହି ରାଜ୍ୟଗୁଡ଼ିକୁ ଅଲଗା କରି ଓଡ଼ିଶା ପରି ଏକ କ୍ଷୁଦ୍ର ରାଜ୍ୟ ପାଇଁ ଅର୍ଥନୈତିକ ଯୋଜନା ପ୍ରସ୍ତୁତ କରିବା ବଡ଼ ଜଟିଳ କାର୍ଯ୍ୟ ଥିଲା । ଓଡ଼ିଶାର ଅନ୍ୟ ଅଞ୍ଚଳ ସହ ଗଡ଼ଜାତର ଅବସ୍ଥିତି ଏପରି ଥିଲା ଯେ, ଖଣିଜ ଓ ଜଙ୍ଗଲ ସମ୍ପଦର ବିନିଯୋଗ ପାଇଁ ସ୍ୱତନ୍ତ୍ର ଆଇନ କାର୍ଯ୍ୟକାରୀ କରିବା କଷ୍ଟକର ହୋଇପଡ଼ିଲା । ଓଡ଼ିଶାର ସ୍ୱାଧୀନ ଅଞ୍ଚଳରେ ଉପଲବ୍ଧ ହେଉଥିବା ଶିକ୍ଷା ଓ ସ୍ୱାସ୍ଥ୍ୟଗତ ସୁବିଧା ସୁଯୋଗ ଲାଭ କରିବା ପାଇଁ ଗଡ଼ଜାତରୁ ଅନେକ ଅଧିବାସୀ ଚାଲି ଆସୁଥିଲେ । ତେଣୁ ସରକାରୀ ସଂସ୍ଥା ଉପରେ ଚାପ ପଡୁଥିଲା । ଏଣେ କୌଣସି ଦେଶୀୟ ରାଜ୍ୟ ତାଙ୍କ ଜନସାଧାରଣଙ୍କୁ ମିଳୁଥିବା ସୁବିଧା ସୁଯୋଗ ପାଇଁ କୌଣସି ଆର୍ଥିକ ସହାୟତା ପ୍ରଦାନ କରୁ ନଥିଲେ । ତେଣୁ ପ୍ରଶାସନିକ ସୁବିଧା ସହିତ ଜାତୀୟ ସଂହତି ଓ ଏକତା ରକ୍ଷା ପାଇଁ ଦେଶୀୟ ରାଜ୍ୟଗୁଡ଼ିକୁ ସେମାନଙ୍କୁ ଲାଗି ରହିଥିବା ଅଞ୍ଚଳ ସହିତ ମିଶ୍ରଣ କରାଇବା ଏକାନ୍ତ ଆବଶ୍ୟକ ଥିଲା । ଡଃ ମହତାବ ମଧ ବୁଝିଥିଲେ ଯେ ସେ ସମୟର ଶୀତଳ ଯୁଦ୍ଧ ଦ୍ୱାରା ଆକ୍ରାନ୍ତ ବିଶ୍ୱ ରାଜନୈତିକ ପରିସ୍ଥିତି ମଧ୍ୟରେ ଏହି କ୍ଷୁଦ୍ର କ୍ଷୁଦ୍ର ସାର୍ବଭୌମ ରାଷ୍ଟ୍ରଗୁଡ଼ିକ ଭାରତର ଭୌଗୋଳିକ ସୀମା ମଧ୍ୟରେ ରହି ଦେଶ ବିରୋଧୀ ଆଭିମୁଖ୍ୟ ପ୍ରଦର୍ଶନ କରି ବସିବେ । ତଦ୍ୱାରା ଯେଉଁ ବିସ୍ଫୋରକ ପରିସ୍ଥିତି ସୃଷ୍ଟି ହେବ, ତାହାକୁ ସମ୍ଭାଳିବାକୁ ଭାରତ ପରି ଏକ ନବଜାତ ରାଷ୍ଟ୍ର ପକ୍ଷରେ କାଠିକର ପାଠ ହୋଇପଡ଼ିବ ।

ମହତାବ ନିଜର ଚିନ୍ତାଧାରା ଓ ଯୁକ୍ତିକୁ ମହାତ୍ମା ଗାନ୍ଧୀଙ୍କ ସମ୍ମୁଖରେ ଉପସ୍ଥାପିତ କରି ତାଙ୍କ ସହମତି ହାସଲ କଲେ । ପରବର୍ତ୍ତୀ

ସମୟରେ ତେଣୁ ତାଙ୍କୁ ନେହେରୁଙ୍କ ସହମତି ହାସଲ କରିବାକୁ ବିଶେଷ କଷ୍ଟ ହେଲା ନାହିଁ । କିନ୍ତୁ ଅମଲାତନ୍ତ୍ରର ପେଞ୍ଚପାଞ୍ଚ କୁ-ଚକ୍ରାନ୍ତର ସାମନା କରିବାକୁ ପଡ଼ିଲା ତାଙ୍କୁ । ହାଇଦ୍ରାବାଦ ନିଜାମଙ୍କ କ୍ଷମତା ଓ ପ୍ରତିପତ୍ତିରେ ଟକ୍କର ଦେଲାପରି ଏକ ପୂର୍ବ ରାଜ୍ୟ ସଂଗଠନ ବା 'ଇଷ୍ଟର୍ଣ୍ଣ ଷ୍ଟେଟସ୍ ୟୁନିଅନ' ଗଠନ କରିବାକୁ ଅମଲାତନ୍ତ୍ରର ଚେଷ୍ଟା ଚାଲିଥାଏ । କିନ୍ତୁ ଭାରତର ତତ୍କାଳୀନ କେନ୍ଦ୍ର ସ୍ୱରାଷ୍ଟ୍ର ବିଭାଗ ମନ୍ତ୍ରୀ ତଥା ଉପପ୍ରଧାନମନ୍ତ୍ରୀ ସର୍ଦ୍ଦାର ବଲ୍ଲଭଭାଇ ପଟେଲଙ୍କୁ ମହତାବ ନିଜ ଯୋଜନା ସଂପର୍କରେ ଅବଗତ କରାଇ ତାହା କାର୍ଯ୍ୟକାରୀ ନହେଲେ ଦେଶ ଉପରକୁ ମାଡ଼ି ଆସୁଥିବା ସମ୍ଭାବ୍ୟ ବିପଦ ପ୍ରତି ସତର୍କ କରାଇଦେଲେ । ଅବଶେଷରେ ଦେଶୀୟ ରାଜ୍ୟମାନଙ୍କୁ ତତ୍‌ସଂଲଗ୍ନ ପ୍ରଦେଶ ସହ ମିଶ୍ରଣ କରିବାର କାର୍ଯ୍ୟକ୍ରମ ଓଡ଼ିଶାରୁ ଆରମ୍ଭ ହେଲା । ସେତେବେଳକୁ ମଧ୍ୟ ନୀଳଗିରି ରାଜ୍ୟର ମିଶ୍ରଣ କରାଇ ଓଡ଼ିଶା ଭାରତ ପାଇଁ ଏକ କାର୍ଯ୍ୟସୂଚୀ ନିର୍ଦ୍ଧାରିତ କରିସାରିଥିଲା ।

୧୯୪୭ ମସିହା ଡିସେମ୍ବର ମାସରେ ସର୍ଦ୍ଦାର ପଟେଲ 'ମହତାବ ଯୋଜନା'ର କାର୍ଯ୍ୟକାରିତା ପାଇଁ ଓଡ଼ିଶା ଆସିଲେ । ଭୁବନେଶ୍ୱରରେ ପହଞ୍ଚୁ ପହଞ୍ଚୁ ଗଡ଼ଜାତ ମିଶ୍ରଣ ଦାବିରେ ଜନସାଧାରଣଙ୍କ ପଟୁଆର ଓ ସ୍ଲୋଗାନ ଦେଖିବାକୁ ସେ ପାଇଲେ । ସେତେବେଳେ କଟକସ୍ଥିତ ରାଜଭବନରେ ଓଡ଼ିଶାର ରାଜ୍ୟପାଳ ଡଃ କୈଳାସନାଥ କାଟଜୁଙ୍କ ପୌରହିତ୍ୟରେ ଆୟୋଜିତ ଏକ ସାଧାରଣ ସଭାରେ ଦେଶ ମିଶ୍ରଣ ଯଜ୍ଞର ଅୟମାରମ୍ଭ ହେଲା । ଓଡ଼ିଶାର ରାଜା/ମହାରାଜାଙ୍କ ଉଦ୍ଦେଶ୍ୟରେ ସର୍ଦ୍ଦାର ପଟେଲ କହିଥିଲେ ଯେ ପ୍ରତ୍ୟେକ ଶାସକ ନିଜକୁ ତଥା ନିଜ ପ୍ରଜାମାନଙ୍କୁ ସୁରକ୍ଷିତ ରଖିବାକୁ ଚାହୁଁଥିଲେ ରାଜ୍ୟ ମିଶ୍ରଣ ଚୁକ୍ତିରେ ଦସ୍ତଖତ କରିବାକୁ ପଡ଼ିବ । ଅନ୍ୟଥା ପ୍ରଜାମଣ୍ଡଳ ଆନ୍ଦୋଳନରୁ ସେମାନଙ୍କୁ ରକ୍ଷା କରିବା ନିମନ୍ତେ ଭାରତ ସରକାରଙ୍କୁ ଦାୟିତ୍ୱ ନେବାର ନିବେଦନ ବୃଥା ହୋଇଯିବ । ସର୍ଦ୍ଦାର ପଟେଲଙ୍କ ଏ ପ୍ରକାରର ପରାମର୍ଶରେ ଓଡ଼ିଶାର ଗଡ଼ଜାତ ରାଜାମାନଙ୍କ ମନରେ ଭାଳେଣୀ ପଡ଼ିଗଲା । ନୀଳଗିରି ପରି ଓଡ଼ିଶାର ପୋଲିସ ବାହିନୀ ଦ୍ୱାରା ବଳପୂର୍ବକ ଦଖଲ କରି ନେବାର ଭୟ ସେମାନଙ୍କୁ ଘାରିଲା । ତେଣୁ ଅଗତ୍ୟା ଜଣକ ପରେ ଜଣେ ଶାସକ ଓଡ଼ିଶା ସହ ରାଜ୍ୟ ମିଶ୍ରଣ ଚୁକ୍ତିରେ ଦସ୍ତଖତ କରିବାକୁ ଲାଗିଲେ । ଛବିଶ ଗୋଟି ଦେଶୀୟ ରାଜ୍ୟ ମଧ୍ୟରୁ ଚବିଶ ଗୋଟି ଓଡ଼ିଶା ସହିତ ମିଶ୍ରଣ ପାଇଁ ୧୯୪୭ ମସିହା ଡିସେମ୍ବର ମାସରେ ସମ୍ମତି ଜଣାଇଥିଲେ ।

ଦେଶ ମିଶ୍ରଣର ଏହି ଅଭିନବ 'ମହତାବ ଯୋଜନା' ପରବର୍ତ୍ତୀ ପର୍ଯ୍ୟାୟରେ ଭାରତ ସରକାର ଅନ୍ୟ ଦେଶୀୟ ରାଜ୍ୟଗୁଡ଼ିକ ପାଇଁ ମଧ୍ୟ ପ୍ରୟୋଗ କରିଥିଲେ । ଓଡ଼ିଶାରେ ଦେଶୀୟ ରାଜ୍ୟ ମିଶ୍ରଣ ସମ୍ବନ୍ଧରେ ୧୯୪୯ ମସିହା ଅଗଷ୍ଟ ୧ ତାରିଖରେ ଯେଉଁ ବିଜ୍ଞପ୍ତି ଜାରି ହୋଇଥିଲା, ସେଥିରେ ସର୍ଦ୍ଦାର ପଟେଲ କହିଥିଲେ ଯେ, 'କେତେ ଶତାବ୍ଦୀ ପୂର୍ବେ କଳିଙ୍ଗ ଜଣେ ବିରାଟ ସମ୍ରାଟଙ୍କ ମଧ୍ୟରେ ଜାଗରଣ ଆଣିବାର ମହାନ୍ ସୁଯୋଗ ଲାଭ କରିଥିଲା, ଯିଏ କାଳକ୍ରମେ କେବଳ ଜଣେ ମହାନ ଓ ଜ୍ଞାନୀ ଶାସକ ନୁହେଁ, ତା' ସହିତ ଜନସାଧାରଣଙ୍କ ପାଇଁ ଜଣେ ମହାନ୍ ଦିଗ୍‌ଦର୍ଶକ, ବନ୍ଧୁ ଓ ଦାର୍ଶନିକ ହୋଇପଡ଼ିଥିଲେ । ଅଳ୍ପ କେତେଜଣ ସ୍ୱପ୍ନ ଦେଖିଥିଲେ ଏବଂ କେହି କଳ୍ପନା କରି ନଥିଲେ ଯେ ସେହି ଭୂମି ଏକ ବୈପ୍ଳବିକ ପରିବର୍ତ୍ତନ ଆରମ୍ଭ କରି ଭାରତ ପାଇଁ ସମାନ ଧରଣର ଏକତା, ଶକ୍ତି ଓ ସୁରକ୍ଷା ହାସଲ କରିପାରିବ ଯାହା ଭାରତ ସେହି ମହାନ୍ ଶାସକ ଅଶୋକଙ୍କ ଅଧୀନରେ ହାସଲ କରିଥିଲା । ମୁଁ ଅତ୍ୟନ୍ତ ଆନନ୍ଦିତ ଯେ ମୁଁ ତାଙ୍କୁ (ମହତାବ) କେବଳ ତାଙ୍କର ସ୍ୱପ୍ନ ନୁହେଁ, ବରଂ ସମଗ୍ର ଓଡ଼ିଶାବାସୀଙ୍କ ସ୍ୱପ୍ନ ଓ ଆକାଂକ୍ଷା ପୂରଣ କରାଇବାରେ ସାହାଯ୍ୟ କରିଛି । ମୁଁ ଆହୁରି ଖୁସି ଯେ ସେମାନେ ପଛୁଆ ପ୍ରଦେଶ କହୁଥିବା ଏହି ରାଜ୍ୟ ଅବଶିଷ୍ଟ ଭାରତ ଅନୁସରଣ କରିବା ନିମନ୍ତେ ମାର୍ଗ ପ୍ରଦର୍ଶନ କରିପାରିଛି ।'

ଓଡ଼ିଶା ଡଃ ହରେକୃଷ୍ଣ ମହତାବଙ୍କ ନେତୃତ୍ୱରେ ଭାରତର ଏକତା, ଜାତୀୟ ସଂହତି ଓ ଅଖଣ୍ଡତା ରକ୍ଷା କରିବାର ଉପାୟ ଦେଖାଇ ଦେଇପାରିଥିଲା ।

ପ୍ରାଧ୍ୟାପିକା, ରାଜନୀତି ବିଜ୍ଞାନ ବିଭାଗ
ରେଭେନ୍ସା ମହାବିଦ୍ୟାଳୟ, କଟକ-୩

---

## ଓ.ଏସ୍.ଆର୍.ଟି.ସି. ପକ୍ଷରୁ ୨୦୦୫ ଡିସେମ୍ବର ମାସରେ ୨୮୬.୧୮ ଲକ୍ଷ ଟଙ୍କା ଆୟ

ଓଡ଼ିଶା ରାଜ୍ୟ ସଡ଼କ ପରିବହନ ନିଗମ (ଓ.ଏସ୍.ଆର୍.ଟି.ସି.) ପକ୍ଷରୁ ୨୦୦୪ ମସିହା ଡିସେମ୍ବର ମାସରେ ୨୭୨.୮୭ ଲକ୍ଷ ଟଙ୍କା ଆଦାୟ କରାଯାଇଥିବା ବେଳେ ୨୦୦୫ ମସିହା ଡିସେମ୍ବର ମାସରେ ୨୮୬.୧୮ ଲକ୍ଷ ଟଙ୍କା ଆଦାୟ କରାଯାଇଛି । ଏହାବ୍ୟତୀତ ଭୁବନେଶ୍ୱରର ବରମୁଣ୍ଡା ଓ କଟକର ବାଦାମବାଡ଼ି ବସ୍‌ଷ୍ଟାଣ୍ଡରେ ରହଣି ମାହାସୁଲ ବାବଦରେ ୪ ଲକ୍ଷ ୬୬ ହଜାର ୮୮୦ ଟଙ୍କା ଆଦାୟ କରାଯାଇଛି ।

ନିଗମ ପକ୍ଷରୁ ନୂତନ ମାର୍ଗରେ ବିଜୟନଗରମ୍‌ଠାରୁ ଇନ୍ଦ୍ରାବତୀ ଓ ବିଜୟନଗରମ୍‌ଠାରୁ ନବରଂଗପୁର ପର୍ଯ୍ୟନ୍ତ ଦୁଇଟି ବସ୍ ପ୍ରଚଳନ କରାଯାଇଛି ବୋଲି ବାଣିଜ୍ୟ ଓ ପରିବହନ ବିଭାଗ ସୂତ୍ରରୁ ପ୍ରକାଶ ।



# ମୋ ସ୍ମୃତିରେ ବିଜୁବାବୁ

ସୁରେନ୍ଦ୍ର ନାଥ ନାୟକ

ପ୍ରବାଦପୁରୁଷ ବିଜୁ ପଟ୍ଟନାୟକଙ୍କ ଜନ୍ମ ତିଥିରେ ତାଙ୍କର ଅବିସ୍ମରଣୀୟ ସ୍ମୃତି ମାନସପଟ୍ଟରେ ଉଙ୍କି ମାରୁଛି । ତାଙ୍କର ଆଦର୍ଶ ମୋ ସାମାଜିକ ଜୀବନରେ ପ୍ରଚଣ୍ଡ ପ୍ରଭାବ ପକାଇଛି । ସେ ଯୋଗଜନ୍ମା ମହାପୁରୁଷଙ୍କ ପ୍ରତିଭା କେବଳ ରାଜ୍ୟ ବା ଦେଶ ଭିତରେ ସୀମିତ ନଥିଲା । ସାରା ବିଶ୍ୱର ବିଭିନ୍ନ ଦେଶର ଇତିହାସ ପୃଷ୍ଠାରେ ତାଙ୍କ କୀର୍ତ୍ତିରାଜି ବର୍ଣ୍ଣିତ ହୋଇଛି । ଦ୍ୱିତୀୟ ମହାସମରରେ ଜଣେ ବିଚକ୍ଷଣ ବୈମାନିକ ହିସାବରେ ଅର୍ଜନ କରିଥିବା କୃତିତ୍ୱ ଯୋଗୁଁ ତାଙ୍କୁ ସୋଭିଏତ୍ ୟୁନିୟନର ପ୍ରମୁଖ ଯୋଦ୍ଧାମାନଙ୍କ ତାଲିକାରେ ସ୍ଥାନ ଦିଆଯାଇଛି । ସେହିପରି ଇଣ୍ଡୋନେସିଆର ମୁକ୍ତି ସଂଗ୍ରାମରେ ପରାକାଷ୍ଠା ଦେଖାଇ ସେ ଦେଶର 'ଭୂମିପୁତ୍ର' ଆଖ୍ୟା ଅର୍ଜନ କରିଛନ୍ତି ।

ଭାରତର ତତ୍କାଳୀନ ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହରଲାଲ ନେହେରୁଙ୍କ ସମ୍ପୂର୍ଣ୍ଣ ବିଶ୍ୱାସଭାଜନ ହୋଇ ଓଡ଼ିଶାର ଅର୍ଥନୈତିକ ବିକାଶ ନିମନ୍ତେ ବହୁ ପ୍ରକଳ୍ପର କାର୍ଯ୍ୟ କରାଇବାରେ ସେ ସକ୍ଷମ ହୋଇଥିଲେ । ସୁନାବେଡ଼ାର ମିଗ୍ ବିମାନ କାରଖାନା ଓ ପାରାଦୀପ ବନ୍ଦର ରାଜ୍ୟବାସୀଙ୍କ ପାଇଁ ତାଙ୍କର ମହତ୍ୱପୂର୍ଣ୍ଣ ଅବଦାନ । ନିଜର ଆଦର୍ଶବାଦ ଓ ସ୍ପଷ୍ଟବାଦିତା ଯୋଗୁଁ ତାଙ୍କର ଚରମ ରାଜନୈତିକ ପ୍ରତିଦ୍ୱନ୍ଦୀମାନେ ତାଙ୍କୁ 'ଝଡ଼ର ଇଗଲ୍' ଭାବରେ ସମ୍ବୋଧନ କରିବା ପାଇଁ କୁଣ୍ଠାବୋଧ କରୁନଥିଲେ ।

୧୯୬୧ ମସିହାରେ ମୁଁ ପଞ୍ଚାୟତ ସମିତି ଅଧ୍ୟକ୍ଷ ଥିବାବେଳେ ଏକ ସାଧାରଣ ସଭାରେ ଗୋଟିଏ ଅପ୍ରସ୍ତୁତ ପରିସ୍ଥିତି ତାଙ୍କୁ ଓ ମୋତେ ଘନିଷ୍ଠ କରିଥିଲା । ସଭାରେ ଭାଷଣ ଦେବାକୁ ଉଠିବା ବେଳକୁ ହାତରେ ଥିବା ଅଧାଜଳା ସିଗାରେଟ୍ କେଉଁଠି ପକାଇବାକୁ ଇତସ୍ତତଃ ହୋଇ ଚାହୁଁଥିବାବେଳେ ତାକୁ ମୁଁ ଧରି ନେଇଥିଲି । ଭାଷଣ ପରେ ସେ ନିଜର ଅପ୍ରସ୍ତୁତତା ଯୋଗୁଁ ମୋତେ 'ମୁଁ ଦୁଃଖିତ' ବୋଲି କହିବାକୁ ମଧ୍ୟ ପଛାଇ ନଥିଲେ । ତାଙ୍କର ଏ ମହାନୁଭବତା ମୋ ଜୀବନର ଏକ ଅବିସ୍ମରଣୀୟ ସ୍ମୃତି ହୋଇ ରହିଯାଇଛି । ସେହିଦିନଠାରୁ ତାଙ୍କର ସ୍ୱର୍ଗାରୋହଣ ପର୍ଯ୍ୟନ୍ତ ମୋ ପ୍ରତି ତାଙ୍କର ସ୍ନେହ, ଶ୍ରଦ୍ଧା ଏବଂ ପରାମର୍ଶ, ମୋ ଜୀବନର ଦିଗ୍‌ଦର୍ଶନ ହୋଇପାରିଛି । ତାଙ୍କର ନିର୍ଭୀକତା ଓ



ସ୍ପଷ୍ଟବାଦିତା ଗୁଣ ଆଜି ମୋତେ ସର୍ବସମକ୍ଷରେ ଖୋଲାମତ ବ୍ୟକ୍ତ କରିବାର ସାହସ ଓ ପ୍ରେରଣା ଯୋଗାଇଛି । ସେ ଓଡ଼ିଶାକୁ ସମଗ୍ର ଦେଶରେ ଏକ ଶ୍ରେଷ୍ଠ ରାଜ୍ୟରେ ପରିଣତ କରିବାକୁ ଦେଖିଥିବା ସ୍ୱପ୍ନ ପାଇଁ ବହୁପଥ ଅତିକ୍ରମ କରିଥିଲେ ମଧ୍ୟ ଏବେବି ଅପୂର୍ଣ୍ଣ ରହିଛି । ତାଙ୍କର ସୁଯୋଗ୍ୟ ଦାୟଦ ତଥା ଆଜିର ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ଓଡ଼ିଶାବାସୀଙ୍କର ଆସ୍ଥାଭାଜନ ହୋଇପାରିଛନ୍ତି ଏବଂ ରାଜ୍ୟବାସୀ ନବୀନବାବୁଙ୍କଠାରୁ କୃଷି ଓ ଶିଳ୍ପ କ୍ଷେତ୍ରରେ ସମୃଦ୍ଧ ଏକ ପୂର୍ଣ୍ଣାଙ୍ଗ ଓଡ଼ିଶା ଗଠନର ଆଶା ରଖିଛନ୍ତି । ଏ ସମୃଦ୍ଧ ଓଡ଼ିଶାର ସ୍ୱପ୍ନ ସାର୍ଥକ ହେବା ପାଇଁ ଆଜି ତାଙ୍କର ଏ ମହାନ୍ ଜନ୍ମ ତିଥିରେ ରାଜ୍ୟବାସୀ ହିନମନ୍ୟତାରୁ ଊର୍ଦ୍ଧ୍ୱରେ ରହି ସଂକଳ୍ପ କରିବା ଉଚିତ ।

ଏ ରାଜ୍ୟର ବୃହତ୍ତର ସ୍ୱାର୍ଥ, ସମୃଦ୍ଧି ଓ ପ୍ରଗତିର ମହାନ୍ କାର୍ଯ୍ୟର ସେତୁବନ୍ଧରେ ଗୁଣ୍ଡୁଚିମୂଷା ପରି କର୍ତ୍ତବ୍ୟ ସାଧନ ପାଇଁ ମୁଁ ବଦ୍ଧପରିକର ।

କୃଷି ମନ୍ତ୍ରୀ
ଓଡ଼ିଶା

# ଉତ୍କଳ ଦିବସ : ଏକ ସିଂହାବଲୋକନ

ରବୀନ୍ଦ୍ର ନାଥ ପ୍ରଧାନ

୧୯୩୬ ମସିହା ଏପ୍ରିଲ ପହିଲା ପ୍ରତ୍ୟେକ ଓଡ଼ିଆ ପ୍ରାଣରେ ଗର୍ବ ଓ ଗୌରବର ଭାବାବେଗ ସୃଷ୍ଟି କରେ । ଓଡ଼ିଶା ଏକ ସ୍ୱତନ୍ତ୍ର ପ୍ରଦେଶ । ଏହାର ଭାଷା, ସଂସ୍କୃତି ଏବଂ ଲୋକାଚାର ସମଗ୍ର ଭାରତବର୍ଷଠାରୁ ନିଶ୍ଚିତ ରୂପେ ଅଲଗା ଅଲଗା ଜଣାପଡ଼େ । କାରଣ ଓଡ଼ିଆମାନଙ୍କ ସରଳତା, ନିଷ୍କପଟତା ଏବଂ ସର୍ବୋପରି ମହାନ ମାନବୀୟ ଗୁଣବତା ବେଶ୍ ମାର୍ମିକ ଏବଂ ସୁସ୍ପଷ୍ଟ । ଏଥିରେ ଆବିଳତା ନଥାଏ । ନିରହଂକାର ମନୋଭାବର ଏ ଜାତି ଏକ ଉଜ୍ଜ୍ୱଳ ଦୃଷ୍ଟାନ୍ତ । ଭାରତବର୍ଷର ପ୍ରତ୍ୟେକ ଭାଷାଭିତ୍ତିକ ପ୍ରଦେଶମାନଙ୍କୁ ଯାଇ ଲୋକ ସଂସ୍କୃତି ସହିତ ମିଶିବା ପରେ ଜାଣିପାରିବେ ଓଡ଼ିଆ ଜାତି ଅନ୍ୟମାନଙ୍କଠାରୁ କେତେ ପୃଥକ୍ ! ସେ ପୃଥକଟା କ'ଣ ? ଏ ପ୍ରଶ୍ନ ସ୍ୱତଃ ମନରେ ଜାଗ୍ରତ ହୁଏ ।

ଇତିହାସ ପୃଷ୍ଠାରୁ ଆମେ ପଢ଼ିଛୁ ଓଡ଼ିଆମାନେ ବୀର, ସାହସୀ ଏବଂ ସର୍ବଭାରତୀୟ ପ୍ରେମଧାରାର ବଳିଷ୍ଠ ପୂଜାରୀ । ବିପଦ ବେଳେ ସ୍ୱୟଂ ଜଗନ୍ନାଥ ହିଁ ଏ ଜାତିକୁ ଶକ୍ତି ପ୍ରଦାନ କରିଛନ୍ତି । ଅସ୍ତ୍ରଧାରଣ କରି ଶତ୍ରୁକୁ ପରାଜିତ କରିଛନ୍ତି । ଏଭଳି ଯେଉଁ ଜାତି, ସେଠି ଏପ୍ରିଲ ପହିଲାର ଆବଶ୍ୟକତା କାହିଁକି ପଡ଼ିଲା ? କାରଣ ଏହି ଦିନ ଉତ୍କଳ ଏକ ସ୍ୱତନ୍ତ୍ର ପ୍ରଦେଶ ବୋଲି ମାନ୍ୟତା ଲାଭ କଲା । ତା'ହେଲେ ୧୯୩୬ ମସିହା ଏପ୍ରିଲ ମାସ ପୂର୍ବରୁ ଏହାର ସ୍ଥିତି କ'ଣ ଥିଲା ? ଲୋକେ କିଭଳି ଥିଲେ ? ଭାରତର ଅନ୍ୟାନ୍ୟ ପ୍ରଦେଶର ଲୋକମାନେ ଯଦି ସ୍ୱତନ୍ତ୍ର ପ୍ରଦେଶର ବ୍ୟକ୍ତି ଭାବରେ ଗର୍ବ ଅନୁଭବ କରୁଥିଲେ, ଓଡ଼ିଆମାନେ ତାହା କରିପାରୁ ନଥିଲେ କାହିଁକି ? ଏପରି କାହିଁକି ହୋଇଥିଲା । ଏଥିରୁ ସ୍ପଷ୍ଟ ଅନୁମେୟ, ଯେଉଁ ମଣିଷ ସରଳ, ନିରୀହ ଏବଂ ନିରହଂକାରୀ ତାକୁ ଚତୁରମାନେ ନିଜ ଆଡ଼କୁ ଟାଣି ଥାଆନ୍ତି । ଓଡ଼ିଆ ଜାତି ପକ୍ଷରେ ତାହା ହିଁ ହୋଇଛି । ଗୋଟାଏ ଜାତି ତା'ର ଭାଷା, ସଂସ୍କୃତି ଓ ସାହିତ୍ୟକୁ ନେଇ ଗର୍ବ କରେ । ଯଦି ସେ ଜାତିର ଗୋଡ଼ ହାତ ଟାଣି ଦିଆଯାଏ, ମୁଣ୍ଡଟାକୁ ଏଣେ ତେଣେ କରାଯାଏ, ଶରୀରଟାକୁ ଦୋହଲାଇ ଦିଆଯାଏ, ତା'ହେଲେ ସେ ମଣିଷ ପାଗଳ ହୋଇଯାଏ । ପାଗଳ ମଣିଷ ତା'ର ନିଜତ୍ୱ ହରେଇ ଦିଏ । ଠିକ୍ ସେଇଭଳି ପ୍ରାଦେଶିକ ଶାସକ ଗୋଷ୍ଠୀ, ଚକ୍ରାନ୍ତକାରୀ ପଡ଼ୋଶୀମାନଙ୍କ ଗୋଡ଼ଟଣା ଯୋଗୁଁ ଓଡ଼ିଶା ଖଣ୍ଡବିଖଣ୍ଡିତ ହୋଇ ତା'ର ହୃତ ଗୌରବକୁ ଦୀର୍ଘ ବର୍ଷ ଧରି ହରେଇ ବସିଥିଲା । ସୁଯୋଗ୍ୟ ସନ୍ତାନ ପରିବାରରେ ଜନ୍ମ ନହେଲେ ଯେପରି ପରିବାର ଦୁର୍ବଳ ହୋଇଯାଏ, ଠିକ୍ ସେହିଭଳି ଉତ୍କଳମାତା ଦୀର୍ଘଦିନ ଧରି ପଡ଼ୋଶୀ ରାଜ୍ୟମାନଙ୍କର ଚକ୍ରାନ୍ତ ଜାଲରେ ଛନ୍ଦି ହୋଇ ଅହରହ ବିଳାପ କରୁଥିଲା । ମାଆର କ୍ରନ୍ଦନ ଧ୍ୱନି କେବଳ ଯୋଗ୍ୟ ପୁତ୍ରମାନଙ୍କ କର୍ଣ୍ଣରେ ପଡ଼େ । ଉତ୍କଳ ମାତାକୁ ଉଦ୍ଧାର କରିବା ପାଇଁ ତା' କୋଳରେ ଜନ୍ମ ନେଲେ ଉତ୍କଳ ଗୌରବ ମଧୁସୂଦନ ଦାସ, ଉତ୍କଳମଣି ଗୋପବନ୍ଧୁ ଦାସ, ପାରଳାଖେମୁଣ୍ଡିର ମହାରାଜା କୃଷ୍ଣଚନ୍ଦ୍ର ଗଜପତି, ମୟୂରଭଞ୍ଜର ରାଜା ରାମଚନ୍ଦ୍ର ଭଞ୍ଜଦେଓ ଏବଂ ସର୍ବୋପରି ବହୁ ପ୍ରଖ୍ୟାତନାମା, ଯଶସ୍ୱୀ ସୁଯୋଗ୍ୟ ସନ୍ତାନଗଣ ।

ଇତିହାସର କୋଳମଣ୍ଡନ କରିଛି ଜର୍ମାନୀ ଓ ଇଟାଲୀ ଏକତ୍ରୀକରଣ । ଏହି ଏକତ୍ରୀକରଣର ପ୍ରେରଣା ପ୍ରତ୍ୟେକ ଭାରତୀୟମାନେ ଇତିହାସ ପୃଷ୍ଠାରୁ ପାଇଛନ୍ତି । ଓଡ଼ିଆ ଜାତିର ନମସ୍ୟ ଏବଂ ସର୍ବୋପରି ବିଶିଷ୍ଟ ଆଇନଜ୍ଞ ମଧୁବାବୁଙ୍କ ଉପରେ ଇଟାଲୀ ଏକତ୍ରୀକରଣର ପ୍ରଭାବ ଏପରି ପଡ଼ିଥିଲା ଯେ ସେ ସଂକଳ୍ପ କଲେ ବିଚ୍ଛିନ୍ନ ଓଡ଼ିଆ ଭୂ-ଖଣ୍ଡକୁ ଏକତ୍ରିତ କରି ସର୍ବଭାରତୀୟ ସ୍ତରରେ ଏକ ସ୍ୱତନ୍ତ୍ର ରାଜ୍ୟର ମାନ୍ୟତା ଦେବା ପାଇଁ । ତାହାଙ୍କ ରାଜନୈତିକ ଜୀବନର ପଟ୍ଟଭୂମିରେ ଓଡ଼ିଶାକୁ ଏକ ସ୍ୱତନ୍ତ୍ର ପ୍ରଦେଶର ମାନ୍ୟତା ଦେବା ପାଇଁ ଆପାତତଃ ଯେପରି ସେ ଉତ୍କଳ ଜନନୀ ନିକଟରେ ଶପଥ ପାଠ କରିଥିଲେ । କଂଗ୍ରେସ ଭାରତ ସ୍ୱାଧୀନତାରେ ସକ୍ରିୟ ଅଂଶ ଗ୍ରହଣ କରୁଥିଲେ ମଧ୍ୟ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନରେ ଉଦାସୀନ ରହୁଥିବାରୁ ମଧୁବାବୁ ଖୁବ୍ କ୍ଷୁବ୍ଧ ହୋଇ ଉଠିଥିଲେ । ସେହି କାରଣରୁ ସେ କଂଗ୍ରେସ ସହ ସଂପର୍କ ଛିନ୍ନ କରିଥିଲେ । ପୂର୍ବରୁ ଗଠିତ ଉତ୍କଳସଭାରେ କାର୍ଯ୍ୟ ପରିସର ସୀମିତ ଥିଲା । ତେଣୁ କିପରି ଏହା ବ୍ୟାପକ ହୋଇପାରିବ, ଇଂରେଜ ଶାସକ ଉପରେ ଏହାର ପ୍ରଭାବ ପଡ଼ିବ, ସେଥିପାଇଁ ମଧୁବାବୁ ଏବଂ ଅନ୍ୟାନ୍ୟ ବହୁ ଉତ୍କଳ ହିତୈଶୀ ନେତୃମଣ୍ଡଳୀମାନଙ୍କ ପ୍ରଚେଷ୍ଟାରେ ୧୯୦୩ ମସିହା ଡିସେମ୍ବର ୩୦ ତାରିଖରେ ଉତ୍କଳ ସମ୍ମିଳନୀ ଗଠନ କରାଗଲା । ବିଚ୍ଛିନ୍ନାଞ୍ଚଳ ଓ ଗଡ଼ଜାତ ଅଞ୍ଚଳ ରାଜା, ବହୁ ମାନ୍ୟଗଣ୍ୟ ବ୍ୟକ୍ତି, ଜମିଦାରମାନେ ଏହି ସମ୍ମିଳନୀରେ ସକ୍ରିୟ ଅଂଶ ଗ୍ରହଣ କଲେ । ଉତ୍କଳ ସମ୍ମିଳନୀ

ସ୍ଥାପନର ୧୮ ବର୍ଷ ପୂର୍ବରୁ ମଧୁବାବୁ ବିଚ୍ଛିନ୍ନାଞ୍ଚଳ ଗଠନର ଆନ୍ଦୋଳନ ଆରମ୍ଭ କରିଥିଲେ । ସମ୍ବଲପୁର ଜିଲ୍ଲାକୁ ମଧ୍ୟପ୍ରଦେଶରୁ, ଗଞ୍ଜାମ ଜିଲ୍ଲାକୁ ମାନ୍ଦ୍ରାଜରୁ, ବିଶାଖାପାଟଣା ଜିଲ୍ଲାରୁ ଜୟପୁର ଅଞ୍ଚଳକୁ ଏବଂ ବହୁ ଗଡ଼ଜାତ ଅଞ୍ଚଳକୁ ଓଡ଼ିଶାରେ ମିଶ୍ରଣ କରି ଓଡ଼ିଶାର ଶାସନ ଓ ଶିକ୍ଷା ବ୍ୟବସ୍ଥାରେ ସାମିଲ କରିବା ପାଇଁ ପ୍ରସ୍ତାବ ଦେଇଥିଲେ । ଛୋଟଲାଟ ସାର୍ ରିଚାର୍ଡ଼ ଥମସନଙ୍କୁ ୧୮୮୫ ମସିହାରେ ମଧୁବାବୁ ଏହି ମର୍ମରେ ଏକ ମାନପତ୍ର ଦେଇଥିଲେ । ପୁନର୍ବାର ୧୮୮୮ ଖ୍ରୀ:ଅ: ନଭେମ୍ବର ୪ ତାରିଖରେ ବଙ୍ଗର ଲାଟ୍ ସାର୍ ଷ୍ଟୁଆର୍ଟ ବେଲିଙ୍କୁ ଏହିସବୁ ଓଡ଼ିଆ ଭାଷାଭାଷୀ ଅଞ୍ଚଳଗୁଡ଼ିକୁ ମୂଳ ଓଡ଼ିଶା ସହ ମିଶାଇ ଦେବା ପାଇଁ ସମ୍ବର୍ଦ୍ଧନା ସଭାରେ ମଧୁବାବୁ ଲିଖିତ ଆକାରରେ ଜଣାଇଥିଲେ । ୧୮୯୫ ମସିହା ମେ ମାସ ୧୧ ତାରିଖରେ ମଧୁବାବୁ କଟକରେ ଏକ ସଭାର ଆୟୋଜନ କରିଥିଲେ । ସମ୍ବଲପୁରରେ ହିନ୍ଦୀ ଭାଷା ପ୍ରଚଳନ ଆଦେଶର ପ୍ରତିବାଦ ଏହି ସଭାରେ କରାଯାଇଥିଲା । କାଳବିଳମ୍ବ ନକରି ସମ୍ବଲପୁରକୁ ଓଡ଼ିଶା ସହ ମିଶାଇ ଦେବା ପାଇଁ ମଧ୍ୟ ଏହି ସଭାରେ ସ୍ମାରକପତ୍ର ବଡ଼ଲାଟଙ୍କୁ ପ୍ରଦାନ କରାଯାଇଥିଲା । ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ଏବଂ ଏହାର ଭାଷା, ସାହିତ୍ୟ ଏବଂ ସଂସ୍କୃତିକୁ ରକ୍ଷା କରିବାକୁ ଯାଇ ମଧୁବାବୁ ୧୮୯୭ ମସିହାରେ ଇଂଲଣ୍ଡ ଯାତ୍ରା କରିଥିଲେ । ଇଂଲଣ୍ଡରେ ଓଡ଼ିଶା ପ୍ରଦେଶକୁ ରକ୍ଷା କରିବା ନିମନ୍ତେ ଇଂରେଜ ସାହେବମାନଙ୍କୁ ବୁଝାଇଥିଲେ । ପୁନର୍ବାର ୧୯୦୫ରେ ମଧୁବାବୁ ଦ୍ୱିତୀୟ ଥର ପାଇଁ ଇଂଲଣ୍ଡ ଯାଇ ଭାରତ ଶାସନ ସଚିବ ଲର୍ଡ଼ ମର୍ଲେଙ୍କୁ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ପାଇଁ ଦାବି ଜଣାଇଥିଲେ । ବଡ଼ଲାଟ ଲର୍ଡ଼ କର୍ଜନଙ୍କ ନିକଟରେ ଇଂରେଜ ସରକାରଙ୍କ ଉଦାସୀନତା ସଂପର୍କରେ ଦୃଢ଼ ପ୍ରତିବାଦ ଜଣାଇବା ଫଳରେ ସେ ଓଡ଼ିଶା ଆସି ମଧୁବାବୁଙ୍କ ସହ ଏକମତ ହୋଇଥିଲେ । ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନରେ ମୟୂରଭଞ୍ଜ ରାଜା ରାମଚନ୍ଦ୍ର ଭଞ୍ଜ, ଉତ୍କଳମଣି ଗୋପବନ୍ଧୁ ଏବଂ ସର୍ବୋପରି ପାରଳାଖେମୁଣ୍ଡିର ମହାରାଜା କୃଷ୍ଣଚନ୍ଦ୍ର ଗଜପତିଙ୍କ ତ୍ୟାଗ ଓ ଦାନ ଅବିସ୍ମରଣୀୟ ଓ ଅତୁଳନୀୟ । ଏହି ଯୁଗପୁରୁଷମାନଙ୍କ ଅଦମ୍ୟ ଚେଷ୍ଟା ଯୋଗୁଁ ଉତ୍କଳୀୟଗଣ ଏକ ସ୍ୱତନ୍ତ୍ର ପ୍ରଦେଶର ସ୍ୱାଦ ଚାଖିଲେ । ପ୍ରତ୍ୟେକ ଜାତି ତା'ର ଭାଷା ଓ ସାହିତ୍ୟକୁ ନେଇ ଗର୍ବ କରେ । ଯେଉଁ କବି କଳ୍ପନା ବିଳାସୀ ଭାବୁକ କବିତା ଛନ୍ଦରେ ପ୍ରବନ୍ଧ ମାଧ୍ୟମରେ ଜନଚେତନା ସୃଷ୍ଟି କରିପାରିଲେ, ସେମାନେ ନମସ୍ୟ । ଫକୀର ମୋହନଙ୍କ ଉପନ୍ୟାସ ଗଙ୍ଗାଧରଙ୍କ ସବୁଜ ସାହିତ୍ୟ ସାଙ୍ଗକୁ ମଧୁବାବୁଙ୍କ ଓଜସ୍ୱିନୀ ବକ୍ତବ୍ୟ ଉତ୍କଳକୁ ସ୍ୱତନ୍ତ୍ର ପ୍ରଦେଶର ମାନ୍ୟତା ଦେବାରେ ସାହାଯ୍ୟ କରିଥିଲା । ପାରଳାଖେମୁଣ୍ଡି ଓ ଜୟପୁରକୁ ଓଡ଼ିଶାରେ ମିଶାଇବା ପାଇଁ ମହାରାଜାଙ୍କ ପ୍ରଚେଷ୍ଟା ଚିରକାଳ ଅଭିନନ୍ଦନୀୟ । ତାହାଙ୍କ ଅହରହ ଅକ୍ଳାନ୍ତ ଉଦ୍ୟମକୁ ଇତିହାସ କେବେ ଭୁଲି ପାରିବ ନାହିଁ । ରାଧାନାଥ ରଥ, ହରିହର ମହାପାତ୍ର, ସୂର୍ଯ୍ୟ ନାରାୟଣ ଦାସ ଏବଂ ବ୍ରଜବନ୍ଧୁ ଦାସ ମିଳିତ ଭାବରେ ସେକ୍ରେଟାରୀ ସାର୍ ସାମୁଏଲଙ୍କ ନିକଟକୁ ଜୟପୁର ଓ ପାରଳାଖେମୁଣ୍ଡିକୁ ଓଡ଼ିଶା ପ୍ରଦେଶ ସହ ମିଶାଇବା ନିମନ୍ତେ ଟେଲିଗ୍ରାମ କରି ମହାରାଜାଙ୍କ ପଦକ୍ଷେପକୁ ଆହୁରି କେଇପାଦ ଆଗେଇ ନେଇଥିଲେ । କିନ୍ତୁ ପରିତାପର ବିଷୟ ଯେ ମହାରାଜାଙ୍କ ଶତଚେଷ୍ଟା ସତ୍ତ୍ୱେ ଇଂରେଜ ସରକାରଙ୍କ ପକ୍ଷରୁ ଶ୍ୱେତପତ୍ର ପ୍ରକାଶ ପାଇଲା ଓଡ଼ିଶା ସୀମା ପାରଳାଖେମୁଣ୍ଡି ଓ ଜୟପୁର ଅଞ୍ଚଳକୁ ଛାଡ଼ି । ସେ ବିଶ୍ୱାସ କରିପାରିଲେ ନାହିଁ ଯେ ତାହାଙ୍କ ଅଦମ୍ୟ ଚେଷ୍ଟା ସତ୍ତ୍ୱେ ଓଡ଼ନେଲ ସାହେବ ଏପରି ଘୋଷଣା କାହିଁକି କଲେ ? ଏହି ଚିନ୍ତାରେ ଗଜପତି ନିର୍ବାକ ଓ ନିଷ୍ଫଳ ହୋଇଉଠିଲେ । ମହାରାଜାଙ୍କ ଛଳ ଛଳ ଆଖି ସେଦିନ ଦେୱାନ ସୂର୍ଯ୍ୟନାରାୟଣ ପଟ୍ଟନାୟକଙ୍କୁ ବିଚଳିତ କରି ପକାଇଥିଲା । ସେଦିନ ମହାରାଜା ନିଜେ ନିଜ ଇଷ୍ଟଦେବୀ ମାଣିକେଶ୍ୱରୀଙ୍କୁ ନିଜର ଅସହାୟତା ବିଷୟରେ ଜଣାଇ ଦେଇଥିଲେ । ଓଡ଼ନେଲ ସାହେବଙ୍କ ଶ୍ୱେତପତ୍ର ବିରୁଦ୍ଧରେ ଉତ୍କଳୀୟମାନେ ଏଣେ ସଭାସମିତିର ଆୟୋଜନ କରି ପତ୍ରପତ୍ରିକାରେ ଓଡ଼ନେଲଙ୍କୁ ନିନ୍ଦା କରାଇଲେ । କିନ୍ତୁ ମାଣିକେଶ୍ୱରୀଙ୍କ ଆଦେଶକୁ ଗ୍ରହଣ କରି ମହାରାଜା କୃଷ୍ଣଚନ୍ଦ୍ର ଗଜପତି ଇଂଲଣ୍ଡ ଯାତ୍ରା କଲେ ତୃତୀୟ ଗୋଲ ଟେବୁଲ ବୈଠକରେ ଯୋଗ ଦେବା ପାଇଁ । ଖଲିକୋଟର ରାଜା ରାମଚନ୍ଦ୍ର ମର୍ଦ୍ଦରାଜ ତୃତୀୟ ଗୋଲଟେବୁଲ ବୈଠକରେ ଯୋଗ ଦେବାପାଇଁ ମଧ୍ୟ ଲଣ୍ଡନରେ ଅବସ୍ଥାନ କରୁଥାଆନ୍ତି । ଯାହାହେଉ ସବୁ କଳ୍ପନାର ଅବସାନ ଘଟାଇ ଲର୍ଡ଼ ସାଙ୍କୀଙ୍କ ଅଧ୍ୟକ୍ଷତାରେ ଅନୁଷ୍ଠିତ ପ୍ରତିନିଧି ସଭାରେ ଭାରତ Secretary Samuel Hoare କହିଥିଲେ ଯେ ପାରଳାଖେମୁଣ୍ଡି ଏବଂ ଜୟପୁର ଓଡ଼ିଶା ସୀମା ଭିତରେ ରଖାଗଲା । ଯେଉଁ କରିତ୍କର୍ମା ଯୁଗପୁରୁଷ ଉତ୍କଳଗୌରବ ମଧୁସୂଦନଙ୍କ ପ୍ରତିଷ୍ଠିତ ଉତ୍କଳ ସମ୍ମିଳନୀ ଏବଂ ଉତ୍କଳର ବରେଣ୍ୟ ମହାପୁରୁଷମାନଙ୍କ ପ୍ରଚେଷ୍ଟାରେ ଉତ୍କଳ ପ୍ରଦେଶ ଗଠନ ହେବାକୁ ଯାଉଛି, ଠିକ୍ ତା'ର ଅବ୍ୟବହିତ ପୂର୍ବରୁ ସମସ୍ତ ଓଡ଼ିଶାବାସୀଙ୍କୁ ଶୋକ ସାଗରରେ ଭସାଇ ଦେଇ ୧୯୩୪ ମସିହା ଫେବୃଆରୀ ମାସରେ ଇହଲୀଳା ସମ୍ବରଣ କଲେ । ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନର ରୂପ ନଦେଖି ତା' ପୂର୍ବରୁ ସେ ଚାଲି ଯାଇଥିଲେ ମଧ୍ୟ ତାହାଙ୍କ ପ୍ରଚେଷ୍ଟା ଏ ଜାତିକୁ ଜୀବନ୍ୟାସ ଦେବାରେ ଅବହେଳା କରିନି । ବହୁ ଗଡ଼ଜାତ ଅଞ୍ଚଳର ମିଶ୍ରଣ ପରେ ଓଡ଼ିଶାର କଳେବର ବୃଦ୍ଧି ପାଇଥିଲା । କିନ୍ତୁ ପରିତାପ ଉତ୍କଳୀୟ ପ୍ରାଣରୁ କେବେ ପ୍ରତ୍ୟାହୃତ ହେବ ସେ କଥା ସମୟ କହିବ । ଆପ୍ରାଣ ଉଦ୍ୟମ ସତ୍ତ୍ୱେ ଓଡ଼ିଆ ବ୍ୟଥିତ ଓ ମଥିତ ହୃଦୟରେ ସିଂହଭୂମି, ମେଦିନୀପୁର, ଫୁଲଝର ଓ ମଞ୍ଜୁଷା ଭଳି ବହୁ ଅଞ୍ଚଳ ଏକ ଅନୁଚିନ୍ତାର ସ୍ୱର ବହନ କରି ଚାଲିଥିବ, ଏଥିରେ ତିଳେମାତ୍ର ସନ୍ଦେହ ନାହିଁ । ଓଡ଼ିଶାର ଶାସକ ଏସବୁ ବିଚ୍ଛିନ୍ନାଞ୍ଚଳର ମୁକ୍ତି ପାଇଁ ପ୍ରଚେଷ୍ଟା ଜାରି ନ ରଖିଲେ ଓଡ଼ିଆ ପ୍ରାଣ ଚିରକାଳ ଉଦ୍‌ବେଳିତ ହେଉଥିବ ଏବଂ ସ୍ୱାଧୀନଚେତା ଉତ୍କଳ ଜନନୀ ନିଶ୍ଚୟ ମ୍ରିୟମାଣ ହୋଇ କାଳ କାଟୁଥିବ, ତାହା ଦିବସର ଆଲୋକ ଭଳି ସତ୍ୟ ।

ସହକାରୀ ଶିକ୍ଷକ
ସରକାରୀ ଉଚ୍ଚ ବିଦ୍ୟାଳୟ
ୟୁନିଟ୍-୧, ଭୁବନେଶ୍ୱର

# ଓଡ଼ିଶାର ଐତିହ୍ୟ ଓ ଐଶ୍ୱର୍ଯ୍ୟର ଦୁର୍ଲ୍ଲଭ ଗବେଷକ : ସ୍ୱର୍ଗତଃ ପଣ୍ଡିତ ନୀଳମଣି ମିଶ୍ର

ଡକ୍ଟର ଲାବଣ୍ୟଚନ୍ଦ୍ର ସାହୁ



୧୮୬୭ରୁ ୧୯୯୭, ଏହି ୧୩୦ ବର୍ଷ ବ୍ୟବଧାନ ମଧ୍ୟରେ ଦୁଇ ଜଣ ପ୍ରମୁଖ ନୀଳମଣି ଉତ୍କଳର ପୁଣ୍ୟ ଭୂମିରେ ଜନ୍ମ ଗ୍ରହଣ କରି ସେମାନଙ୍କର କର୍ମମୟ ଜୀବନକୁ ମାତୃଭାଷା ଓ ସଂସ୍କୃତିର ପୁନରୁଦ୍ଧାର ଓ ବିକାଶ ନିମିତ୍ତ ଉତ୍ସର୍ଗ କରି ଅନ୍ତର୍ହିତ ହୋଇଛନ୍ତି ।

ଜଣେ ହେଲେ - ପ୍ରଖ୍ୟାତ ବିଦ୍ୱାନ ପଣ୍ଡିତ ନୀଳମଣି ବିଦ୍ୟାରତ୍ନ । ଊନବିଂଶ ଶତାବ୍ଦୀର ଶେଷ ଦଶନ୍ଧି ତଥା ବିଂଶ ଶତାବ୍ଦୀର ପ୍ରଥମ ଦୁଇ ଦଶନ୍ଧିରେ ସେ ନିଜର ଧୀଶକ୍ତିର ବିନିଯୋଗ କରି ଓଡ଼ିଆ ଭାଷା, ସାହିତ୍ୟ, ସଂସ୍କୃତି ତଥା ସମାଜ ସଂସ୍କାର କ୍ଷେତ୍ରରେ ଜାଗରଣର ତୂର୍ଯ୍ୟନାଦ କରିଥିଲେ । ଓଡ଼ିଶାର ବଳିଷ୍ଠ ଭାଷା ଗଠନ ତଥା ସାଂସ୍କୃତିକ ଇତିହାସର ପୁନର୍ନିର୍ମାଣ କ୍ଷେତ୍ରରେ ଅମୀତ ଗୌରବ ଅର୍ଜନ କରିଥିବା 'ସମ୍ବଲପୁର ହିତୈଷିଣୀ'ର ଏହି ସୁଯୋଗ୍ୟ ସଂପାଦକ ନୀଳମଣି ମିଶ୍ର (ପରେ ନୀଳମଣି ବିଦ୍ୟାରତ୍ନ) ବାଙ୍କୀ ବୈଦ୍ୟେଶ୍ୱର ଗ୍ରାମରେ ତା.୧୪.୧୨.୧୮୬୭ରିଖରେ ଜନ୍ମ ଗ୍ରହଣ କରିଥିଲେ ।

ଶିକ୍ଷକରୁ ସଂପାଦକ (ଉତ୍କଳ ମଧୁପ, ପ୍ରଜାବନ୍ଧୁ, ଗଞ୍ଜାମ ଗୁଣ ଦର୍ପଣ), ସମାଜ ସଂସ୍କାରକ ତଥା ଭାଷା, ସାହିତ୍ୟ, ସଂସ୍କୃତିର ଜଣେ ବଳିଷ୍ଠ ଉଦ୍‌ଗାତା ଭାବରେ ନିଜର ପଦଚିହ୍ନ ରଖି ଶେଷରେ ତା.୨୬.୭.୧୯୨୩ରିଖରେ ମର ଜଗତରୁ ବିଦାୟ ନେଲେ ।

ଏହାପରେ ୧୯୨୯ ମସିହାରେ ଜନ୍ମ ନେଲେ ଆଉ ଜଣେ ନୀଳମଣି । ସେ' ବି ପଣ୍ଡିତ ନୀଳମଣି ମିଶ୍ର ନାମରେ ପରିଚିତ । ତାଙ୍କର କର୍ମମୟ ଜୀବନକାଳ ମଧ୍ୟରେ ଓଡ଼ିଶାର ପ୍ରାଚୀନ ପରମ୍ପରା, ଇତିହାସ, ଧର୍ମ, ସଂସ୍କୃତି, କଳା, ଜ୍ୟୋତିଷ, ପ୍ରତ୍ନତତ୍ତ୍ୱ ସମ୍ବନ୍ଧିତ ଅବଲୁପ୍ତ ଓ ବିସ୍ମୃତପ୍ରାୟ ପୋଥି ସାହିତ୍ୟର ପୁନରୁଦ୍ଧାର କରି ହୃତଗୌରବର ପୁନଃପ୍ରତିଷ୍ଠା କରିଛନ୍ତି ।

**ବାଲ୍ୟଜୀବନ ଓ ଶିକ୍ଷା**

ସ୍ୱର୍ଗତଃ ପଣ୍ଡିତ ନୀଳମଣି ମିଶ୍ର ଭଦ୍ରକ (ଅଧୁନା ଜିଲ୍ଲା)ର ଚରମ୍ପା ଗ୍ରାମରେ ତା.୧୨.୪.୧୯୨୯ ମସିହାରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ପୁରୁଷୋତ୍ତମ ମିଶ୍ର । ମାତାଙ୍କ ନାମ ଗେହ୍ଲେଇ ଦେବୀ । ତାଙ୍କ ବାପା ଗ୍ରାମର ହନୁମାନ ମନ୍ଦିରର ପୂଜକ ଥିଲେ ତଥା ଆଖପାଖ ଗାଁର ଯଜମାନି କରି ପରିବାର ଚଳାଉ ଥିଲେ । ଯେତେବେଳେ ନୀଳମଣିଙ୍କୁ ମାତ୍ର ୭ ବର୍ଷ ବୟସ, ତାଙ୍କ ବାପାଙ୍କ ମୃତ୍ୟୁ ହୋଇଥିଲା । ଏଣୁ ନୀଳମଣିଙ୍କ ବାଲ୍ୟକାଳ ନାନା ଦୁଃଖ ତଥା ଅନାଟନରେ କଟିଥିଲା । ଜଣେ ବିଧବା ବ୍ରାହ୍ମଣୀର ଅମନଯୋଗୀ ପୁତ୍ର ନୀଳମଣି ବାଲ୍ୟକାଳରୁ ବଞ୍ଚିବା ପାଇଁ ସଂଘର୍ଷ କରି ଚାଲିଥିଲେ । ଏଣୁ ତାଙ୍କର ବାଲ୍ୟଶିକ୍ଷା ବିଳମ୍ବରେ ଆରମ୍ଭ ହୋଇଥିଲା । ତାଙ୍କୁ ଯେତେବେଳେ ୧୯ ବର୍ଷ ବୟସ, ତାଙ୍କ ମା'ଙ୍କର ମଧ ମୃତ୍ୟୁ ଘଟିଲା ।

ଗ୍ରାମ ଚାଟଶାଳୀରେ ପାଠ ଆରମ୍ଭ କରି ଶେଷରେ ଭଦ୍ରକର ସଦାବର୍ତ୍ତ ମଠ (ଟୋଲ୍)ରେ ସଂସ୍କୃତ ଶିକ୍ଷା କଲେ । ଏହା ପରେ ଅଧିକ ଶିକ୍ଷା ପାଇଁ ପୁରୀକୁ ଆସିଲେ । ଏଠାରେ ସଂସ୍କୃତ ମହାବିଦ୍ୟାଳୟରେ ସାହିତ୍ୟ ବିଭାଗରେ ନାମ ଲେଖାଇ ୪ ବର୍ଷ ପଢ଼ିଲେ । ଏହି ସମୟରେ ତାଙ୍କର ଖୋରାକ ପୋଷାକ ଗଣ୍ଡାକ ଯୋଗାଡ଼ ପାଇଁ ଦୁର୍ଦ୍ଦଶାର ଅନ୍ତ ନଥିଲା । ଏପରିକି ଗୋଟିଏ ମଠରେ ରୋଷେଇ କରି ତାଙ୍କୁ ନିଜର ଦୁଇଓଳି ଆହାର ଯୋଗାଡ଼ କରିବାକୁ ପଡ଼ିଥିଲା । ବେଳେବେଳେ ତାଙ୍କୁ ଓଳିଏ ଖାଇ ଅଥବା ଉପାସରେ ଦିନ କାଟବାକୁ ପଡୁଥିଲା । ପରିଧାନ ବୋଲି ଖଣ୍ଡିଏ ଧୋତି, ଖଣ୍ଡିଏ କାମିଜ ଓ ଗୋଟିଏ ଗାମୁଛା । ତଥାପି ନୀଳମଣି ସବୁ କଷ୍ଟ ସମ୍ଭାଳି ପଢ଼ାରେ ମନଯୋଗୀ ହୋଇଥିଲେ । ତାଙ୍କର ଏହି କଷ୍ଟ ସହିଷ୍ଣୁତା ଗୁଣ ପରବର୍ତ୍ତୀ କାଳରେ ସାହାଯ୍ୟ କରିଥିଲା ।

ଏହି ପୁରୀରେ ଅଧ୍ୟୟନ କାଳରେ ସେ ରାଷ୍ଟ୍ରଭାଷା ପ୍ରଚାର କାର୍ଯ୍ୟକ୍ରମରେ ଆଗ୍ରହୀ ହୋଇ ଭାଗ ନେଇଥିଲେ, ଯାହା ତାଙ୍କୁ ପରବର୍ତ୍ତୀ କାଳରେ ମଧ୍ୟ ହିନ୍ଦୀ ଭାଷାର ଜଣେ ସଫଳ ସ୍ରଷ୍ଟା ଓ ଅନୁବାଦକ ଭାବରେ ବିପୁଳ ଖ୍ୟାତି ଆଣି ଦେଇଥିଲା ।

**ବୃତ୍ତି ଓ କର୍ମମୟ ଜୀବନ**

ପୁରୀରୁ ଶିକ୍ଷା (ସାହିତ୍ୟାଚାର୍ଯ୍ୟ) ସମ୍ପନ୍ନ ପରେ ନୀଳମଣି, ନିଜ ଗ୍ରାମକୁ ଫେରିଆସି ଜୀବିକା ଖୋଜିଲେ । ନିଜ ଗ୍ରାମ ଚରମ୍ପାର ରାମଚନ୍ଦ୍ର ବିହାରୀ ଲାଲ ଉଚ୍ଚ ବିଦ୍ୟାଳୟରେ ୧୯୫୨ରୁ ୧୯୫୫ ଯାଏ ଅଳ୍ପ ବେତନରେ ସଂସ୍କୃତ ଓ ହିନ୍ଦୀ ଶିକ୍ଷକ ଭାବରେ ପଢ଼ାଇଲେ । ଏହି ସମୟରେ ସେ ଗ୍ରାମର କିଛି ଉନ୍ନତିମୂଳକ କାର୍ଯ୍ୟ ମଧ କରିଥିଲେ । ପିତୃମାତୃହୀନ ନୀଳମଣିଙ୍କର ଦୁର୍ଦ୍ଦିନରେ ତାଙ୍କର ବାଲ୍ୟବନ୍ଧୁ ଶ୍ରୀ ହରିଚରଣ ଅଗ୍ରୱାଲ ତଥା ଶ୍ରୀ ଗୌରାଙ୍ଗ ମହାପାତ୍ର ସାହାଯ୍ୟ କରିଥିବାରୁ ପରବର୍ତ୍ତୀ କାଳରେ ସେ ନିଜର କୃତଜ୍ଞତା ପ୍ରକାଶ କରିଛନ୍ତି ।

ସାହିତ୍ୟାଚାର୍ଯ୍ୟ ପରେ ନିଜର ଶ୍ରମ ଓ ଅଧ୍ୟୟନ ବଳରେ ସେ ରାଷ୍ଟ୍ରଭାଷା ରତ୍ନ ତଥା ପ୍ରାଚ୍ୟ ଭାଷା ସ୍ନାତକ (Bachelor of Oriental Language) ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିଲେ ।

**କର୍ମସ୍ଥଳୀ : ଓଡ଼ିଶା ରାଜ୍ୟ ସଂଗ୍ରହାଳୟ**

ଜୀବନରେ ଅତି ମହତ ଆକାଂକ୍ଷା ପୋଷଣ କରୁଥିବା ନୀଳମଣିଙ୍କ ପାଇଁ ଗ୍ରାମ୍ୟ ଶିକ୍ଷକ ଜୀବନ ଯଥେଷ୍ଟ ନଥିଲା । ସେ ଏକ ପ୍ରଶସ୍ତ ପରିବେଶର ସନ୍ଧାନରେ ଥିଲେ । ଏଣୁ ଚରମ୍ପା ହାଇସ୍କୁଲର ଶିକ୍ଷକତା ଛାଡ଼ି ଓଡ଼ିଶାର ଐତିହ୍ୟର ପ୍ରଜ୍ଞାପୀଠ ରାଜ୍ୟ ସଂଗ୍ରହାଳୟରେ ୧୯୫୬ ମସିହା ଜାନୁଆରୀ ୧ ତାରିଖରେ ଜଣେ ପାଣ୍ଡୁଲିପି ପାଠକ ଭାବରେ ଯୋଗ ଦେଲେ । ଏହିଠାରେ ସୁଦୀର୍ଘ ୩୧ ବର୍ଷ କାଳ ନିଷ୍ଠାପର ଭାବରେ କାମ କରି ଶେଷରେ ତା.୩୦.୪.୧୯୮୭ରିଖରେ 'କ୍ୟୁରେଟର' ପଦରୁ ଅବସର ନେଲେ । ଏହିଠାରେ ସେ ପ୍ରଖ୍ୟାତ ଲିପିତତ୍ତ୍ୱବିଦ୍ ଡ. ସତ୍ୟନାରାୟଣ ରାଜଗୁରୁ, ପ୍ରସିଦ୍ଧ ଐତିହାସିକ ପରମାନନ୍ଦ ଆଚାର୍ଯ୍ୟ, କେଦାରନାଥ ମହାପାତ୍ର, ଡ. ସୁଶୀଳ କୁମାର ଦେ' ପ୍ରଭୃତି ବିଦ୍ୱାନଙ୍କ ଦ୍ୱାରା ପ୍ରଭାବିତ ହେଲେ । ସେମାନଙ୍କର ପ୍ରେରଣା ଓ ଉପଦେଶ ଲାଭ କରି ବହୁ ପ୍ରାଚୀନ ପୋଥିର ସନ୍ଧାନ କଲେ । ରାଜ୍ୟ ସଂଗ୍ରହାଳୟର ମାହାତ୍ମ୍ୟ ବୌଦ୍ଧିକ ପରିବେଶ ଓ ସଜ୍ଜନ ସଂଗତିରୁ ତାଙ୍କର ବ୍ୟକ୍ତିତ୍ୱ ବିକଶିତ ହେବାକୁ ଲାଗିଲା ।

ରାଜ୍ୟ ସଂଗ୍ରହାଳୟରେ ପୋଥି ବିଭାଗରେ କାର୍ଯ୍ୟ କରୁଥିବାବେଳେ ପ୍ରାଚୀନ ଓ ମଧ୍ୟଯୁଗୀୟ ଅନ୍ଧାର ଶାମୁକା ଗର୍ଭରୁ ଓଡ଼ିଆ ସାହିତ୍ୟ, ସଂସ୍କୃତି, କଳା, ସଂଗୀତ, ଜ୍ୟୋତିଷ, ବିଜ୍ଞାନ, ପ୍ରତ୍ନତତ୍ତ୍ୱ, ପୁରାଣ, ଦର୍ଶନ, ଧର୍ମ, ଭାସ୍କର୍ଯ୍ୟର ୪୦୦୦ ଦୁର୍ଲ୍ଲଭ ମୁକ୍ତା ସଦୃଶ ଦୁଷ୍ପ୍ରାପ୍ୟ ପୋଥି ଉଦ୍ଧାର କରିଥିଲେ । ସେଗୁଡ଼ିକର ପଞ୍ଜୀକରଣ, ପାଠୋଦ୍ଧାର ସହିତ ସମ୍ପାଦନା ତଥା ଗବେଷଣା ଧର୍ମୀ ଟିପ୍ପଣୀ ଲିପିବଦ୍ଧ କରିଥିଲେ । ଏହିଠାରେ ସେ ନିଜର ପାଣ୍ଡିତ୍ୟର ପରିଚୟ ଦେଇ ପଣ୍ଡିତ ନୀଳମଣି ମିଶ୍ର ଭାବରେ ପରିଚିତ ହେଲେ ।

ଓଡ଼ିଶାରେ ୧୬ଶ ଶତାବ୍ଦୀ ପୂର୍ବରୁ କାଗଜର ପ୍ରଚଳନ ନଥିବାରୁ ବିଦ୍ୱାନ ପଣ୍ଡିତଗଣ ତନ୍ତ୍ର, ଶିଳ୍ପ, ଜ୍ୟୋତିଷ, ବ୍ୟାକରଣ, କାବ୍ୟ ଆଦି ବିଦ୍ୟା ବିଷୟକୁ ତାଳପତ୍ର ଓ ଭୂଜପତ୍ରରେ ଲୁହା ଲେଖନୀରେ ଲେଖିଯାଇଛନ୍ତି । ତାହା ବିଭିନ୍ନ ମଠ, ରାଜ ଦରବାର, ପାଠାଗାର, ଚୁଙ୍ଗୀ ତଥା ବ୍ୟକ୍ତି ବିଶେଷଙ୍କଠାରେ ବିକ୍ଷିପ୍ତ ଭାବରେ ରହିଥିବାରୁ ତାହାର ସଂଗ୍ରହ କଷ୍ଟସାଧ ଥିଲା ।

ରାଜ୍ୟ ସଂଗ୍ରହାଳୟର ପୋଥି ବିଭାଗରେ ଯିଏବି ପଣ୍ଡିତ ମିଶ୍ରଙ୍କୁ ଭେଟିଛି, ଦେଖିଛି ଚାରିପାଖରେ, ବେଞ୍ଚଚୌକୀ ଉପରେ ବିଡ଼ାବିଡ଼ା ତାଳପତ୍ର ପୋଥି, ଟେବୁଲ୍ ଉପରେ ଅଧାମେଲା ପୋଥି, ବାଁ ହାତରେ ପୋଥି ମେଲାଇ ଧରି ଡାହାଣ ହାତରେ କଲମ ଧରି ଏକ ଲୟରେ ଚାଲିଥାଏ 'ତାଳପତ୍ର ପୋଥିର ସୂଚନାତ୍ମକ ବିବରଣୀ'ର ପ୍ରସ୍ତୁତି ।

ଐତିହାସିକ କେଦାରନାଥ ଯେଉଁ ପୋଥି ବିଭାଗରେ ପ୍ରାରମ୍ଭିକ କାର୍ଯ୍ୟ ଆରମ୍ଭ କରି 'ପୋଥିନାଥ'ର ଆଖ୍ୟା ଅର୍ଜନ କରିଥିଲେ, ତାଙ୍କରି ଉତ୍ତରାଧିକାରୀ ଭାବରେ ନୀଳମଣିଙ୍କୁ ସମସ୍ତେ 'ପୋଥିମଣି' ବୋଲି କହିବାକୁ ଲାଗିଲେ । ତାଳପତ୍ର ପୋଥିଗୁଡ଼ିକରେ ସନ୍ନିବିଷ୍ଟ ବିଷୟଗୁଡ଼ିକର ଉପଯୁକ୍ତ ପାଠୋଦ୍ଧାର ଓ ସମ୍ପାଦନା ହେବା ଫଳରେ ଏହା ପୁସ୍ତକ ଆକାରରେ ଅଥବା ପତ୍ରପତ୍ରିକାରେ ପ୍ରକାଶିତ ହୋଇ ଲୋକଲୋଚନକୁ ଆସିଲା । ଫଳତଃ ଓଡ଼ିଶାର ପ୍ରାଚୀନ ଐତିହ୍ୟ ଓ ଐଶ୍ୱର୍ଯ୍ୟର ଗାଥା ସମସ୍ତଙ୍କୁ ଚମକୃତ କଲା । ସର୍ବଭାରତୀୟ ସ୍ତରରେ ଓଡ଼ିଶାର ସ୍ୱାଭିମାନ ପୁନଃପ୍ରତିଷ୍ଠା ଲାଭ କଲା ।

ପଣ୍ଡିତ ନୀଳମଣି ନିଜର ପଥପ୍ରଦର୍ଶକ କେଦାରନାଥଙ୍କ ସହ ମିଶି ବିଭିନ୍ନ ଗାଁଗଣ୍ଡାର ଲୋକଙ୍କୁ ସାଉଁଳେଇ, କାହାକୁ ଅର୍ଥ ପ୍ରଲୋଭନ ଦେଖାଇ, ପୋଥିସଂଗ୍ରହ କରିଥିଲେ । ସେଥିରୁ ଧୂଳିମଳି ଝାଡ଼ି ଆଦରଯତ୍ନ ସହକାରେ ସଜାଡ଼ି ରଖୁଥିଲେ । ନିରୀକ୍ଷଣ ଓ ଅଧ୍ୟୟନପୂର୍ବକ ଆଧୁନିକ ଢଙ୍ଗରେ ସଂକଳନ କରୁଥିଲେ । ସଂସ୍କୃତ ଓ ଓଡ଼ିଆ ବ୍ୟତୀତ, ଓଡ଼ିଶାର ବିଭିନ୍ନ ପ୍ରାନ୍ତରରୁ ପ୍ରାପ୍ତ ପର୍ସିଆନ୍, ବଙ୍ଗଳା, ତେଲୁଗୁ, ଦେବନାଗରୀ ଲିପିର ଲିଖିତ ବହୁ ପୋଥିର ସେ ବର୍ଗୀକରଣ ମଧ କରିଥିଲେ ।

ଏହି କ୍ଷେତ୍ରରେ ସାର୍ ଉଇଲିୟମ୍ ଜୋନ୍ସ ଥିଲେ ପ୍ରଥମ । ତାଳପତ୍ର, ଭୂଜପତ୍ର, ପୋଥି ସଂଗ୍ରହ, ସଂରକ୍ଷଣ ତଥା ଗବେଷଣାର ପ୍ରଥମ ମାର୍ଗ ଦର୍ଶକ । ତାଙ୍କ ଦେଖାଦେଖି ବହୁ ପ୍ରାଚ୍ୟ ଓ ପାଶ୍ଚାତ୍ୟ ଗବେଷକ ଓଡ଼ିଶାର ତାଳପତ୍ର ପୋଥି ପ୍ରତି ଆଗ୍ରହ ପ୍ରକାଶ କରି ଏହାର ଗବେଷଣା ଚଳାଇ ଥିଲେ । ନିଜେ ନୀଳମଣି ଏହି କାର୍ଯ୍ୟରେ ନିମଜ୍ଜମାନ ହେବା ସହିତ ଆଗ୍ରହୀ ଗବେଷକ, ଛାତ୍ର ଓ ଅଧ୍ୟାପକଙ୍କୁ ଅକୁଣ୍ଠ ଚିତ୍ତରେ ସାହାଯ୍ୟ କରୁଥିଲେ ।

ତାଳପତ୍ର ପୋଥିରୁ ଉଦ୍ଧାର କରି ବଳିଷ୍ଠ ପ୍ରମାଣ ସହିତ ପଣ୍ଡିତ ନୀଳମଣି ମିଶ୍ର ପ୍ରମାଣିତ କରି ଦେଇଥିଲେ ଯେ ସର୍ବଭାରତୀୟ ସ୍ତରରେ

ଖ୍ୟାତି ଅର୍ଜନ କରିଥିବା ସଂସ୍କୃତ କବି ବିଷ୍ଣୁ ଶର୍ମା, ଭଟ୍ଟ ନାରାୟଣ, ଶ୍ରୀହର୍ଷ, ଏହି ଓଡ଼ିଶା ମାଟିରେ ଜନ୍ମି ଥିଲେ । ସଂସ୍କୃତି ସାହିତ୍ୟକୁ ଓଡ଼ିଶାର ବିଦ୍ୱାନ ପଣ୍ଡିତମାନଙ୍କ ବିପୁଳ ଅବଦାନ ସଂପର୍କରେ ସେ ସନ୍ଦର୍ଭ ଲେଖି ଲୋକଲୋଚନକୁ ଆଣିଥିଲେ ।

ଜୟଦେବଙ୍କ ଅମରକୃତି ଗୀତଗୋବିନ୍ଦ ଉପରେ ପଣ୍ଡିତ ମିଶ୍ରଙ୍କର ଗବେଷଣା ଥିଲା - ସବୁଠାରୁ ତାତ୍ପର୍ଯ୍ୟପୂର୍ଣ୍ଣ । ସେ ନିଜେ ପଶ୍ଚିମବଙ୍ଗର ଅଜୟ ନଦୀ ତୀରବର୍ତ୍ତୀ ବୀରଭୂମି ଜିଲ୍ଲା ତଥା ଓଡ଼ିଶାର ପ୍ରାଚୀନଦୀ ତୀରବର୍ତ୍ତୀ କେନ୍ଦୁଲି (କେନ୍ଦୁବିଲ୍ୱ) ଗ୍ରାମ ପରିଦର୍ଶନ କରି, ଜୟଦେବଙ୍କ ପ୍ରକୃତ ଜନ୍ମସ୍ଥାନ ଓଡ଼ିଶାର କେନ୍ଦୁଲିଗ୍ରାମ ବୋଲି ଅକାଟ୍ୟ ପ୍ରମାଣ ସହ ଉପସ୍ଥାପନ କରିଥିଲେ । ଫଳତଃ ଯେଉଁମାନେ ଜୟଦେବଙ୍କୁ ନିଜ ରାଜ୍ୟର କବି ବୋଲି ଆସ୍ଫାଳନ କରୁଥିଲେ, ସେମାନେ ସେଥିରୁ ନିବୃତ୍ତ ହେଲେ ।

### ସୃଷ୍ଟି ସମ୍ଭାର ଓ ସ୍ରଷ୍ଟା ନୀଳମଣି

ଅନୁକୂଳ ବୌଦ୍ଧିକ ପରିବେଶ, ସଜ୍ଜନ ସଂଗତି, ଗଭୀର ଅଧ୍ୟୟନ ତୃଷ୍ଣା, ନିରଳସ ଶ୍ରମ, ସାଧନା ଓ ନିଷ୍ଠା ଗବେଷଣା ପ୍ରବଣତା, ଧୈର୍ଯ୍ୟ ତଥା ସହିଷ୍ଣୁତା ସହିତ ହିନ୍ଦୀ, ବଙ୍ଗଳା, ସଂସ୍କୃତ ଆଦି ବହୁଭାଷାର ପ୍ରଗଳ୍‌ଭ ପାଣ୍ଡିତ୍ୟ ତାଙ୍କଠାରେ ଗ୍ରନ୍ଥ ରଚନାର ଆତୁରତା ସୃଷ୍ଟି କରିପାରିଥିଲା ବୋଲି କୁହାଯାଇପାରେ ।

ତାଙ୍କ ଚତୁପାର୍ଶ୍ୱରେ ଯେଉଁମାନେ ଯେଉଁ କ୍ଷେତ୍ରରେ ଥିଲେ ବି ସେମାନେ ସବୁଥିଲେ ଜ୍ଞାନରେ ଗରିଷ୍ଠ, ବୟସରେ ବରିଷ୍ଠ, ବିଦ୍ୟାବିନୟ ନିପୁଣ ତଥା ସମ୍ମାନାସ୍ପଦ । ସେମାନଙ୍କ ମଧ୍ୟରେ ଥିଲେ ପ୍ରଖ୍ୟାତ ଐତିହାସିକ ଓ ରାଜନେତା ଡ. ହରେକୃଷ୍ଣ ମହତାବ, ସୁସାହିତ୍ୟିକ ଜାନକୀ ବଲ୍ଲଭ ପଟ୍ଟନାୟକ, ଐତିହାସିକ ପରମାନନ୍ଦ ଆଚାର୍ଯ୍ୟ, ଲିପି ତତ୍ତ୍ୱବିତ୍ ଡ. ସତ୍ୟନାରାୟଣ ରାଜଗୁରୁ, ବିଶିଷ୍ଟ ସାହିତ୍ୟିକ ମାୟାଧର ମାନସିଂହ, ଐତିହାସିକ କୃଷ୍ଣଚରଣ ପାଣିଗ୍ରାହୀ, କେଦାରନାଥ ମହାପାତ୍ର, ନବୀନ କୁମାର ସାହୁ ଇତ୍ୟାଦି । ତେଣୁ ସେମାନଙ୍କ ସଂସ୍ପର୍ଶରେ ଆସି ତଥା ପ୍ରେରଣା ଲାଭ କରି ସେ ସାରସ୍ୱତ ସର୍ଜନାରେ ମଗ୍ନ ଥିଲେ । ମୌଳିକ ପୁସ୍ତକ ସମେତ ଶତାଧିକ ପୁସ୍ତକର ସମ୍ପାଦନା ତଥା ଅନୁବାଦ କାର୍ଯ୍ୟ ସେ କରିଥିଲେ । ତାଙ୍କର ସାରସ୍ୱତ କୃତି ଭିତରେ ଥିଲା -

| | |
|---|---|
| ମୌଳିକ ରଚନା - | ୩୫ ଖଣ୍ଡ |
| ଅନୁବାଦ ଗ୍ରନ୍ଥ - | ୨୧ ଖଣ୍ଡ |
| ସମ୍ପାଦିତ ଗ୍ରନ୍ଥ - | ୨୭ ଖଣ୍ଡ |
| ଶିଶୁ ସାହିତ୍ୟ - | ୮ ଖଣ୍ଡ |

ଏହାବ୍ୟତୀତ ୧୫ ଖଣ୍ଡରୁ ଉର୍ଦ୍ଧ୍ୱ ଅପ୍ରକାଶିତ ପାଣ୍ଡୁଲିପି ଅଛି, ସେଗୁଡ଼ିକ ମଧ୍ୟରେ - ପୁରାଣ, ଧର୍ମ, ନାଟକ, କାବ୍ୟ, କବିତା, ଉପନ୍ୟାସ, ଗଳ୍ପ, ଇତିହାସ, ଜୀବନୀ, ବିଜ୍ଞାନ, ପ୍ରତ୍ନତତ୍ତ୍ୱ, ଶିଶୁ ସାହିତ୍ୟ ଇତ୍ୟାଦି । ଏହାର ବିବରଣୀ ନିମ୍ନରେ ପ୍ରଦତ୍ତ ହେଲା -

### କ. ମୌଳିକ ରଚନା -

ଓଡ଼ିଆ ରାମ ସାହିତ୍ୟ (ଓ.ସା.ଏ.-୧୯୬୦), ଓଡ଼ିଶା ସଂସ୍କୃତ ଲେଖା ଓ ଲେଖକ (ଓ.ସା.ଏ.-୧୯୬୯), ଓଡ଼ିଆ କବି ଓ କାବ୍ୟ (ଓ.ସା.ଏ. - ୧୯୬୯), ଓଡ଼ିଆ ନାଟକ ଔର ରଙ୍ଗମଞ୍ଚ (ହିନ୍ଦୀ ଅଭିନବ ଭାରତୀ, ଆହ୍ଲାବାଦ - ୧୯୭୨), ଓଡ଼ିଆ ପୋଇ ସାହିତ୍ୟ (ଓ.ସା.ଏ. - ୧୯୭୨), ଉତ୍କଳୀୟ ରାମ ସାହିତ୍ୟ (ହିନ୍ଦୀ - ପୁରସ୍କୃତ : ଅଭିନବ ଭାରତୀୟ, ଆହ୍ଲାବାଦ - ୧୯୭୫), ଆଲୋଚନା (ରାଷ୍ଟ୍ରଭାଷା ପ୍ରକାଶନ, କଟକ - ୧୯୭୬), ପ୍ରାଚୀନ ଓଡ଼ିଆ ଲିପି ଭାଷା ସାହିତ୍ୟ (ଗ୍ରନ୍ଥ ମନ୍ଦିର, କଟକ - ୧୯୭୬), ଭକ୍ତକବି ସାଲବେଗ, ଜୀବନୀ ଓ ପଦାବଳୀ : ଗ୍ରନ୍ଥ ମନ୍ଦିର ୧୯୭୬), ଭକ୍ତକବି ବାଲିଗାଁ ଦାସ, ଜୀବନୀ ଓ ରଚନା (ଗ୍ରନ୍ଥ ମନ୍ଦିର - ୧୯୭୮) ଭାରତୀୟ ତନ୍ତ୍ର ଶାସ୍ତ୍ର (ରାଷ୍ଟ୍ରଭାଷା ପ୍ରେସ୍ - ୧୯୭୯), ଭକ୍ତକବି ସୁରଦାସ : ଜୀବନୀ ଓ ପଦ୍ୟାବଳୀ (ଗ୍ର. ମନ୍ଦିର - ୧୯୭୯), ଭକ୍ତକବି ତୁଳସୀ ଦାସ : ଜୀବନୀ, ଆଲୋଚନା ଓ ପଦ୍ୟାବଳୀ (ଗ୍ରନ୍ଥ ମନ୍ଦିର - ୧୯୮୦), ଓଡ଼ିଆ ଗୀତିକାବ୍ୟର ଭୂମି ଓ ଭୂମିକା (ପୁସ୍ତକ ଭଣ୍ଡାର - ୧୯୮୦), କବି ବନମାଳୀ ଦାସ (ଓ.ସା.ଏ. - ୧୯୮୦), କବି ଜଗନ୍ନାଥ ପାଣି (ସୁଶ୍ରୀ ପ୍ରକାଶନୀ - ୧୯୮୨), ଓଡ଼ିଶାରେ ସଂସ୍କୃତ ଚର୍ଚ୍ଚାର ପରମ୍ପରା (ଓ.ସା.ଏ - ୧୯୮୨), ଓଡ଼ିଆ ଅଣଓଡ଼ିଆ କବିଙ୍କ ଭାଷାନ୍ତର ରଚନା (ଓ.ସା.ଏ.-୧୯୮୨), ଓଡ଼ିଆ ତାନ୍ତ୍ରିକ କଳା (ଓ.ସା.ଏ.-୧୯୮୨), ଓଡ଼ିଆ କାବ୍ୟଧାରା (ଓ.ସା.ଏ. - ୧୯୮୨), ପୋଥିଘର (ଓ.ସା.ଏ. - ୧୯୮୨), ଐତିହାସିକ କେଦାରନାଥ (କେଦାରନାଥ ଗବେଷଣା ପ୍ରତିଷ୍ଠାନ - ୧୯୮୩), ସଂପୂର୍ଣ୍ଣ କଥା ଭାଗବତ (ଗ୍ର.ମ. - ୧୯୮୪), Salabega (English-Rastrabhasa Press), ଛଇଳା ରାଧା (ଉପନ୍ୟାସ - ୧୯୮୭), ଶିବପୁରାଣ କଥା (ଗ୍ର.ମ. - ୧୯୮୭) ସନ୍ଥ କବୀର ଦାସ - ଜୀବନୀ ଓ ପଦ୍ୟାବଳୀ (ଗ୍ର.ମ. - ୧୯୮୯), ବିଷ୍ଣୁ ପୁରାଣ କଥା (ଗ୍ର.ମ. - ୧୯୮୯), ବାମନ ପୁରାଣ କଥା (ଗ୍ର.ମ. - ୧୯୯୦) ମାର୍କଣ୍ଡେୟ ପୁରାଣ କଥା (ଗ୍ର.ମ. - ୧୯୯୦), କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ (ଓ.ସା.ଏ. - ୧୯୯୧), ବରାହ ପୁରାଣ କଥା (ଗ୍ର.ମ. - ୧୯୯୧), ମତ୍ସ୍ୟ ପୁରାଣ କଥା (ଗ୍ର.ମ. - ୧୯୯୫), ଭାରତ ଦର୍ଶନ : ତୀର୍ଥ ଭ୍ରମଣ (କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର - ୧୯୯୬) ।

### ଖ. ଅନୁଦିତ ଗ୍ରନ୍ଥ -

ବାମମାର୍ଗ (ଗ୍ରନ୍ଥ ମନ୍ଦିର - ୧୯୬୭), ମୋ ପତି ମୋ ଦେବତା (କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର - ୧୯୬୮), କାଶ୍ମୀର ଏକ

ସ୍ୱପ୍ନିଳ ବାସ୍ତବ (ସନ୍ତୋଷ ପବ୍ଲିକେସନ - ୧୯୭୨), ମୃଗନୟନା (୧୯୭୨), ଦରବାର ରହସ୍ୟ (କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର - ୧୯୭୭), ଯଯାତି (ଗ୍ରନ୍ଥ ମନ୍ଦିର - ୧୯୮୦), ମଶାଣିର ଦୀପ (ଗ୍ର.ମ. - ୧୯୮୦), ବୁଢ଼ୀ ମା' (ଗ୍ର.ମ. - ୧୯୮୧), ବେଗମ୍ ସମ୍ରୁ (କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର୍ - ୧୯୮୧), ରାଜସିଂହ (ଗ୍ର.ମ. - ୧୯୮୭), ଅଲାଜୁକ ସାବଧାନ (ଗ୍ର.ମ. - ୧୯୮୪), କଥାଟିଏ କହୁଁ (ଗ୍ର.ମ. - ୧୯୮୪), କଲିକତାର ଉପକଣ୍ଠେ (ଗ୍ର.ମ. - ୧୯୮୪), କେତେ ନଚାଇବ ଗୋପାଳ (କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର ପ୍ରାପ୍ତ : ଗ୍ର.ମ. - ୧୯୮୭), ଇନ୍ଦୁରୁ ପ୍ରଧାନମନ୍ତ୍ରୀ (ଗ୍ର.ମ. - ୧୯୮୮), ମରୁମୃଗୟା (ଗ୍ର.ମ. - ୧୯୮୧), ହିରଣ୍ୟଗଡ଼ର ବଧୂ (ଗ୍ର.ମ. - ୧୯୯୨), ଭାଗବତ କଥା - ୧୦ ଖଣ୍ଡ (କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର୍ - ୧୯୮୭) ଚନ୍ଦ୍ରକାନ୍ତା (ଗ୍ର.ମ. - ୧୯୯୬), ଯୁବରାଜ (ଦିବ୍ୟଦୂତ ପ୍ରକାଶନ - ୧୯୯୭), ଆତ୍ମବିକାଶ (ଚିନ୍ମୟ ମିଶନ) ।

**ଗ. ସମ୍ପାଦିତ ଗ୍ରନ୍ଥ :**

ଗୋପୀଚନ୍ଦନ (ଓ.ସା.ଏ. - ୧୯୬୦), ନଅପୋଇ (ଓ.ରା.ସଂ. - ୧୯୬୬), Descriptive Catalogue of Oriya Manuscripts - Vol.-VI (Orissa State Museum - 1970) Vol.-VII & VIII (1971), Alphabetical Catalogue of Oriya Manuscripts (1972), Sanskrit Manuscripts (Part- I, 1973), Vol.-I (O.S.M.-1973), ଓଡ଼ିଆ କୋଇଲି ସାହିତ୍ୟ (ସଂସ୍କୃତି ନିର୍ଦ୍ଦେଶାଳୟ - ୧୯୭୩), ଓଡ଼ିଆ ଭଜନ ସାହିତ୍ୟ (୩ ଖଣ୍ଡ) ୧୯୭୩), Alphabetical Catalogue of Sanskrit Manuscripts-Vol.-II (1974), ଦକ୍ଷଯଜ୍ଞ (ଗୀତାଭିନୟ - ଓ.ସା.ଏ. - ୧୯୭୫), Descriptive Catalogue of Oriya-Manuscripts-Vol.-VIII (OSM-1973), Vol-IX (1974), Vol-X (1979), Alphabetical Catalogue of Authors (OSM-1983), ଖଲିକୋଟ ଯୁଦ୍ଧ (ଏଷଣା - ୧୯୮୨), ରାମଲୀଳା (୩ ଖଣ୍ଡ) (ଓ.ସା.ଏ. - ୧୯୮୨), ଛାମୁ ଚିଟାଉ (ଏଷଣା - ୧୯୮୫), ଭାଗବତ ସଦୂକ୍ତି ରତ୍ନାବଳୀ (ଗ୍ର.ମ. - ୧୯୮୫), ହାରାବତୀ (ଏଷଣା - ୧୯୮୭), ଶ୍ରୀଜଗନ୍ନାଥ ଦାସକୃତ ଭାଗବତ (୯ ଖଣ୍ଡ : ଓ.ସା.ଏ. - ୧୯୮୪-୧୯୮୯), ଆର୍ଷ ରାମାୟଣ (ମଞ୍ଜୁଶ୍ରୀ ମିଶ୍ର - ୧୯୯୨), ଶ୍ରୀଜଗନ୍ନାଥ ଭଜନ ସାର ସଂଗ୍ରହ (ସୂଚନା ଓ ଲୋକ ସଂପର୍କ ବିଭାଗ - ୧୯୯୪), ଶ୍ରୀଗୀତଗୋବିନ୍ଦ (ଗ୍ର.ମ. - ୧୯୯୪), ବୌଦରାଜ ବଂଶାବଳୀ (KGP - ୧୯୯୬) ।

**ଘ. ଶିଶୁ ସାହିତ୍ୟ -**

ଅଛବ ଦାସିଆ (ଗ୍ର.ମ.-୧୯୮୭), ଆମ ଓଡ଼ିଶାର ପ୍ରାଚୀନ କୀର୍ତ୍ତି (ଗ୍ର.ମ.-୧୯୮୯), ଭକତବନ୍ଧୁ ହରି (ଗ୍ର.ମ.-୧୯୮୯), ଚକାନୟନ (ଗ୍ର.ମ.-୧୯୮୯), ଓଡ଼ିଶାର ସ୍ୱାଧୀନତା ଆନ୍ଦୋଳନ (ଗ୍ର.ମ.-୧୯୮୯), ଦଶାବତାର (୧୦ ଖଣ୍ଡ-ବିଦ୍ୟାପୁରୀ-୧୯୮୯), ନୀଳାଚଳ କାହାଣୀ (ଗ୍ର.ମ.-୧୯୯୦), ଜଗନ୍ନାଥ ଲୀଳା (ଗ୍ର.ମ.-୧୯୯୧) ।

**ଅପ୍ରକାଶିତ ରଚନାବଳୀ -** ପଦ୍ମପୁରାଣ କଥା, ପଥ ଓ ପଥିକ, ଶ୍ରୀକୃଷ୍ଣ (ଉପନ୍ୟାସ), ଚନ୍ଦ୍ରିକା, ଲିଙ୍ଗପୁରାଣ କଥା, ବ୍ରହ୍ମ ପୁରାଣ କଥା, ସୂର୍ଯ୍ୟରଥ (ଅନୁଦିତ ଉପନ୍ୟାସ) ଇତ୍ୟାଦି ।

ତାଙ୍କର ପ୍ରଥମ ପ୍ରବନ୍ଧ 'ସଚିତ୍ର ରାମାୟଣ ଓ କବି ବନମାଳୀ' ଆଲୋଚନାଟି ଝଙ୍କାର ପତ୍ରିକାରେ ପ୍ରକାଶିତ ହେବା ପରେ, ସେହିଦିନୁ ଅର୍ଥାତ୍ ୧୯୬୦ରୁ ୧୯୯୭ ପର୍ଯ୍ୟନ୍ତ (ମୃତ୍ୟୁ) ଓଡ଼ିଶାର ପତ୍ରପତ୍ରିକାରେ ଓଡ଼ିଆ-ହିନ୍ଦୀ ଇଂରାଜୀରେ ନିରବଚ୍ଛିନ୍ନ ଭାବରେ ବିବିଧ ପ୍ରବନ୍ଧ ପ୍ରକାଶିତ ହୋଇଥିଲା । ପ୍ରାୟ ୫୦୦ରୁ ଊର୍ଦ୍ଧ୍ୱ ଗବେଷଣା ଧର୍ମୀ ପ୍ରକାଶିତ ପ୍ରବନ୍ଧର ସେ ଥିଲେ ସ୍ରଷ୍ଟା ।

ତାଙ୍କର ଥିଲା ଅଗାଧ ପାଣ୍ଡିତ୍ୟ, ପ୍ରଖର ସ୍ମରଣ ଶକ୍ତି, ଦୁର୍ବାର-ଜିଜ୍ଞାସା । ଏଣୁ ତାଙ୍କ ସହିତ ଏକ ଟେବୁଲ୍‌ରେ ବସି କାମ କରୁଥିବା ଜଣେ କନିଷ୍ଠ ସହକର୍ମୀ କହନ୍ତି ଯେ, 'ଏତେଗୁଡ଼ିଏ ପ୍ରବନ୍ଧ ଓ ପୁସ୍ତକ ଲେଖି ପାରିବାର ଗୋଟିଏ ଗୁପ୍ତ ରହସ୍ୟ ହେଲା ଏହି ଯେ, ସେ କୌଣସି ଲେଖା ଦ୍ୱିତୀୟ ଥର ଲେଖନ୍ତି ନାହିଁ । କାଗଜ ବାହାର କରି, କଲମ ଧରି, ଯାହା ଲେଖୁଥିଲେ ସେଇଟା ହିଁ ଫାଇନାଲ । ଏପରିକି ଦୁରୁହ ଅନୁବାଦ କାର୍ଯ୍ୟ ମଧ୍ୟ ସେହିପରି ଥରକେ କରୁଥିଲେ ।'

**ଗବେଷକଙ୍କ ପ୍ରେରଣା ଉତ୍ସ**

ପଣ୍ଡିତ ନୀଳମଣି ଥିଲେ ବୌଦ୍ଧିକତାର ମୂର୍ତ୍ତିମନ୍ତ ପ୍ରତୀକ । ନିଜେ ଜଣେ ଚଳନ୍ତି ସାରସ୍ୱତ ଅନୁଷ୍ଠାନ ଯାହାଙ୍କ ମଗଜରେ ପ୍ରାଚୀନ ସାହିତ୍ୟ, ସଂସ୍କୃତିର ବିଡ଼ା ବିଡ଼ା ପୋଥି ସଜା ହୋଇ ଥୁଆ ହୋଇଥିଲା । ତେଣୁ ଓଡ଼ିଶାର କୀର୍ତ୍ତି ଓ ଗୌରବକୁ ଭାରତ ଓ ବିଶ୍ୱ ଦରବାରରେ ପହଞ୍ଚାଇବାକୁ ଯେତେବେଳେ ଯେଉଁ ତରୁଣ ଗବେଷକ, ଅଧ୍ୟାପକ ତାଙ୍କ ପାଖକୁ ଆସୁଥିଲେ, ସେ ତାଙ୍କୁ ତଥ୍ୟ, ସୂତ୍ର, ପୁସ୍ତକ ଯୋଗାଇ ଦେବା ସହିତ ସେମାନଙ୍କୁ ଉତ୍ସାହିତ କରୁଥିଲେ । ଏଣୁ ଲେଖକ, ସାହିତ୍ୟିକ, ଗବେଷକ ଗଢ଼ି ତୋଳିବାରେ ସେ ଥିଲେ ପ୍ରେରଣାର ଉତ୍ସ ଓ ଅଭିଭାବକ ତୁଲ୍ୟ ବ୍ୟକ୍ତି । ତାଙ୍କ ଦ୍ୱାରା ଅନୁପ୍ରେରିତ ବହୁ ଅଧ୍ୟାପକ, ଗବେଷକ, ଛାତ୍ର, ପରବର୍ତ୍ତୀ ଜୀବନରେ ବହୁ ଗୌରବର ଅଧିକାରୀ ହୋଇପାରିଛନ୍ତି । ତାଙ୍କ ସମସାମୟିକ ତଥା ସହକର୍ମୀ ଡ. ଭଗବାନ ପଣ୍ଡା, ଡ. ରବିନାରାୟଣ ଦାଶ, ଡ. ଜଗବନ୍ଧୁ ପାଢ଼ୀ ପ୍ରଭୃତି କୃତବିଦ୍ୟ ସାହିତ୍ୟିକଙ୍କ ନାମ ଏ ସମ୍ବନ୍ଧରେ ସ୍ମରଣୀୟ ।

ତେବେ ସମସ୍ତ ଜାଗତିକ ବାଧାବିଘ୍ନ ଜଞ୍ଜାଳକୁ ଆତ୍ମସାତ୍ କରି ଏହି କର୍ମଯୋଗୀ ନିରଳସ ଭାବରେ ଖଟି ଚାଲିଥିଲେ ତଥା ଆଉ ଅନ୍ୟ ଆଗ୍ରହୀ ବିଦ୍ୱାନଙ୍କୁ ଅକୁଣ୍ଠ ଚିତ୍ତରେ ସାହାଯ୍ୟ କରୁଥିଲେ । କେତେ କଲମ ନ ଧରିବା ହାତରେ ସଜାଡ଼ି କଲମ ଧରାଇଛନ୍ତି । କେତେ ନିରୁତ୍ସାହୀ ସାଧକଙ୍କ ଅଣ୍ଟା ସଳଖି ଦେଇଛନ୍ତି । ସେ ହିନ୍ଦୀରେ 'ରତ୍ନ' ପାସ୍ କରିଥିବାରୁ ହିନ୍ଦୀରୁ ଓଡ଼ିଆ ଅନୁବାଦ ତଥା ହିନ୍ଦୀରେ ଓଡ଼ିଆ ମୌଳିକ ଗ୍ରନ୍ଥ ଲେଖିବାରେ ପାରଙ୍ଗମତା ଅର୍ଜନ କରିଥିଲେ ।

### ସମ୍ମାନ ଓ ସମ୍ବର୍ଦ୍ଧନା

ଓଡ଼ିଆ ଭାଗବତର ଶୁଦ୍ଧ ସଂସ୍କରଣ, ମୋ ପତି ମୋ ଦେବତା (ଅନୁବାଦ), ଯଯାତି (ଅନୁବାଦ), କେତେ ନଚାଇବ ଗୋପାଳ (ଅନୁବାଦ), ଜୟଦେବ ଓ ଗୀତଗୋବିନ୍ଦ ତାଙ୍କୁ ବିପୁଳ ଖ୍ୟାତି ଓ ସମ୍ମାନ ଆଣି ଦେଇଥିଲା ।

ଜଣେ ନୀରବ ଓ ନିରହଙ୍କାର ସାରସ୍ୱତ ସାଧକ, ପଣ୍ଡିତ ମିଶ୍ର କଦାପି ସମ୍ମାନ ଓ ପୁରସ୍କାର, ସମ୍ବର୍ଦ୍ଧନା ପ୍ରତି ଆତୁରତା ପ୍ରକାଶ କରି ନଥିଲେ । ମାତ୍ର ସେ ସବୁ ତାଙ୍କ ଉପରେ ଅଜାଡ଼ି ହୋଇ ପଡ଼ିଥିଲା । ସେ ସରକାରୀ-ବେସରକାରୀ, ରାଜ୍ୟ କେନ୍ଦ୍ର ସରକାରଙ୍କ ଦ୍ୱାରା ସମ୍ବର୍ଦ୍ଧିତ ଓ ପୁରସ୍କୃତ ହୋଇଛନ୍ତି । ସେଗୁଡ଼ିକ ମଧ୍ୟ ନିମ୍ନୋକ୍ତ ଉଲ୍ଲେଖଯୋଗ୍ୟ ।

ନିଜର ମୌଳିକ ଗବେଷଣାମୂଳକ ଲେଖା ପାଇଁ ୧୯୬୧ରେ ପ୍ରଜାତନ୍ତ୍ର : ବିଷୁବ ମିଳନରେ ସମ୍ମାନିତ । ଭାରତ ସରକାରଙ୍କ ଶିକ୍ଷା ଓ ସମାଜ କଲ୍ୟାଣ ମନ୍ତ୍ରଣାଳୟ (ଶିକ୍ଷା ବିଭାଗ) ଦ୍ୱାରା ତାଙ୍କର ହିନ୍ଦୀରେ ରଚିତ ମୌଳିକ ପୁସ୍ତକ 'ଓଡ଼ିଆ ନାଟକ ଔର ରଙ୍ଗମଞ୍ଚ' (ପ୍ରକାଶକ : ଅଭିନବ ଭାରତୀ-ଆହ୍ଲାବାଦ) ପାଇଁ ୧୯୭୩-୭୪ରେ ସମ୍ମାନିତ । ଉକ୍ତ ପୁସ୍ତକ ପାଇଁ ମଧ୍ୟ ୧୯୭୩-୭୪ରେ ଉତ୍ତରପ୍ରଦେଶ ଶିକ୍ଷା ବିଭାଗ ଦ୍ୱାରା ସମ୍ମାନିତ । ୧୯୭୬-୭୭ରେ ଉତ୍ତରପ୍ରଦେଶ ହିନ୍ଦୀ ସଂସ୍ଥାନ ତଥା ୧୯୮୩ରେ ବିହାର ସରକାରଙ୍କ ରାଜଭାଷା (ହିନ୍ଦୀ) ବିଭାଗ, ପାଟନା ଦ୍ୱାରା ପୁରସ୍କୃତ । ୧୯୯୧ରେ ସେ ତାଙ୍କ ଅନୁବାଦ ପୁସ୍ତକ 'କେତେ ନଚାଇବ ଗୋପାଳ' ପାଇଁ କେନ୍ଦ୍ର ସାହିତ୍ୟ ଏକାଡେମୀ ଦ୍ୱାରା ପୁରସ୍କୃତ ହୋଇଛନ୍ତି । ୧୯୯୩ରେ ଓଡ଼ିଶା ସାହିତ୍ୟ ଏକାଡେମୀ ତାଙ୍କୁ ସମ୍ବର୍ଦ୍ଧିତ କରିଛି । ସେହି ୧୯୯୩ରେ 'ଉତ୍କଳ ସାହିତ୍ୟ ସମାଜ' ତରଫରୁ ପ୍ରବନ୍ଧ ଓ ସମାଲୋଚନା ପୁରସ୍କାର ପାଇଛନ୍ତି । ଏହାବ୍ୟତୀତ, କ୍ଷେତ୍ରବାସୀ ବିଦ୍ୟା ପୁରସ୍କାର ଯଦୁମଣି ସାହିତ୍ୟ ସଂସଦ, ଜଗନ୍ନାଥ ଗବେଷଣା ପରିଷଦ ତଥା 'ଚିନ୍ତାଚେତନା' ତରଫରୁ ସମ୍ବର୍ଦ୍ଧିତ ହୋଇଛନ୍ତି ।

### ପଦ, ପଦବୀ, ସଦସ୍ୟତା

ପଣ୍ଡିତ ମିଶ୍ର ତାଙ୍କ ଜୀବନକାଳ ମଧ୍ୟରେ ବହୁ ସାରସ୍ୱତ ଅନୁଷ୍ଠାନର ପଦ-ପଦବୀ ମଣ୍ଡନ କରିବା ସହିତ ସକ୍ରିୟ ସଦସ୍ୟ ଥିଲେ । ଭାରତ ସରକାରଙ୍କ ସଂସ୍କୃତ ଅନୁବାଦ ସମିତିର ସେ ଓଡ଼ିଶାରୁ ପ୍ରଥମ ସଦସ୍ୟ ଥିଲେ । ଏହାବ୍ୟତୀତ ରାଷ୍ଟ୍ରୀୟ ସଂଗ୍ରହାଳୟର କଳାକୃତି କ୍ରୟ ସମିତିର ସଦସ୍ୟ, ଶ୍ରୀଜଗନ୍ନାଥ ସଂସ୍କୃତ ବିଶ୍ୱବିଦ୍ୟାଳୟର ସିନେଟ୍ ସଭ୍ୟ, ତାଙ୍କ ଦ୍ୱାରା ପ୍ରତିଷ୍ଠିତ କେଦାରନାଥ ଗବେଷଣା ପ୍ରତିଷ୍ଠାନର ସେ ମୃତ୍ୟୁ ପର୍ଯ୍ୟନ୍ତ ପ୍ରତିଷ୍ଠାତା ସଂପାଦକ ଥିଲେ ।

### ସାରସ୍ୱତ ଅନୁଷ୍ଠାନର ଉଦ୍ୟୋକ୍ତା, ସ୍ରଷ୍ଟା ନୀଳମଣି

ପଣ୍ଡିତ ମିଶ୍ର ଥିଲେ କେତେ ଗୋଟି ସାରସ୍ୱତ ଗବେଷଣା ସଂସ୍ଥାନର ପ୍ରତିଷ୍ଠାତା ଓ ଉଦ୍ୟୋକ୍ତା । କେତେକ ସହିତ ତାଙ୍କର ସଂପୃକ୍ତି ଥିଲା । ଏଥିରୁ ତାଙ୍କର ସାଙ୍ଗଠନିକ ଦକ୍ଷତା ଅନୁମିତ ହୋଇଥାଏ । ପଣ୍ଡିତ ମିଶ୍ର, ନିଜର ସହକର୍ମୀ ଓ ବନ୍ଧୁମାନଙ୍କ (ଡ. ରବିନାରାୟଣ ଦାଶ, ଡ. ଭଗବାନ ପଣ୍ଡା, ଡ. ଦିନନାଥ ପାଠୀ, ଗଣେଶ ପ୍ରସାଦ ପରିଜା, ଡ. ଲକ୍ଷ୍ମଣ କୁମାର ପଣ୍ଡା) ସହାୟତାରେ 'Orissa Cultural Forum' ନାମକ ଅନୁଷ୍ଠାନ ଗଢ଼ିଥିଲେ । ଏହି ଅନୁଷ୍ଠାନ ମାଧ୍ୟମରେ ପାଠକମାନଙ୍କ ଅବଗତି ନିମିତ୍ତ-ଶ୍ରୀଜଗନ୍ନାଥ ସଂସ୍କୃତି, ଶୈବ ସଂସ୍କୃତି, ଶାକ୍ତ ସଂସ୍କୃତି, ଲୋକ ସଂସ୍କୃତି ଉପରେ ପୁସ୍ତକମାନ ପ୍ରକାଶ କରିଥିଲେ ।

ଏହାବ୍ୟତୀତ ସେ 'ଗୋଦାବରୀଶ ସାହିତ୍ୟ ସଂସଦ', ଜଗନ୍ନାଥ ପାଣି ସ୍ମୃତି ସଂସଦ, ସାଲବେଗ ସ୍ମୃତି ସଂସଦ, ରାଷ୍ଟ୍ରଭାଷା ପ୍ରଚାର ସମିତି ଆଦି ଅନୁଷ୍ଠାନଗୁଡ଼ିକର ପରିଚାଳନା ଓ କର୍ମଧାରା ସହିତ ଜଡ଼ିତ ଥିଲେ ।

### ପଣ୍ଡିତ ମିଶ୍ରଙ୍କ ପ୍ରିୟ ଅନୁଷ୍ଠାନ : କେଦାରନାଥ ଗବେଷଣା ପ୍ରତିଷ୍ଠାନ

୧୯୮୧ ଏପ୍ରିଲ୍ ୨୦ ତାରିଖରେ କେଦାରନାଥ ମହାପାତ୍ର ଇହଧାମ ତ୍ୟାଗ କଲେ । ତାଙ୍କ ସ୍ମୃତିରେ 'କେଦାରନାଥ ଗବେଷଣା ପ୍ରତିଷ୍ଠାନ' ତା.୧୭.୨.୧୯୮୨ରିଖରେ ପ୍ରତିଷ୍ଠା ହେଲା । ଏହି ଅନୁଷ୍ଠାନ ପାଇଁ କେଦାରନାଥଙ୍କ ସାନଭାଇ ତଥା ଭୁବନେଶ୍ୱରର ପୂର୍ବତନ ପୌରପାଳ ଶ୍ରୀ ଗୁଣନିଧି ମହାପାତ୍ରଙ୍କ ଅକୁଣ୍ଠ ସାହାଯ୍ୟ ତଥା ନୀଳମଣି ମିଶ୍ରଙ୍କ ନିରବଚ୍ଛିନ୍ନ ଶ୍ରମ ଓ ସହାୟତା ଅବିସ୍ମରଣୀୟ ଅଟେ । କେଦାରନାଥ ଗବେଷଣା ପ୍ରତିଷ୍ଠାନ ଗଢ଼ିବା ପାଇଁ ସେ ଏପରିକି ତତ୍କାଳୀନ କେନ୍ଦ୍ର ସଂସ୍କୃତି ବିଭାଗ ସଚିବ, କପିଳାବାତ୍ସାୟନଙ୍କଠାରୁ ଆର୍ଥିକ ସହାୟତା ଲୋଡ଼ିଥିଲେ । ସେହିପରି ପାଠାଗାରର ଉପକରଣ, ପୁସ୍ତକ, ପତ୍ରିକା, ପୁରାତନ ପାଣ୍ଡୁଲିପି ଯୋଗାଡ଼ କରିବା ଓ ସେଗୁଡ଼ିକ ସଜାଇ ରଖିବାରେ ବହୁ ଶ୍ରମ କରିଥିଲେ । ଏହି ଅନୁଷ୍ଠାନର ପ୍ରତିଷ୍ଠାତା ସମ୍ପାଦକ ପଦରେ ମୃତ୍ୟୁ ପର୍ଯ୍ୟନ୍ତ ସେ ଥିଲେ । ଏହି ପ୍ରତିଷ୍ଠାନର ପ୍ରତ୍ୟେକ କାର୍ଯ୍ୟରେ ତାଙ୍କର ସ୍ୱାଭିମାନର ସ୍ୱାକ୍ଷର ରହିଅଛି । ଯେଉଁମାନେ ପଣ୍ଡିତ ମିଶ୍ରଙ୍କ ଜୀବଦ୍ଦଶାରେ ଏହି ଅନୁଷ୍ଠାନକୁ ପରିଦର୍ଶନରେ ଆସିଛନ୍ତି, ସେମାନେ ତାଙ୍କର ଚଳଚଞ୍ଚଳ କାର୍ଯ୍ୟଧାରା,

ହସ ହସ ମୁହଁ, ଆଗନ୍ତୁକଙ୍କୁ ଶ୍ରଦ୍ଧାର ସହିତ ଆପଣେଇ ନେବାର ଭାବ, ଅନୁଭବ କରିଥିବେ ।

କେଦାରନାଥ ଗବେଷଣା ପ୍ରତିଷ୍ଠାନରେ ଯେତେସବୁ ପୁସ୍ତକ, ପତ୍ରିକା, ପାଣ୍ଡୁଲିପି ସାଇତା ହୋଇ ରହିଛି, ତାହାର ଦିନେ ତତ୍ତ୍ୱାବଧାରକ ଥିଲେ ପଣ୍ଡିତ ମିଶ୍ର । ପ୍ରତିବର୍ଷ ଏହି ଅନୁଷ୍ଠାନ ତରଫରୁ ସ୍ୱର୍ଗତଃ କେଦାରନାଥଙ୍କ ଶ୍ରାଦ୍ଧ ଉତ୍ସବରେ 'ଏକାମ୍ର ସମ୍ମାନ' ତଥା ସ୍ୱର୍ଗତଃ ନୀଳମଣି ମିଶ୍ରଙ୍କ ଜୟନ୍ତୀରେ 'ନୀଳମଣି ସ୍ମୃତି ସମ୍ମାନ', ବିଶିଷ୍ଟ ବିଦ୍ୱାନମାନଙ୍କୁ ପ୍ରଦାନ କରାଯାଏ । ଏହି ଅନୁଷ୍ଠାନଟି ବିନ୍ଦୁସାଗର, ସନ୍ନିକଟ କେଦାର-ଗୌରୀ ମାର୍ଗ, ଭୁବନେଶ୍ୱର-୨୦ଠାରେ ଅବସ୍ଥିତ । ପଣ୍ଡିତ ମିଶ୍ର ନିଜର ଭୀମଟାଙ୍ଗୀସ୍ଥିତ 'ଗୌରୀକୁଟୀର'ରୁ ଆସି ଏହି ଅନୁଷ୍ଠାନରେ ଗବେଷଣା ଓ ପରିଚାଳନା ବୁଝୁଥିଲେ ।

ପ୍ରତିଷ୍ଠାନର ଦୁର୍ଲ୍ଲଭ ପୁସ୍ତକ ତଥା ଦୁଷ୍ପ୍ରାପ୍ୟ ପୋଥିଗୁଡ଼ିକୁ ଯତ୍ନରେ ସାଇତି ରଖିବା ସହିତ ସମଧର୍ମୀ ସାହିତ୍ୟିକଙ୍କୁ ଟାଣି ଆଣି ନିଜ ଦଳରେ ସାମିଲ୍ କରିବା ଓ ନୂତନ ଗବେଷକଙ୍କୁ ଏହିଠାରୁ ପ୍ରେରଣା ଯୋଗାଇବା ଥିଲା ତାଙ୍କର ଅବସର ପରେ ମୁଖ୍ୟ କାର୍ଯ୍ୟ ।

**ବ୍ୟକ୍ତିତ୍ୱ (ସ୍ୱଭାବ, ପାରିବାରିକ ଜୀବନ)**

ସ୍ୱର୍ଗତଃ ପଣ୍ଡିତ ନୀଳମଣି ଦେଖିବାକୁ ଥିଲେ ଦୀର୍ଘକାୟ, ଗୌରବର୍ଣ୍ଣର ମଣିଷଟିଏ । ପରିଧାନ ଭିତରେ ଧୋବ ଫରଫର ଖଦଡ଼ ଧୋତି, ସଫେଦ ପଞ୍ଜାବୀ ସାଙ୍ଗକୁ କାନ୍ଧରେ ଚିରାଚରିତ ଭାବେ ଉତ୍ତରୀୟ । ଗର୍ବ, ଅହଂକାର ଶୂନ୍ୟ ନିରଳସ କର୍ମଯୋଗୀଟିଏ । ପ୍ରଥମ ଦେଖାରେ ଆଗନ୍ତୁକଙ୍କୁ ନିଜର କରିପକାନ୍ତି । ନିରାମିଷ ନିରାଡମ୍ବର ଭୋଜନ । ବନ୍ଧୁ ମେଳରେ ହାସ୍ୟ ପରିହାସ ।

ବହୁ କୁଟୁମ୍ବୀ ପରିବାର ହେତୁ ଅଭାବୀ ଜୀବନ । ପାଞ୍ଚ ଝିଅ ଓ ଦୁଇ ପୁଅ । ସେମାନଙ୍କର ପାଳନ ପୋଷଣ କରି ପଢ଼ାଇ ମଣିଷ କରିବାରେ ସେ ବହୁ ଅନାଟନରେ ପଡ଼ିଥିଲେ । ଆର୍ଥିକ ସୁଧାର ପାଇଁ ଅଣଓଡ଼ିଆ ଘରେ ଟ୍ୟୁସନ କରି କିଛି ଅର୍ଥ ଉପାର୍ଜନ କରୁଥିଲେ । ପିଲାଦିନରୁ ସେ ଥିଲେ ପିତୃମାତୃ ହରା । ଏଣୁ ସ୍ୱ-ପିଲାମାନଙ୍କୁ ସେ ଶ୍ରଦ୍ଧା, ମମତା, ସ୍ନେହ ଯୋଗାଇ ଖୁସି କରୁଥିଲେ । ପାରିବାରିକ ଜଞ୍ଜାଳ ଯନ୍ତ୍ରଣା, ଟଣାଭିଡ଼ା, ଦ୍ୱନ୍ଦ୍ୱ ସଂଘର୍ଷ ମଧ୍ୟରେ ନିଜର କର୍ମାଦର୍ଶ ବଜାୟ ରଖିଥିଲେ । କାରଣ ଭୌତିକ ବିକାଶ ଅପେକ୍ଷା ସେ ନିରନ୍ତର, ଆତ୍ମାର ବିକାଶ ପ୍ରତି ଯତ୍ନଶୀଳ ଥିଲେ । ନିଷ୍ଠା, ଶ୍ରଦ୍ଧା, ସାଧୁତା, ଅଧ୍ୟବସାୟ ଓ ସମୟାନୁବର୍ତ୍ତିତା ତାଙ୍କ ବ୍ୟକ୍ତିତ୍ୱକୁ ପ୍ରଖର କରିଥିଲା । କେତେକ କ୍ଷେତ୍ରରେ ତାଙ୍କଠାରେ ରକ୍ଷଣଶୀଳତାର ମନୋଭାବ ଦେଖା ଦେଲେ ମଧ୍ୟ ଅନେକ କ୍ଷେତ୍ରରେ ସେ ଥିଲେ ଉଦାର ସଂସ୍କାରବାଦୀ । ବିଦ୍ୱତ୍ତା ସହିତ ସହୃଦୟତା ଥିଲା - ତାଙ୍କର ଚରିତ୍ରର ଭୂଷଣ ।

ସେ ଚମତ୍କାର ଭାବରେ ହିନ୍ଦୀ କହି ପାରୁଥିଲେ । ଓଡ଼ିଶା ବାହାରେ ତଥା ହିନ୍ଦୀ ଭାଷାଭାଷୀ ଅଞ୍ଚଳର ସଭାସମିତି, ଆଲୋଚନା ଚକ୍ରରେ, ସେ ହିନ୍ଦୀରେ ଭାଷଣ ଦେଇ, ହିନ୍ଦୀ ସାହିତ୍ୟର ବିଦ୍ୱାନମାନଙ୍କୁ ମନ୍ତ୍ରମୁଗ୍ଧ କରି ଦେଉଥିଲେ । ତାଙ୍କର ଉଚ୍ଚାରଣ ଶୈଳୀ ଖୁବ୍ ମାର୍ଜିତ ଓ ତ୍ରୁଟି ଶୂନ୍ୟ ଥିଲା ।

ମୋଟାମୋଟି କହିବାକୁ ଗଲେ - ଜଣେ ଦାୟିତ୍ୱଶୀଳ ଆଦର୍ଶ ଗୃହସ୍ଥ, ଜଣେ ସ୍ନେହଶୀଳ ପିତା, ଆତ୍ମୀୟ ପରିଜନଙ୍କ ପାଖରେ ଜଣେ ଶୁଭାକାଂକ୍ଷୀ ଓ ପରୋପକାରୀ ବନ୍ଧୁ, ସାରସ୍ୱତ କ୍ଷେତ୍ରରେ ଜଣେ ନିଷ୍ଠାପର ସାଧକ, ଜଣେ ସୁବକ୍ତା, ଉତ୍ତମ ସଂଗଠକ, ବହୁମୁଖୀ ଓ ବହୁଦର୍ଶୀ ଆଲୋଚକ ଭାବରେ ନିଜର ବ୍ୟକ୍ତିତ୍ୱକୁ ପରିପୁଷ୍ଟ କରିଥିଲେ ।

**ଶେଷ ଯାତ୍ରା**

ଓଡ଼ିଶାର ଏହି ବହୁକର୍ମା ବିଦ୍ୱାନ ସାରସ୍ୱତ ପୁରୁଷଙ୍କର ଶ୍ୱାସଜନିତ ରୋଗରେ ମୃତ୍ୟୁ ହୁଏ ତା୩.୧୦.୧୯୯୭ରିଖରେ ଏବଂ ମରଦେହକୁ ପୁରୁଣା ଭୁବନେଶ୍ୱରସ୍ଥିତ ଗରାବଡୁ ମଶାଣିରେ ଦାହ କରାଯାଏ । ତାଙ୍କର ମୃତ୍ୟୁ ଖବର ପାଇ ବହୁ ଶାସକୀୟ ପ୍ରତିନିଧି, ବରିଷ୍ଠ ସାହିତ୍ୟିକ, ଐତିହାସିକ ଓ ସାଧାରଣ ଜନତା ତାଙ୍କ ବାସଭବନକୁ ଆସି ଶେଷ ଦର୍ଶନ କରିଥିଲେ ।

ତାଙ୍କ ଦଶାହ (ତା.୧୨.୧୦.୧୯୯୭) ଉପଲକ୍ଷେ ସଂସ୍କୃତି ବିଭାଗ, ନେହେରୁ ଯୁବ ପ୍ରତିଷ୍ଠାନ, ଜୟଦେବ ସାଂସ୍କୃତିକ ପରିଷଦ ତଥା କେଦାରନାଥ ଗବେଷଣା ପ୍ରତିଷ୍ଠାନର ମିଳିତ ଉଦ୍ୟମରେ, ସୂଚନା ଭବନଠାରେ ଏକ ସ୍ମୃତିସଭା ଅନୁଷ୍ଠିତ ହୋଇଥିଲା । ଉକ୍ତ ସଭାରେ ଡ. ପ୍ରସନ୍ନ ପାଟ୍ଟଶାଣୀ, ପୂର୍ବତନ ସଂସ୍କୃତି ମନ୍ତ୍ରୀ ଗଙ୍ଗାଧର ମହାପାତ୍ର, ବହୁ ବିଦ୍ୱାନ ଗବେଷକ ଓ ତାଙ୍କ ସହକର୍ମୀ ଓ ସାଥୀ ମଧ୍ୟରେ ଡ. ଭଗବାନ ପଣ୍ଡା, ଡ. ହରିଶ୍ଚନ୍ଦ୍ର ଦାସ, ଡ. ରବିନାରାୟଣ ଦାଶ, ଶ୍ରୀ ଗୁଣନିଧି ମହାପାତ୍ର ପ୍ରଭୃତି ଉପସ୍ଥିତ ରହି ପଣ୍ଡିତ ମିଶ୍ରଙ୍କର ବହୁମୁଖୀ ପ୍ରତିଭାର ସ୍ମୃତିଚାରଣ କରିଥିଲେ ।

ଏହି ଅବସରରେ 'ପଣ୍ଡିତ ନୀଳମଣି ମିଶ୍ର ସ୍ମୃତି ସଂସଦ', କୋଟିତୀର୍ଥ ମାର୍ଗ, ଭୁବନେଶ୍ୱର-୨ ତରଫରୁ 'ନୀଳାଦ୍ରି' ନାମକ ସ୍ମୃତି ଗ୍ରନ୍ଥ ଉନ୍ମୋଚିତ ହୋଇଥିଲା । ଏଥିରେ ବହୁ ବିଦ୍ୱାନ ବ୍ୟକ୍ତିଙ୍କ ଶ୍ରଦ୍ଧାଞ୍ଜଳି ତଥା ସ୍ମୃତିଚାରଣମୂଳକ ଲେଖା ସନ୍ନିବିଷ୍ଟ ହୋଇଛି । ଉକ୍ତ ପତ୍ରିକାର ସମ୍ପାଦନା କରିଥିଲେ ତାଙ୍କର ଜଣେ ଅନ୍ତରଙ୍ଗ ସହକର୍ମୀ ଓ ଅନୁଗାମୀ ବନ୍ଧୁ ଡ. ଭଗବାନ ପଣ୍ଡା । ଏହିପରି ତାଙ୍କର ଅଭିମତ ଥିଲା -

'ତାଙ୍କର (ପଣ୍ଡିତ ମିଶ୍ରଙ୍କର) ନିରଳସ ସାଧନା, ନିରଭିମାନତା, ସ୍ୱମୁଖନିରଭିଳକ୍ଷିତା, ନୂତନ ତଥ୍ୟ ଉନ୍ମୋଚନ ନିମିତ୍ତ ବ୍ୟାକୁଳତା, କର୍ତ୍ତବ୍ୟ ପରାୟଣତା, ସର୍ବୋପରି ନିଜର ଭାଷା, ସଂସ୍କୃତି ଓ ଐତିହ୍ୟର ସୁରକ୍ଷା ତଥା ପ୍ରସାର ପାଇଁ ମମତା ଥିଲା ଅତୁଳନୀୟ ଓ ଅପରିସୀମ । ଶ୍ରୀମଦ୍ ଭଗବତ ଗୀତାର ପ୍ରୟୋଗିକ ରୂପ ତାଙ୍କ ଜୀବନର ସ୍ୱଭାବ, ଚରିତ୍ର ଓ କାର୍ଯ୍ୟଧାରାରେ ପ୍ରତିଫଳିତ ହୋଇଥିଲା ।'

(ସଂପାଦକୀୟ 'ନୀଳାଦ୍ରି')। ବାସ୍ତବରେ ତାଙ୍କୁ ଯେଉଁମାନେ ଅତି ପାଖରୁ ଦେଖିଛନ୍ତି, ତାଙ୍କ ସହ ମିଶିଛନ୍ତି, ତାଙ୍କଠାରୁ ପରାମର୍ଶ ଗ୍ରହଣ କରିଛନ୍ତି ଓ ତାଙ୍କ ସହିତ ମିଶି କାମ କରିଛନ୍ତି, ସେମାନେ ସମସ୍ତେ ଉପଲବ୍ଧି କରିଛନ୍ତି ତାଙ୍କର ଅତୁଳନୀୟ ବିଦ୍ୱତ୍ତାକୁ, ପାଣ୍ଡିତ୍ୟ ଆଉ କର୍ମନିଷ୍ଠାକୁ । ସେମାନେ ସମସ୍ତେ ତାଙ୍କର ସୌଜନ୍ୟମୁଗ୍ଧ ବ୍ୟକ୍ତିତ୍ୱର ବିମୁଗ୍ଧ ସ୍ତାବକ ପାଲଟି ଯାଇଛନ୍ତି ।

ସ୍ୱର୍ଗତଃ ପଣ୍ଡିତ ଥିଲେ ଜଣେ ପ୍ରବାଦ ପୁରୁଷ । ଆମ ସମସ୍ତଙ୍କର ନମସ୍ୟ । ଏହି ପ୍ରଜ୍ଞାପୁରୁଷଙ୍କର କୃତିତ୍ୱ ମୂଲ୍ୟାୟନ କରିବା କଠିନ ବ୍ୟାପାର ଅଟେ ।

**ସହାୟକ ଗ୍ରନ୍ଥସୂଚୀ**


୧. ନୀଳାଦ୍ରି - ପ୍ରକାଶକ: ପଣ୍ଡିତ ନୀଳମଣି ମିଶ୍ର ସ୍ମୃତି ସଂସଦ, କୋଟିତୀର୍ଥ ମାର୍ଗ, ଭୁବନେଶ୍ୱର-୨, ପ୍ରକାଶନ କାଳ: ୧୯୯୭ ।

୨. ଉତ୍କଳୀୟ ସଂସ୍କୃତି - ସଂଖ୍ୟା: ୧୯, ଏପ୍ରିଲ୍-୨୦୦୫, ପ୍ରକାଶକ: କେଦାରନାଥ ଗବେଷଣା ପ୍ରତିଷ୍ଠାନ, କେଦାର-ଗୌରୀ ମାର୍ଗ, ଭୁବନେଶ୍ୱର-୨ ।



ଅଭିନନ୍ଦନ
୩୫, ବସନ୍ତ ବିହାର
ବ୍ରହ୍ମେଶ୍ୱର ମନ୍ଦିର ମାର୍ଗ, ଭୁବନେଶ୍ୱର-୨


---

# ଏଇ ସେ ଉତ୍କଳ ଭୂଇଁ

ଡକ୍ଟର ଜ୍ୟୋତିର୍ମୟୀ ସାମନ୍ତରାୟ

ଏଇ ସେ ଉତ୍କଳ ଭୂଇଁ
ବଡ଼ ଦେଉଳରେ ବଡ଼ବାନା ଯହିଁ
ଫର ଫର ଉଡ଼େ ଗଗନ ଛୁଇଁ ॥
ହସେ ଫଳ-ଫୁଲ-ତଟିନୀ-ଗିରି
ବନ-ବିଲ ଯା'ର ବଢ଼ାଏ ଶିରୀ
କଳାମୟୀ ଏଇ କଳିଙ୍ଗ ଭୂଇଁରେ
ଜନମ ପାଇଛି ମୁଇଁରେ ମୁଇଁ
ଏଇ ସେ ଉତ୍କଳ ଭୂଇଁ ... ॥
ସ୍ୱତନ୍ତ୍ର ଉତ୍କଳ ଗଠନ ପାଇଁ
ଜାଗରଣ-ପଥେ ନିରତେ ଧାଇଁ
ଜାତୀୟ ଚେତନା ଗଢ଼ି ଥୋଇ ଦେଲେ
ବରପୁତ୍ରଗଣ ଉଠିଲେ ଚେଇଁ
ଏଇ ସେ ଉତ୍କଳ ଭୂଇଁ ... ॥
ବଦଳିଲା ଆମ ରାଇଜ ରୂପ
ନାହିଁ ଗଡ଼ଜାତ ନାହାନ୍ତି ନୃପ
ଜାତୀୟ ଜୀବନ ବିକଶିତ ହେଲା
ଅଭିନବ-ରବି ଉଠିଲା ଉଇଁ
ଏଇ ସେ ଉତ୍କଳ ଭୂଇଁ ... ॥
ଭେଦାଭେଦ ଭାବ ନ ରଖି ମନେ
ଆସରେ କହିବା ଜାତିର କର୍ଣ୍ଣେ
'ନୂଆ ଶିଳ୍ପରାଜି ସରଜନା କରି
ହସି ହସାଇବା ଓଡ଼ିଶା ଭୂଇଁ'
ଏଇ ସେ ଉତ୍କଳ ଭୂଇଁ ... ॥


ସହକାରୀ ସୂଚନା ଅଧିକାରୀ
ସୂଚନା ଓ ଲୋକ ସଂପର୍କ ବିଭାଗ, ଭୁବନେଶ୍ୱର

# ପୁଣ୍ୟାତ୍ମା ପୁଣ୍ୟଶ୍ଳୋକ ମଧୁବାବୁ ଓ ଓଡ଼ିଆ ଆନ୍ଦୋଳନର ପୃଷ୍ଠଭୂମି : ଏପ୍ରିଲର ଇତିକଥା



ରାମେଶ୍ୱର ସାହୁ

**ସ**ମଗ୍ର ବିଶ୍ୱରେ ଏପ୍ରିଲ ବହୁ ପୁରାକାଳରୁ ଆରମ୍ଭ କରି ଅଦ୍ୟାବଧି ବହୁ ଘଟଣାର ସ୍ମୃତିରେ ଏକ ଚମକପ୍ରଦ ଇତିହାସ ସୃଷ୍ଟି କରିଛି କହିଲେ ଅତ୍ୟୁକ୍ତି ହେବ ନାହିଁ । ସାରା ବିଶ୍ୱରେ ଏହା ଏକ ଉତ୍ସବମୁଖର ମାସ ରୂପେ ଗଣ୍ୟ କରାଯାଏ । ଏପ୍ରିଲ ଲାଟିନ୍ ଭାଷା 'ଏପ୍ରିଲସ୍' ଶବ୍ଦରୁ ଗୃହୀତ । ପ୍ରଥମେ ୧୫୬୪ ମସିହାରେ ଫ୍ରାନ୍ସରେ ଏହାର ପ୍ରଚଳନ 'ପ୍ରଏଚିନ୍ ଡି ଏଭିଲ୍ (ଏପ୍ରିଲଫସ)ରୁ ହୋଇଥିଲା ବୋଲି ଫରାସୀମାନେ ଦାବି କରନ୍ତି । ଉତ୍କଳ ତଥା ଭାରତ ଇତିହାସରେ ଏକ ସ୍ୱତନ୍ତ୍ର ସ୍ଥାନ ଅଧିକାର କରି ଅନେକ ଅବିସ୍ମରଣୀୟ ଘଟଣାବଳୀ ତା'ର ମାନସ ସ୍ମୃତିପଟରେ ସାଇତି ରଖି ସମଗ୍ର ବିଶ୍ୱରେ ସେ ଆଜି ସ୍ମରଣୀୟ ଦିବସ 'ଏପ୍ରିଲ ଫୁଲ୍' ରୂପେ ପରିଚିତ । ଏହି ମାସରେ ମଧ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନର ଆଦ୍ୟ ପ୍ରବକ୍ତା କୁଳବୃଦ୍ଧ ମଧୁସୂଦନଙ୍କ ଜୟନ୍ତୀ ପାଇଁ ଓଡ଼ିଆ ଜାତି ତା'ର ସ୍ୱାଭିମାନ, ମର୍ଯ୍ୟାଦା ଓ ଗୌରବମୟ ପରମ୍ପରାକୁ ପୁନର୍ଜୀବିତ କରିଛି । ଆଜି 'ମଧୁବାହିନୀ' ଉତ୍କଳ ଦିବସର ସୁବର୍ଣ୍ଣ ଜୟନ୍ତୀ ପାଳନ ଉପଲକ୍ଷେ ଗର୍ବିତ, ଉଦ୍‌ଫୁଲ୍ଲିତ ତଥା ଅତୀତର ସେହି ଗୌରବମୟ ପରମ୍ପରାକୁ ପୁନଃଜାଗରିତ କରୁଛି ।

ସ୍ୱତନ୍ତ୍ର ଓଡ଼ିଶା ଗଠନର ଇତିହାସ ପୃଷ୍ଠାରେ ଥିବା ଏକ ଅଧ୍ୟାୟକୁ ଦୃଷ୍ଟିପାତ କଲେ ଦେଖାଯାଏ ଯେ, ପଞ୍ଚଦଶ ଶତାବ୍ଦୀରେ ଗଙ୍ଗାଠାରୁ ଗୋଦାବରୀ ନଦୀ ପର୍ଯ୍ୟନ୍ତ ବିସ୍ତୃତ ଥିବା ବିଶାଳ ଉତ୍କଳ ଭୂଖଣ୍ଡର ଭାଗ୍ୟ ବିପର୍ଯ୍ୟୟ ଓ କ୍ରମାନ୍ୱୟ ଅଙ୍ଗଚ୍ଛେଦ ପ୍ରକୃତରେ ଷୋଡ଼ଶ ଶତାବ୍ଦୀରୁ ଆରମ୍ଭ ହୋଇଥିଲା । ଏହାର ରାଜନୈତିକ ଆୟତନରେ କ୍ରମାଗତ ସଂକୋଚନ ଘଟି ଅଷ୍ଟାଦଶ ଶତାବ୍ଦୀ ବେଳକୁ ଉପକୂଳବର୍ତ୍ତୀ ମାତ୍ର ଚାରୋଟି ଜିଲ୍ଲା - କଟକ, ପୁରୀ, ବାଲେଶ୍ୱର, ଢେଙ୍କାନାଳ ଓ ଅନୁଗୁଳ ମଧ୍ୟରେ ସୀମିତ ହୋଇଯାଇଥିଲା । ଚତୁର୍ଦ୍ଦିଗରେ ପରିବେଷ୍ଟନ କରିଥିବା ଚାରୋଟି ବୃହତ୍ ପ୍ରଦେଶ - ବଂଗ, ବିହାର, ମଧ୍ୟପ୍ରଦେଶ ଓ ମାନ୍ଦ୍ରାଜ ଦ୍ୱାରା ସେତେବେଳେ ଓଡ଼ିଶାର ଅଧିକାଂଶ କ୍ଷେତ୍ର କବଳିତ ହୋଇ ସେଠାକାର ସ୍ଥାନୀୟ ଭାଷା, ସଂସ୍କୃତି ନିଷ୍ପେଷିତ ଓ ବିପନ୍ନ ହେବାକୁ ଲାଗିଲା । ଏଣୁ ଏହାର ପ୍ରତିବିଧାନ ଉଦ୍ଦେଶ୍ୟରେ ସମସ୍ତ ଓଡ଼ିଆ ଭାଷୀ ଅଞ୍ଚଳ ଏକତ୍ର କରି ଏକ ସ୍ୱତନ୍ତ୍ର ପ୍ରଦେଶ ଗଠନ ନିମନ୍ତେ ଊନବିଂଶ ଶତାବ୍ଦୀରେ ଦ୍ୱିତୀୟାର୍ଦ୍ଧରୁ ସାମୂହିକ ଭାବେ ବିଭିନ୍ନ ଅଞ୍ଚଳରେ ଉଦ୍ୟମ ହୋଇଥିଲା । ୧୯୩୬ ମସିହା ଏପ୍ରିଲ ପହିଲାରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଓ ଉତ୍କଳ ସମ୍ମିଳନୀର ଅକ୍ଳାନ୍ତ ଉଦ୍ୟମ ଓ ପୁରୋଧା କୁଳବୃଦ୍ଧ ମଧୁସୂଦନଙ୍କ ଯୋଗୁଁ ସମ୍ଭବ ହୋଇଥିଲା । ପରେ ଡଃ ମହତାବଙ୍କ ଉଦ୍ୟମରେ ୧୯୪୮-୪୯ରେ ଏହା ସହିତ ଓଡ଼ିଆ ଭାଷୀ ବହୁ ଗଡ଼ଜାତର ମିଶ୍ରଣ ଫଳରେ ବୃହତ୍ତମ ଓଡ଼ିଶା ବିକାଶ ଲାଭ କରିଥିଲା । ତେବେ ପ୍ରାୟ ଏକ ଚତୁର୍ଥାଂଶ ଓଡ଼ିଆ ଭାଷୀ ଅଂଚଳ ପଡ଼ୋଶୀ ପ୍ରଦେଶମାନଙ୍କରେ ଯେ ରହିଗଲା, ସେଗୁଡ଼ିକ ଆଉ ଫେରିଲା ନାହିଁ । ଏବେ ବି ବିଚ୍ଛିନ୍ନାଞ୍ଚଳର ଉନ୍ନତି କଳ୍ପେ ଓ ସର୍ବାଙ୍ଗୀନ ମିଶ୍ରଣ ଦିଗରେ 'ମଧୁବାହିନୀ' ଏବେ ବି ଆଶାବାଦୀ ।

ଏହି ସ୍ୱତନ୍ତ୍ର ପ୍ରଦେଶ ଗଠନ ଦିଗରେ ତତ୍କାଳୀନ ବଙ୍ଗପ୍ରଦେଶ ଅନ୍ତର୍ଗତ ଓଡ଼ିଶା ଡିଭିଜନ, ମାନ୍ଦ୍ରାଜ ଶାସିତ ଗଞ୍ଜାମ ଓ ମଧ୍ୟପ୍ରଦେଶ ଅଧିକୃତ ସମ୍ବଲପୁରର ଅଧିବାସୀମାନଙ୍କ ସମପରିମାଣର ଅବଦାନ ରହିଛି । ଏଥିପାଇଁ ଉତ୍କଳ ସମ୍ମିଳନୀ ଓ କୁଳବୃଦ୍ଧ ମଧୁସୂଦନ ଦାସ ପ୍ରମୁଖ ନେତୃବୃନ୍ଦଙ୍କ ତୁଲ୍ୟ ରାଜା ବାହାଦୂର ରାଜେନ୍ଦ୍ର ନାରାୟଣ ଭଂଜଦେଓ, ଶ୍ରୀରାମଚନ୍ଦ୍ର ଭଂଜଦେଓ, ହରିହର ସିଂହ ମର୍ଦ୍ଦରାଜ ଦେବ, ବିଶେଷ ଭାବେ ପାରଳା ମହାରାଜ କୃଷ୍ଣଚନ୍ଦ୍ର ଗଜପତି ଦେବ ଯେଉଁ ପରିମାଣରେ ସଂଗ୍ରାମ କରୁଥିଲେ, ତଦ୍ରୁପ ପଶ୍ଚାଦ୍ ଭାଗରୁ ଢେଙ୍କାନାଳର ଯୁବଜ୍ୟୋତି ଶ୍ରୀମାଗୁଣି ଚରଣ ସାହୁ, ଯୁବ ବିପ୍ଳବୀ ଶ୍ରୀ ବୈଷ୍ଣବ ଚରଣ ପଟ୍ଟନାୟକ, ଉତ୍କଳଜ୍ୟୋତି ଚନ୍ଦ୍ରଶେଖର ବେହେରା, କବି ଗଙ୍ଗାଧର ମେହେର, ପଞ୍ଚସଖା ବଳଭଦ୍ର ସୂପକାର, ମହନ୍ତ ବିହାରି ଦାସ, ବ୍ରଜମୋହନ ପଟ୍ଟନାୟକ, ମଦନମୋହନ ସାହୁ ଓ ଶ୍ରୀପତି ମିଶ୍ର ପ୍ରମୁଖ ସମ୍ବଲପୁରବାସୀ ଅନୁରୂପ ସଂଘର୍ଷ ଓ ଆନ୍ଦୋଳନ ଚଳାଇ ଥିଲେ । ଏ ସଂପର୍କୀୟ ପୃଷ୍ଠଭୂମିରେ ସମ୍ୟକ୍ ଅନୁଧ୍ୟାନ କଲେ ଜଣାଯାଏ ଯେ, ଏ

ଦିଗରେ ସର୍ବପ୍ରଥମେ ଗଞ୍ଜାମବାସୀମାନେ ସର୍ବାଧିକ କାଳ ସଂଘର୍ଷ କରି ୧୯୩୬ ମସିହାରେ ସ୍ୱତନ୍ତ୍ର ପ୍ରଦେଶକୁ ଚୂଡ଼ାନ୍ତ ରୂପ ଦେବାରେ ସହାୟକ ହୋଇଥିଲେ । ସେହିପରି ସମ୍ବଲପୁରବାସୀ ଊନବିଂଶ ଶତାବ୍ଦୀ ଶେଷ ଭାଗ ଓ ବିଂଶ ଶତାବ୍ଦୀର ଆଦ୍ୟଭାଗରେ ନିଜ ଜିଲ୍ଲାରେ ହିନ୍ଦୀଭାଷା ପ୍ରଚଳନ ବିରୁଦ୍ଧରେ ଓ ଓଡ଼ିଶା ସହ ସମ୍ବଲପୁରର ମିଶ୍ରଣ ସପକ୍ଷରେ ଦୀର୍ଘ ପ୍ରାୟ ଦଶବର୍ଷ ଆନ୍ଦୋଳନ ଚଳାଇଥିଲେ । ସେମାନେ ୧୯୦୩ ମସିହା ପ୍ରାରମ୍ଭରୁ ସ୍ୱୀୟ ମାତୃଭାଷାର ପୁନଃପ୍ରତିଷ୍ଠା କରାଇବା ସଂଗେସଂଗେ ୧୯୦୫ ମସିହା ଅକ୍ଟୋବର ୧୬ ତାରିଖରେ ଓଡ଼ିଶା ସହ ସମ୍ବଲପୁରର ମିଶ୍ରଣ ଘଟାଇ ସ୍ୱତନ୍ତ୍ର ପ୍ରଦେଶ ହେବା ଦିଗରେ ରହିଥିବା ବାଧା ଦୂର କରି ଦେଇଥିଲେ ଏବଂ ସ୍ୱତନ୍ତ୍ର ପ୍ରଦେଶ ଗଠନର ରୁଦ୍ଧଦ୍ୱାର ଉନ୍ମୋଚନ ପୂର୍ବକ ଏକ ମାର୍ଗ ଦର୍ଶନ କରାଇବାରେ ଅଗ୍ରଣୀ ଭୂମିକା ଗ୍ରହଣ କରିଥିଲେ । ସମ୍ବଲପୁରର ଏହି ଓଡ଼ିଆ ଆନ୍ଦୋଳନ ବ୍ରିଟିଶ୍ ଶାସକ ବର୍ଗଙ୍କ ମନରେ ଏପରି ରେଖାପାତ କଲା ଯେ, ସେମାନେ ସେତେବେଳେ ଓଡ଼ିଶା ସମେତ ଭାରତରେ ଅଯୌକ୍ତିକ ଭାବେ ହସ୍ତଗତ କରିଥିବା କେତେକ ପ୍ରଦେଶର ବାସ୍ତବିକ ସମସ୍ୟା ପ୍ରତି ସଚେତନ ହୋଇଥିଲା ଏବଂ ତର୍କ ସଂଗତଭାବେ ସେଗୁଡ଼ିକର ପୁନର୍ଗଠନ କରିବାର ଆବଶ୍ୟକତା ଉପଲବ୍ଧି କରିଥିଲା । ଏଥିପାଇଁ ଶାସକ ବର୍ଗଙ୍କୁ କେତେକ ଗୁରୁତ୍ୱପୂର୍ଣ୍ଣ ସିଦ୍ଧାନ୍ତ ନେବାକୁ ପଡ଼ିଥିଲା । ଏହାଫଳରେ ପରବର୍ତ୍ତୀ କେତେକ ବର୍ଷ ମଧ୍ୟରେ ଅନେକ ମହତ୍ୱପୂର୍ଣ୍ଣ ଐତିହାସିକ ଘଟଣା ପ୍ରବାହର ଉଦ୍‌ଭବ ହୋଇଥିଲା । ତା'ମଧ୍ୟରେ ୧୯୦୫ର ବଙ୍ଗ ବିଭାଜନ ଅନ୍ୟତମ, ସୁତରାଂ ଏସବୁର ବିଶଦ ଆଲୋଚନା ପର୍ଯ୍ୟାଲୋଚନା କରାଯିବା ଆବଶ୍ୟକ ।

ଇଂରେଜମାନଙ୍କ ଓଡ଼ିଶା ଦଖଲ ମଧ୍ୟରେ ୧୭୦୮ରେ ମେଦିନୀପୁର ଅଧିକାର ସର୍ବପ୍ରଥମ ଘଟଣା । ଏହାପରେ ସେମାନେ ୧୭୭୦ ଦଶକରେ ପ୍ରଥମ ଭାଗରେ ଗଞ୍ଜାମ ଏବଂ ୧୮୦୩ରେ କ୍ରମାନ୍ୱୟରେ ବାଲେଶ୍ୱର, ପୁରୀ ଓ କଟକ ହସ୍ତଗତ କରିଥିଲେ । ମେଦିନୀପୁର ଅଧିକାର କରିବା ପରେ ତାଙ୍କୁ ବଙ୍ଗପ୍ରଦେଶ ଅଧୀନରେ ରଖାଯାଇଥିଲା । ବ୍ରିଟିଶ୍ ହୁକୁମତର କୂଟନୀତି ଦୃଷ୍ଟିରୁ, ଅବଶ୍ୟ ପରେ ୧୮୨୯ରୁ ୧୮୫୪ ପର୍ଯ୍ୟନ୍ତ ଏହାକୁ ଓଡ଼ିଶା ସହ ସଂଯୋଗ କରି ରଖାଯାଇଥିଲା, ମାତ୍ର ପୁନର୍ବାର ବଙ୍ଗ ଶାସନାଧୀନରେ ରଖାଗଲା । ଏହି ଓଡ଼ିଶା ଭାଷୀ ଜିଲ୍ଲାର ଓଡ଼ିଆମାନଙ୍କର ସଂଖ୍ୟା ନ୍ୟୁନ କରି ଦର୍ଶାଇବା ନିମନ୍ତେ କ୍ରମାଗତ ଉଦ୍ୟମ ଓ ଚକ୍ରାନ୍ତ କରାଯାଇଥିଲା ଏବଂ ଏଥିପାଇଁ ସେଠାରେ ଜୋର୍ ଜବରଦସ୍ତ ଓଡ଼ିଆଭାଷା ଉଠାଇ ବଙ୍ଗଳା ଭାଷା ପ୍ରଚଳନର ବ୍ୟବସ୍ଥା ଫଳରେ, ସେଠାରେ ଓଡ଼ିଆଭାଷୀମାନେ ଅଗତ୍ୟା ବଙ୍ଗାଳୀରେ ପରିଣତ ହୋଇପଡ଼ିଲେ ଏବଂ ମେଦିନୀପୁର ପରେ ଆଉ ଓଡ଼ିଶା ସହ ମିଶିବା ସମ୍ଭବ ହେଲାନାହିଁ । ତେଣେ ଗଞ୍ଜାମ ଜିଲ୍ଲାକୁ ଇଂରେଜମାନେ ପ୍ରାରମ୍ଭରୁ ମାନ୍ଦ୍ରାଜ ପ୍ରଦେଶର ଶାସନାଧୀନରେ ରଖିଥିଲେ । ସର୍ବପ୍ରଥମେ ଏହି ଜିଲ୍ଲାରେ ହିଁ ୧୮୭୦ ମସିହାରେ ଓଡ଼ିଶାର ଦେଶ ମିଶ୍ରଣ ଆନ୍ଦୋଳନର ସୂତ୍ରପାତ ହୋଇଥିଲା । ମାତ୍ର ତତ୍କାଳୀନ ରାଜନୈତିକ ଓ ପ୍ରଶାସନିକ ଅବସ୍ଥା ତଥା ତେଲିଙ୍ଗୀ ନେତୃବୃନ୍ଦଙ୍କ ପ୍ରତିକୂଳ ମନୋଭାବ ଯୋଗୁଁ ତାହା ସଫଳ ହୋଇପାରିନଥିଲା । କଟକ ଓ ବାଲେଶ୍ୱର ଜିଲ୍ଲାରେ ୧୮୬୮ରୁ ୧୮୭୦ ମଧ୍ୟରେ ମେଦିନୀପୁର ପରି ଓଡ଼ିଆ ପରିବର୍ତ୍ତେ ବଙ୍ଗଳା ଭାଷା ପ୍ରବର୍ତ୍ତନ କରାଯିବା ଅଭିଯାନ କେତେକ ନ୍ୟସ୍ତ ସ୍ୱାର୍ଥ ଗୋଷ୍ଠୀ ବର୍ଗୀୟଙ୍କ ଦ୍ୱାରା ଚାଲିଥିଲା । ୧୮୬୮ ମସିହା ଡିସେମ୍ବର ମାସରେ କଟକ ଡିବେଟିଂ ସୋସାଇଟିରେ ପ୍ରଖ୍ୟାତ ପ୍ରତ୍ନତତ୍ତ୍ୱବିତ୍ ରାଜେନ୍ଦ୍ରଲାଲ ମିତ୍ରଙ୍କ ବଙ୍ଗଳା ଭାଷା ସହ ଓଡ଼ିଆ ଭାଷାର ମିଶ୍ରଣ ଉପରେ ପ୍ରଦତ୍ତ ଭାଷଣ ଏବଂ ୧୮୭୦ରେ ବାଲେଶ୍ୱରର ଶ୍ରୀ କ୍ରାନ୍ତିଚନ୍ଦ୍ର ଭଟ୍ଟାଚାର୍ଯ୍ୟଙ୍କ 'ଉଡ଼ିୟା ଏକ ସ୍ୱତନ୍ତ୍ର ଭାଷା ନୟ' ଶୀର୍ଷକ ପୁସ୍ତକ ଜରିଆରେ ଓଡ଼ିଆ ଭାଷା ଉଚ୍ଛେଦର ପ୍ରୟାସ ଉକ୍ତ ଓଡ଼ିଆ ଭାଷା ଆନ୍ଦୋଳନକୁ ତୀବ୍ରତର କରିଥିଲା, ମାତ୍ର ଏହା ବିରୋଧରେ ଶ୍ରୀ ଗୌରୀଶଙ୍କର ରାୟ ଉତ୍କଳଗୌରବ ମଧୁସୂଦନ, ବିଚିତ୍ରାନନ୍ଦ ଦାସ, ଫକୀରମୋହନ (ବ୍ୟାସକବି) ପ୍ରମୁଖ ନେତୃବୃନ୍ଦଙ୍କ ଦୃଢ଼ ସ୍ୱରଉତ୍ତୋଳନ ସହିତ କଲେକ୍ଟର ଜନ୍ ବିମସ୍ ଓ ସ୍କୁଲ ଇନିସ୍‌ପେକ୍ଟର ଭୂଦେବ ସୁଖୋପାଧ୍ୟାୟଙ୍କ ପରି ବିଜ୍ଞ ବ୍ୟକ୍ତିଙ୍କର ଓଡ଼ିଆ ଭାଷା ସପକ୍ଷରେ ଅନର୍ଗଳ ମତପ୍ରଦାନ ଯୋଗୁଁ ବଙ୍ଗୀୟମାନଙ୍କର ସେହି ହୀନ ଉଦ୍ୟମ ପଣ୍ଡ ହୋଇଥିଲା । ପରେ ୧୮୭୩ରେ ଗଞ୍ଜାମ ଜିଲ୍ଲାରେ ଓଡ଼ିଆ ଭାଷା ପରିବର୍ତ୍ତେ ସରକାରୀସ୍ତରରେ ତେଲୁଗୁ ଭାଷା ପ୍ରବର୍ତ୍ତନ କରାଯାଇଥିଲା ଏବଂ ଏହା ବିରୋଦ୍ଧରେ ଗଞ୍ଜାମବାସୀ ଦୀର୍ଘକାଳ ଆନ୍ଦୋଳନ ଚଳାଇବା ଫଳରେ ଶେଷରେ ୧୮୯୦ ମସିହାରେ ସେଠାରେ ଓଡ଼ିଆ ଭାଷା ପୁନଃପ୍ରତିଷ୍ଠିତ ହୋଇଥିଲା । କେତେକ ଗବେଷକ ଅଭିମତ ଦେଇଛନ୍ତି ଯେ, ଉତ୍କଳ ଅଞ୍ଚଳର ସେହି ଭାଷା ଆନ୍ଦୋଳନ ଓଡ଼ିଆ ଭାଷାର ଉନ୍ନତିକଳ୍ପେ ହିଁ ଉଦ୍ଦିଷ୍ଟ ଥିଲା । ଦେଶ ମିଶ୍ରଣ ଦିଗରେ ଅଭିପ୍ରେତ ନଥିଲା । ତାଙ୍କ ମତାନୁଯାୟୀ ସେହି ଭାଷା ଆନ୍ଦୋଳନ ସାମଗ୍ରିକ ଭାବେ ଓଡ଼ିଆ ଜାତି ମଧ୍ୟରେ ଜାତୀୟ ଚେତନା ଜାଗରଣରେ କିମ୍ବା ଉପାନ୍ତ ଓଡ଼ିଆ ଭାଷୀ ଅଞ୍ଚଳଗୁଡ଼ିକର ଏକତ୍ରୀକରଣ ଓ ସ୍ୱତନ୍ତ୍ର ପ୍ରଦେଶ ଗଠନ ଦିଗରେ ଜାତିକୁ ପ୍ରେରଣା ଦେଇନଥିଲା । ମାତ୍ର ପରବର୍ତ୍ତୀ କାଳରେ ୧୮୯୫ରେ ମଧ୍ୟପ୍ରଦେଶ ସମ୍ବଲପୁର ଜିଲ୍ଲାରେ ଓଡ଼ିଆ ଭାଷା ଉଠାଇ ହିନ୍ଦୀ ଭାଷା ପ୍ରବର୍ତ୍ତନ ଆଦେଶ ବାହାରିବା ପରେ ପ୍ରତିକ୍ରିୟା ସ୍ୱରୂପ ସେଠାରେ ଭାଷା ସୂତ୍ରରେ ଦେଶ ମିଶ୍ରଣ ପାଇଁ ଯେଉଁ ଆନ୍ଦୋଳନ ଚାଲିଥିଲା, ଶେଷରେ ଓଡ଼ିଆ ଭାଷାର ପୁନଃପ୍ରତିଷ୍ଠା କରାଯାଇପାରିଥିଲା । ଉକ୍ତ ଘଟଣା ଓଡ଼ିଆ ଜାତିର ପ୍ରାଣ କେନ୍ଦ୍ରକୁ ଆଲୋଡ଼ିତ କରିପକାଇଥିଲା । ଏହାର ସୁଦୂରପ୍ରସାରୀ ପ୍ରଭାବ ମଧ୍ୟ ସମସ୍ତ ଓଡ଼ିଆ ଭାଷୀ ଅଞ୍ଚଳରେ ତୀବ୍ର ରୂପ ଅନୁଭୂତ ହୋଇଥିଲା । ଏହାପରେ ଗଂଜାମବାସୀଙ୍କ ଓଡ଼ିଶା ସହିତ ମିଶିବା ପାଇଁ ବ୍ୟାକୁଳତା ପ୍ରକାଶ ପାଇଥିଲା ଏବଂ ସେମାନେ ଅନୁପ୍ରାଣିତ ହୋଇ ଦେଶ ମିଶ୍ରଣ ଆନ୍ଦୋଳନ ବ୍ୟାପକ କରିବା ନିମନ୍ତେ ୧୯୦୫ ଏପ୍ରିଲରେ ବ୍ରହ୍ମପୁରଠାରେ ଉତ୍କଳୀୟମାନଙ୍କ ଏକ ସମ୍ମିଳନୀ ଆୟୋଜନ କରିଥିଲେ । ଯହିଁରେ କଟକର ମଧୁସୂଦନ ପୁରୋଧା, ମୁଖ୍ୟ ପ୍ରବନ୍ଧକ

ଓ ପ୍ରବର୍ତ୍ତକର କାର୍ଯ୍ୟ ତୁଲାଇ ଥିଲେ । ଜାତୀୟ ଜାଗରଣ ବ୍ୟାପକ କରିବା ଦିଗରେ ସମ୍ବଲପୁରର ଅବଦାନ ଓ ଜାତୀୟ ସମ୍ମିଳନୀ ଗଠନ ଦିଗରେ ଗଡ଼ଜାତ ମିଶ୍ରଣ ଆନ୍ଦୋଳନର ଅନ୍ୟତମ ପ୍ରବକ୍ତା ଢେଙ୍କାନାଳର ଯୁବ ବିପ୍ଳବୀ ଦ୍ୱୟ ଶ୍ରୀ ବୈଷ୍ଣବ ଚରଣ ପଟ୍ଟନାୟକ ଓ ଶ୍ରୀ ମାଗୁଣି ଚରଣ ସାହୁ, ସମ୍ବଲପୁରର ଉତ୍କଳ ଜ୍ୟୋତି ଚନ୍ଦ୍ରଶେଖର ବେହେରା, କବି ଗଙ୍ଗାଧର ମେହେର, ପଞ୍ଚସଖା ବଳଭଦ୍ର ସୁପକର, ବ୍ରଜ ପଟ୍ଟନାୟକ, ମଦନମୋହନ ମିଶ୍ର ଓ ଶ୍ରୀପତି ମିଶ୍ର ପ୍ରମୁଖଙ୍କ ଅବଦାନ ଓ ଜାତୀୟ ସମ୍ମିଳନୀ ଗଠନ ଦିଗରେ ଗଞ୍ଜାମ ଭୂମିକାର ଭୂୟସୀ ପ୍ରଶଂସା ଉତ୍କଳ ସମ୍ମିଳନୀର ସେହି ପ୍ରଥମ ଅଧିବେଶନରେ କରାଯାଇଥିଲା । କାରଣ ସମ୍ବଲପୁରରେ ଓଡ଼ିଆ ଭାଷାର ଉଚ୍ଛେଦ ଓ ହିନ୍ଦୀ ଭାଷାର ପ୍ରଚଳନ ପ୍ରଥମେ ଢେଙ୍କାନାଳବାସୀଙ୍କୁ ବ୍ୟାକୁଳିତ କରିଥିଲା । ନିଜ ଜାତୀୟତା ଓ ଭାଷାର ସଂରକ୍ଷଣ ହିଁ ଏହି ଆନ୍ଦୋଳନର ପ୍ରଧାନ ଲକ୍ଷ୍ୟ ଥିଲା । 'ଭାଷା ସୂତ୍ରରେ ପ୍ରଦେଶ ଗଠନ' ସ୍ଲୋଗାନର ସୂତ୍ରପାତ ପ୍ରଥମେ ମଧୁବାବୁ ହିଁ କରିଥିଲେ । ସମ୍ବଲପୁରରୁ କେତେ ଦିନ ପୂର୍ବେ ଯେତେବେଳେ କଚେରୀମାନଙ୍କରେ ଓଡ଼ିଆ ଭାଷା ପରିବର୍ତ୍ତେ ବଙ୍ଗଳା ଭାଷା ଚାଲିଲା, ସେତେବେଳେ ସମ୍ବଲପୁରର ଓଡ଼ିଆମାନେ କାନ୍ଦି ଉଠିଲେ, କାନ୍ଦିବା ସ୍ୱାଭାବିକ, କାରଣ ଗୋଟିଏ ଗୋଟିଏ ରଣକୁଶଳୀ ପରିପୁଷ୍ଟ ଜାତିର ଭାଷାକୁ ବଳତ୍କାରରେ ଅଥବା ଚକ୍ରାନ୍ତରେ ଛଡ଼ାଇ ନେବା ଅର୍ଥ ଏକ ମଣିଷର ଦେହରୁ ତା'ର ହୃଦୟକୁ ବାହାର କରିନେବା ସଂଗେ ସମାନ । ସେଥିପାଇଁ ଉତ୍କଳବ୍ୟାପି ଉତ୍କଳୀୟଙ୍କ ହୃଦୟରେ ହାହାକାର ପଡ଼ିଗଲା । ପରିଶେଷରେ ଓଡ଼ିଶାର ଭାଇମାନଙ୍କ ଦୃଢ଼ଚେଷ୍ଟା, ମନରେ ଦୁଃଖ ଓ ସହାନୁଭୂତି ଫଳରେ ଅବା ଭଗବାନଙ୍କ ଅନୁଗ୍ରହରୁ ବଙ୍ଗଳାର ଛୋଟଲାଟ ଆଣ୍ଡୁ ଫ୍ରେଜର ଯେ କି ସେସମୟରେ ମଧ୍ୟପ୍ରଦେଶର ଭାଗ୍ୟବିଧାତା ରୂପେ ଠିଆ ହୋଇଥିଲେ ଏବଂ ଓଡ଼ିଶାବାସୀମାନଙ୍କୁ ଅଭୟ ଦେଇ ଓଡ଼ିଆ ଭାଷାକୁ ସମ୍ବଲପୁର କଚେରୀମାନଙ୍କରେ ଚଳାଇଲେ, ସେତେବେଳେ ମୃତପ୍ରାୟ ଓଡ଼ିଆ ଭାଷା ଓ ଜାତି ପୁନର୍ବାର ଜୀଇଁ ଉଠିଲା । ଆମ୍ଭେମାନେ ବିଚାରୁଛୁ ସେହିଦିନଠାରୁ ଉତ୍କଳୀୟମାନଙ୍କ ନବଯୁଗର ସୂର୍ଯ୍ୟୋଦୟ ହେଲା । କେତେଦିନ ପରେ ଗଞ୍ଜାମର ଭାଇମାନେ ବ୍ରହ୍ମପୁରଠାରେ ଏକ ଶୁଭ ବେଳାର ସଂଧିକ୍ଷଣରେ ଗୋଟିଏ ଜାତୀୟ ମେଳାର ସୂତ୍ରପାତ କଲେ । ଯଦିଚ ପୂର୍ବଘଟଣା (ସମ୍ବଲପୁର ଭାଷା ଆନ୍ଦୋଳନ)ରେ ଜାତୀୟ ଯୁଗ ପ୍ରଭାତର ଆଗାମୀ ସୂଚନା ଦେଇ ସାରିଥିଲେ । ବ୍ରହ୍ମପୁର ଜାତୀୟ ସମ୍ମିଳନୀ ସଭା ସ୍ଥାପନର ଏହା କଳ୍ପନା ଥିଲା । ଆଜି ଯେଉଁ ଜାତୀୟ ଭାବ ଉତ୍କଳରେ ଦେଖାଦେଇଛି ସେଥିନିମନ୍ତେ ଆମ୍ଭେମାନେ ସମ୍ବଲପୁର ଓ ଗଞ୍ଜାମବାସୀ ଭାଇମାନଙ୍କଠାରେ ଅନେକ ପରିମାଣରେ ଋଣୀ । ଏହି ପରିପ୍ରେକ୍ଷୀରେ କୌଣସି ଜାତି ପକ୍ଷରେ ୫୦ ବର୍ଷ ସମୟକାଳ କମ୍ ନୁହେଁ । ଏହାପୂର୍ବରୁ ବିଗତ ଦୁଇଶତାବ୍ଦୀ ଧରି ବିଦେଶୀ ଶାସନର ଅତ୍ୟାଚାରରେ ଜର୍ଜରିତ ଓ ଅତିଷ୍ଠ ହୋଇ ଏହି ଜାତି ଶୃଙ୍ଖଳା ମୁକ୍ତ ହେବାଲାଗି ପ୍ରୟାସୀ ହୋଇଉଠିଲା ଓ ନିଜକୁ ସ୍ୱତନ୍ତ୍ର ଭାବେ ପ୍ରତିଷ୍ଠିତ କରିବା ପାଇଁ ଦୃଢ଼ ସ୍ୱର ଉତ୍ତୋଳନ କଲା । ଏହି ପରିପ୍ରେକ୍ଷୀରେ ରାଜ୍ୟର ଅର୍ଦ୍ଧଶତାବ୍ଦୀର ବିକାଶ ଓ ଅଗ୍ରଗତି ଧାରାକୁ ବିଶ୍ଳେଷଣ କଲେ ଜଣାଯାଏ ଯେ, ଓଡ଼ିଶା ଏକ ସ୍ୱତନ୍ତ୍ର ପ୍ରଦେଶରେ ପରିଣତ ହେବା ପରଠାରୁ ବିଗତ ପାଞ୍ଚ ଦଶନ୍ଧି ଧରି ବିଭିନ୍ନ କ୍ଷେତ୍ରରେ ସାଫଲ୍ୟ ଓ ଅଗ୍ରଗତି ହାସଲ କରିଛି । ତଥାପି ଅନେକ କାର୍ଯ୍ୟ କରିବାକୁ ବାକି ରହିଛି । ଜାତୀୟ ପୁନର୍ଗଠନ ବିଷୟରେ ଚିନ୍ତାକଲେ ଏଥିରେ ସମସ୍ତେ ଏକମତ ହେବେ ଯେ, ଏହି କାର୍ଯ୍ୟ ଏପରି ଏକ ଦୁରୂହ ଓ କଷ୍ଟସାଧ କାର୍ଯ୍ୟ ଯେ, ଏହାର ପରିସମାପ୍ତି ଏତେଶୀଘ୍ର ସମ୍ଭବ ନୁହେଁ । ଏହା ଆମ ପାଇଁ ଏକ ଗୁରୁଦାୟିତ୍ୱ ଓ ଯୁବଶକ୍ତି ପାଇଁ ଆହ୍ୱାନ ମଧ୍ୟ । ଯେତେଦିନ ପର୍ଯ୍ୟନ୍ତ ଆମେ ଅଗଣିତ ଦରିଦ୍ରଙ୍କ ଚକ୍ଷୁରୁ ଅଶ୍ରୁମୋଚନ କରିପାରିନାହୁଁ ସେତେଦିନ ପର୍ଯ୍ୟନ୍ତ ଜାତୀୟ ପୁନର୍ଗଠନ ତଥା ଜାତି ନିର୍ମାଣ କାର୍ଯ୍ୟକୁ ତ୍ୱରାନ୍ୱିତ କରି ଅବ୍ୟାହତ ରଖିବାକୁ ପଡ଼ିବ ।

ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନର ସୁବର୍ଣ୍ଣ ଜୟନ୍ତୀ ଅତିକ୍ରାନ୍ତ ଅବସରରେ ଏତିକି ନିଃସନ୍ଦେହରେ କୁହାଯାଇପାରେ ଯେ, ଜାତୀୟ ପୁନର୍ଗଠନ ତଥା ସ୍ୱତନ୍ତ୍ର ବଳିଷ୍ଠ ଓ ସମୃଦ୍ଧ ଓଡ଼ିଶା ଗଠନ ଲାଗି ଜାତୀୟ ବୀର, ସ୍ୱାଧୀନତା ସଂଗ୍ରାମୀ ଓ ଅମର ଶହୀଦଗଣ ଯେଉଁ ଅପୂର୍ବ ତ୍ୟାଗ ବୀରତ୍ୱ ଓ ସାହସ ପ୍ରବର୍ତ୍ତନ କରିଯାଇଛନ୍ତି, ତାହା ପ୍ରଗତିର ଜୟଯାତ୍ରାରେ ଆଲୋକବର୍ତ୍ତିକା ଭଳି ନୂତନ ଆଲୋକର ସନ୍ଧାନ ଦେବ ତଥା ଦିଗ୍‌ଦର୍ଶନ ଦେବା ସଂଗେସଂଗେ ପ୍ରଗତିର ବେଗକୁ ଅବ୍ୟାହତ ରଖିବା ପାଇଁ ପ୍ରଗତିର ତୀଖ ରାସ୍ତାରେ ବିଶ୍ରାମ ନେବାର ମୁହୂର୍ତ୍ତ ମାତ୍ରେ ଅବକାଶ ନାହିଁ ବୋଲି ତୁହାଇ ତୁହାଇ ସ୍ମରଣ କରାଇ ଦେବା ସଂଗେସଂଗେ ପ୍ରେରଣାପ୍ରଦ ତଥା ଆମକୁ ଆମର ଦାୟିତ୍ୱବୋଧ ସଂପର୍କରେ ନିଶ୍ଚିତ ଭାବେ ସଚେତନ କରାଇବ । ଓଡ଼ିଶାର ସେହି ବୀର ସାହସୀ ଓ କୃତୀ ସନ୍ତାନଗଣ ଯେଉଁମାନଙ୍କର ଅସୀମ ତ୍ୟାଗ, ନିଷ୍ଠା, ଅକୁଣ୍ଠ ଶ୍ରମ ଓ କଷ୍ଟ ସ୍ୱୀକାର ବଳରେ ଓଡ଼ିଶା ଏକ ସ୍ୱତନ୍ତ୍ର ରାଜ୍ୟରେ ପରିଣତ ହୋଇପାରିଲା, ସେହି ବରପୁତ୍ରମାନଙ୍କ ମହନୀୟ ଆତ୍ମାର ଅମ୍ଳାନ ସ୍ମୃତି ଉଦ୍ଦେଶ୍ୟରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନର ସୁବର୍ଣ୍ଣ ଜୟନ୍ତୀ ପାଳନର ଏହି ଶୁଭ ଅବସରରେ 'ମଧୁବାହିନୀ' ଅନୁଷ୍ଠାନ ସେହି ଅମର ଆତ୍ମାଙ୍କ ଉଦ୍ଦେଶ୍ୟରେ ବିନମ୍ର ପ୍ରଣତି ଓ ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛି ।

ଆଜିର ଦିନରେ ଓଡ଼ିଆ ଜାତି ମଧ୍ୟରେ ସ୍ୱାଣୁତ୍ୱ ଓ ପରଶ୍ରୀକାତରତା, ପରହିଂସା ପ୍ରକାଶ ପାଇବାରେ ଲାଗିଲାଣି । ଆସନ୍ତୁ ଆଜିର ପବିତ୍ର ଦିନରେ 'ମଧୁବାହିନୀ' ସହିତ ହାତକୁ ହାତ ମିଳାଇ ଜାତିର ଉତ୍‌ଥାନ ଓ ଜାତୀୟ ଚୈତନ୍ୟ ଉଦୟ କରିବା ପାଇଁ ଜାତୀୟ କ୍ରାନ୍ତି ପଥରେ ପୁଷ୍ପିତ ପଥ ସୃଷ୍ଟି କରିବାରେ ସହାୟକ ହେବା, ଏହା ହିଁ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନର ସୁବର୍ଣ୍ଣ ଜୟନ୍ତୀର ସ୍ୱର୍ଣ୍ଣମୟ ଅବସରରେ ଆମର ଏତିକି କାମନା ।

ସାଧାରଣ ସଂପାଦକ
'ମଧୁବାହିନୀ', ଓଡ଼ିଶା
'ସାଧବ-ନିଳୟ', ମଂଗଳାବାଗ, କଟକ-୧



# ଓଡ଼ିଆ ଭାଷା ଓ ସାହିତ୍ୟ ପ୍ରେମୀ ରାଜା ବାସୁଦେବ ସୁଢ଼ଳ ଦେବ

ଅଧ୍ୟାପକ ପବିତ୍ର ମୋହନ ବାରିକ

**ବା**ମଣ୍ଡା ଗଙ୍ଗବଂଶର ସୁନାମଧନ୍ୟ ନରପତି ସାର୍ ବାସୁଦେବ ସୁଢ଼ଳ ଦେବ ତତ୍କାଳୀନ ଓଡ଼ିଶାର ରାଜନୈତିକ, ସାଂସ୍କୃତିକ, ସାମାଜିକ ଓ ସାହିତ୍ୟିକ ଇତିହାସରେ ଏକ ଉଲ୍ଲେଖନୀୟ ସ୍ଥାନ ଅଧିକାର କରିଥିଲେ । ସେ ଥିଲେ ଓଡ଼ିଆ ସାହିତ୍ୟ ଓ ସଂସ୍କୃତିର ପରମ ପୂଜାରୀ, ପୃଷ୍ଠପୋଷକ । ଜନପ୍ରିୟ ସୁଶାସକ ରୂପେ ଜନସାଧାରଣଙ୍କ ହୃଦୟକୁ ସେ ଯେଉଁଭଳି ସ୍ପର୍ଶ କରିଥିଲେ ଅନୁରୂପ ଭାବରେ ଓଡ଼ିଆ ଭାଷା ଓ ସାହିତ୍ୟର ସୁରକ୍ଷା ତଥା ସମୃଦ୍ଧି ପାଇଁ ତାଙ୍କର ପ୍ରଶଂସନୀୟ କାର୍ଯ୍ୟ ଦ୍ୱାରା ଓଡ଼ିଆମାନଙ୍କ ନିକଟରେ ଅବିସ୍ମରଣୀୟ । ବରେଣ୍ୟ ବିଦଗ୍ଧ ସାହିତ୍ୟ ପ୍ରେମୀ ଓ ସାରସ୍ୱତ ସାଧକ ରୂପେ ତାଙ୍କର ଅନବଦ୍ୟ କୃତିତ୍ୱ ଓ ଅମ୍ଲାନ ପୁଣ୍ୟ କୀର୍ତ୍ତି କାଳଜୟୀ ଇତିହାସ ପୃଷ୍ଠାରେ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ । ସୁପ୍ରସିଦ୍ଧ, ବିଜ୍ଞ ତଥା ଉଚ୍ଚକୋଟୀର ସୁସାହିତ୍ୟିକ ରୂପେ ଭାଷା ଓ ସାହିତ୍ୟ ଆନ୍ଦୋଳନରେ ତାଙ୍କର ସକ୍ରିୟ ଯୋଗଦାନ ତାଙ୍କୁ ଜଣେ ଖ୍ୟାତି ସଂପନ୍ନ ସାହିତ୍ୟ ସ୍ରଷ୍ଟା ରୂପେ ମାନ୍ୟତା ଦେଇଛି । ମାତୃଭୂମି ଓ ମାତୃଭାଷା ପ୍ରତି ଥିଲା ତାଙ୍କର ପ୍ରଗାଢ଼ ଅନୁରାଗ ଓ ଅସୀମ ଦୁର୍ବଳତା ।

୧୮୫୦ ଖ୍ରୀଷ୍ଟାବ୍ଦ ମେ ମାସ ୧୬ ତାରିଖ ଦିନ ବାମଣ୍ଡା ରାଜପରିବାରରେ ପିତା ହରିହର ଦେବ ଓ ମାତା ବିଜୟା କୁମାରୀଙ୍କ କୋଳମଣ୍ଡନ କରି ବାସୁଦେବ ଭୂମିଷ୍ଠ ହୋଇଥିଲେ । ୧୮୬୯ ଖ୍ରୀଷ୍ଟାବ୍ଦରେ ବାମଣ୍ଡା ରାଜ୍ୟର ରାଜଧାନୀ ଦେବଗଡ଼ରେ ରାଜସିଂହାସନ ଅଳଙ୍କୃତ କରିଥିଲେ । ସାର ବାସୁଦେବ ସୁଢ଼ଳ ଦେବଙ୍କ ଲୋକହିତକର ସୁଶାସନ ସହିତ ଓଡ଼ିଆ ସାହିତ୍ୟକୁ ତାଙ୍କର ଅତୁଳନୀୟ ମହାର୍ଘ୍ୟ ଅବଦାନ ତାଙ୍କୁ ଅଧିକ ସ୍ମରଣୀୟ କରି ରଖିଅଛି । ତାଙ୍କର ରାଜସଭାରେ ବହୁ ପ୍ରତିଭାଧର ବିଦ୍ୱାନ, ପଣ୍ଡିତ, କବି ଓ ଲେଖକମାନଙ୍କର ସମାବେଶ ଥିଲା । ବାସୁଦେବ ସୁଢ଼ଳ ଦେବ ଜଣେ ଗୁଣଗ୍ରାହୀ ଥିବାରୁ ତାଙ୍କର ପୃଷ୍ଠପୋଷକତା ଲାଭ ପାଇଁ ରାଜ୍ୟ ତଥା ରାଜ୍ୟ ବାହାରୁ ଅନେକ ସମ୍ମାନସ୍ପଦ ସାହିତ୍ୟ ରଥୀମାନେ ବାମଣ୍ଡାର ରାଜଧାନୀ ଦେବଗଡ଼ଠାରେ ଏକତ୍ରିତ ହୋଇଥିଲେ । ଯେଉଁ ବରପୁତ୍ରମାନେ ସୁଢ଼ଳ ଦେବଙ୍କ ରାଜଦରବାରକୁ ମହିମା ମଣ୍ଡିତ କରିଥିଲେ, ସେମାନଙ୍କ ମଧ୍ୟରେ ବାଙ୍କୀର ବୈଦେଶ୍ୱର ନିବାସୀ ପଣ୍ଡିତ ନୀଳମଣି ବିଦ୍ୟାରତ୍ନ, ବଡ଼ମ୍ବାର ଦୀକ୍ଷାଗୁରୁ ପଣ୍ଡିତ ଭୁବନେଶ୍ୱର ବଡ଼ପଣ୍ଡା, ପଣ୍ଡିତ ସୁଦର୍ଶନ ନ୍ୟାୟରତ୍ନ, ପଣ୍ଡିତ ଦାମୋଦର ମିଶ୍ର ପଦ୍ୟାଳଙ୍କାର, ପଣ୍ଡିତ ବନମାଳୀ ଗୁରୁ, ପଣ୍ଡିତ ଭାଗିରଥୀ ରଥ, ପଣ୍ଡିତ ମଧୁସୂଦନ ମିଶ୍ର ତର୍କ ବାଚସ୍ପତି ପ୍ରଭୃତି । ବାସୁଦେବ ସୁଢ଼ଳ ଦେବ ବହୁ ଯଶସ୍ୱୀ କବିମାନଙ୍କୁ ସାହାଯ୍ୟ ଓ ପ୍ରୋତ୍ସାହନ ପ୍ରଦାନ କରି ସେମାନଙ୍କର ସୃଜନ ଶକ୍ତି ଓ ପ୍ରତିଭାକୁ ଲୋକଲୋଚନରେ ଯଥାର୍ଥରେ ପ୍ରତିଷ୍ଠିତ କରିପାରିଥିଲେ । ବରେଣ୍ୟ ସ୍ୱଭାବ କବି ଗଙ୍ଗାଧର ମେହେର ନିଜ ରଚନାରେ ସୁଢ଼ଳ ଦେବଙ୍କର ପୃଷ୍ଠପୋଷକତାର ପ୍ରଶସ୍ତି ଶ୍ରଦ୍ଧାର ସହିତ ଉଲ୍ଲେଖ କରିଛନ୍ତି ।

'ଧନ୍ୟ ଧନ୍ୟ ବାସୁଦେବ ମହୀପାଳ ମଣି
ଧନ୍ୟ ଧନ୍ୟ କ୍ଷଣ ଜନ୍ମା ବୁଧ ନୀଳମଣି ।।
କରିଅଛ ମୋର ଯେତେ ଉପକାର
ମୋ ହୃଦେ ରହିଛି ସବୁ ସ୍ୱର୍ଣ୍ଣମୟଗାର ।।'

ବାସୁଦେବ ସୁଢ଼ଳ ଦେବ ସମସାମୟିକ ସାହିତ୍ୟ ଅନୁରାଗୀ, ବିଦ୍ୱାନ ପଣ୍ଡିତମାନଙ୍କୁ ସମ୍ମାନ ଓ ସ୍ୱୀକୃତି ଦେବାରେ କେବେ ଅବହେଳା କରିନାହାନ୍ତି । ରାଧାନାଥ ରାୟ ଇଂରେଜ ସରକାରଙ୍କଠାରୁ 'ରାୟବାହାଦୂର' ଉପାଧିରେ ବିଭୂଷିତ ହେବା ପରେ, ତାଙ୍କୁ ସ୍ୱାଗତ ସମ୍ବର୍ଦ୍ଧନା ଜ୍ଞାପନ କରିବା ଉଦ୍ଦେଶ୍ୟରେ ବାସୁଦେବ ସୁଢ଼ଳ ଦେବ ଦେବଗଡ଼ଠାରେ ମାନ୍ୟଗଣ୍ୟ ବ୍ୟକ୍ତିମାନଙ୍କର ଉପସ୍ଥିତିରେ ଏକ ବର୍ଣ୍ଣାଢ଼୍ୟ ସଭାର ଆୟୋଜନ କରିଥିଲେ । ସୁଢ଼ଳ ଦେବ ପ୍ରାଣ ଭରି ଭଲ ପାଉଥିଲେ ଓଡ଼ିଆ ଜାତି ଓ ଓଡ଼ିଆ ଭାଷାକୁ । ସାରସ୍ୱତ ସାଧକମାନଙ୍କୁ ଶୁଭେଚ୍ଛା ଜ୍ଞାପନ କରିବା ଓ ସମ୍ମାନ ଆଦର କରିବା ଥିଲା ତାଙ୍କର ଏକ ଦେବଦୁର୍ଲଭ ବ୍ୟକ୍ତିତ୍ୱର ନିଦର୍ଶନ । ଓଡ଼ିଆ ସାହିତ୍ୟର କାଳଜୟୀ ସ୍ରଷ୍ଟା ରାଧାନାଥ ରାୟ ତାଙ୍କ ଦରବାର ଦ୍ୱାରା 'କବିବର' ଉପାଧିରେ ବିଭୂଷିତ ହୋଇଥିଲେ । ଉତ୍କଳର ଗର୍ବ ଓ ଗୌରବ ଖଣ୍ଡପଡ଼ାର

ବିଶ୍ୱବିଖ୍ୟାତ ଜ୍ୟୋତିଷବିତ୍ ପଠାଣି ସାମନ୍ତଙ୍କୁ ସାହାଯ୍ୟ କରିବା ନିମନ୍ତେ ବାସୁଦେବ ସୁଢ଼ଳ ଦେବ ଆଗେଇ ଆସିଥିଲେ । କବିବର ରାଧାନାଥ ରାୟଙ୍କଠାରୁ ପଠାଣି ସାମନ୍ତଙ୍କର ପ୍ରତିଭା ସମ୍ବନ୍ଧରେ ସେ ଅବଗତ ହୋଇଥିଲେ । କବିବର ରାଧାନାଥ ରାୟଙ୍କ ହସ୍ତରେ ଦୁଇଶହ ଟଙ୍କା ପଠାଣି ସାମନ୍ତଙ୍କୁ ଦେବା ପାଇଁ ଅର୍ପଣ କରିଥିଲେ । ଏହି ଅର୍ଥ ତାଙ୍କ ସିଦ୍ଧାନ୍ତ ଦର୍ପଣ ପୁସ୍ତକ ପ୍ରକାଶ ପାଇଁ ସୁଢ଼ଳ ଦେବ ଦାନ କରିଥିଲେ ।

ସେ ନିଜ ସାହିତ୍ୟ ଅନୁରାଗର ପରିଚୟ ଦେଇ କଟକରେ ଏକ ମୁଦ୍ରଣ ଯନ୍ତ୍ର 'ସୁଢ଼ଳ ପ୍ରେସ୍' ସ୍ଥାପନ କରିଥିଲେ । ଓଡ଼ିଆ ସାହିତ୍ୟର ଶ୍ରୀବୃଦ୍ଧିରେ ଏହି ପ୍ରେସ୍‌ର ଉଲ୍ଲେଖନୀୟ କାର୍ଯ୍ୟ ପ୍ରଶଂସନୀୟ । ଅନେକ ଗ୍ରନ୍ଥ ଓ ପୁସ୍ତକ ଏହି ପ୍ରେସ୍‌ରୁ ପ୍ରକାଶିତ । ପରବର୍ତ୍ତୀ ସମୟରେ ସେ ଦେବଗଡ଼ରେ 'ଜଗନ୍ନାଥ ବଲ୍ଲଭ ପ୍ରେସ୍' ପ୍ରତିଷ୍ଠା କଲେ । ଓଡ଼ିଆ ସାହିତ୍ୟର ପ୍ରସାରର ବୃଦ୍ଧିରେ ଏହା ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଆସିଥିଲା । ଜଗନ୍ନାଥ ବଲ୍ଲଭ ପ୍ରେସ୍‌ରୁ ଅନେକ ପୁସ୍ତକ ଓ ପତ୍ରପତ୍ରିକା ପ୍ରକାଶିତ ହୋଇ ବାମଣ୍ଡା ରାଜ୍ୟର ସାଂସ୍କୃତିକ ଦିଗ୍‌ବଳୟକୁ ଉଦ୍‌ଭାସିତ କରିଥିଲା । ଶିକ୍ଷା ଓ ସାହିତ୍ୟର ଅଭିବୃଦ୍ଧିରେ ଜଗନ୍ନାଥ ବଲ୍ଲଭ ପ୍ରେସ୍ ସେ ସମୟରେ ଏକ ଯୁଗାନ୍ତକାରୀ ଅଧ୍ୟାୟ ସୃଷ୍ଟି କରିଥିଲା । ଶ୍ରୀଜଗନ୍ନାଥ ବଲ୍ଲଭ ମୁଦ୍ରଣାଳୟରୁ 'ସମ୍ବଲପୁର ହିତୈଷିଣୀ' ନାମକ ଏକ ସାପ୍ତାହିକ ପ୍ରଥମେ ଆତ୍ମପ୍ରକାଶ କରି ସମଗ୍ର ଓଡ଼ିଶାରେ ସାହିତ୍ୟାକାଶକୁ ଉଜ୍ଜ୍ୱଳ କରିଥିଲା । ସାର ବାସୁଦେବ ସୁଢ଼ଳ ଦେବ ସମ୍ବଲପୁର ହିତୈଷିଣୀର ଥିଲେ ମୁଖ୍ୟ ପୃଷ୍ଠପୋଷକ । ରାଜକୁମାର ଉଚ୍ଚ ଇଂରାଜୀ ବିଦ୍ୟାଳୟର ବରେଣ୍ୟ ଶିକ୍ଷକ ପଣ୍ଡିତ ନୀଳମଣି ବିଦ୍ୟାରତ୍ନ ପତ୍ରିକାର ସଂପାଦକ ରୂପେ ନିଷ୍ଠାର ସହିତ ସଂପାଦନା କାର୍ଯ୍ୟ କରୁଥିଲେ । ସମ୍ବଲପୁର ହିତୈଷିଣୀ ତତ୍କାଳୀନ ସମୟରେ ଓଡ଼ିଆ ଭାଷା, ସାହିତ୍ୟ, ସଂସ୍କୃତି ଓ ପରମ୍ପରାର ମୁଖପତ୍ର ରୂପେ କାର୍ଯ୍ୟ କରୁଥିଲେ । ବହୁ କୃତବିଦ୍ୟ କବି, ଲେଖକ, ସାହିତ୍ୟିକମାନେ ନିଜ ସାରସ୍ୱତ ପ୍ରତିଭା ଓ ସୃଜନଶକ୍ତିର ପରିଚୟ ଏହି ପତ୍ରିକା ମାଧ୍ୟମରେ ପ୍ରଦାନ କରିଥିଲେ । ବ୍ୟାସକବି ଫକୀର ମୋହନ ସେନାପତି ଏହି ସାପ୍ତାହିକ ପତ୍ରିକା ଓ ବାସୁଦେବ ସୁଢ଼ଳ ଦେବଙ୍କୁ ଶତମୁଖରେ ପ୍ରଶଂସା କରି ଉଲ୍ଲେଖ କରିଥିଲେ -

'ହେଁ ସୁଢ଼ଳ ମହାରାଜ କରେ ନମସ୍କାର
ହିତୈଷିଣୀ ତୁମ୍ଭ ଯଶ କରୁଛି ପ୍ରଚାର ।'

ସାର ବାସୁଦେବ ସୁଢ଼ଳ ଦେବଙ୍କ ରାଜତ୍ୱ ସମୟରେ 'ସମ୍ବଲପୁର ହିତୈଷିଣୀ' ବ୍ୟତୀତ ଅନ୍ୟ କେତୋଟି ପତ୍ରିକା ମଧ୍ୟ ବାମଣ୍ଡା ରାଜ୍ୟରୁ ପ୍ରକାଶିତ ହୋଇ ଆସୁଥିଲା । ସେଗୁଡ଼ିକ ମଧ୍ୟରେ ୧୮୯୩ ଖ୍ରୀଷ୍ଟାବ୍ଦରେ 'ବିଜୁଳି', ୧୯୦୦ ଖ୍ରୀଷ୍ଟାବ୍ଦରେ 'ଉତ୍କଳ ମଧୁପ' ଓ 'ଆଲୋଚନା' ପ୍ରଭୃତି ଓଡ଼ିଶାର ସାହିତ୍ୟିକ ବାତାବରଣକୁ ଅଧିକ ରସସିକ୍ତ ଓ ପ୍ରାଣବନ୍ତ କରି ଗଢ଼ି ତୋଳିଥିଲା । କବିବର ରାଧାନାଥ ରାୟ ଥିଲେ ବାସୁଦେବ ସୁଢ଼ଳ ଦେବଙ୍କର ଅନ୍ତରଙ୍ଗ ବନ୍ଧୁ ଓ ହିତାକାଂକ୍ଷୀ । ଉତ୍କଳ ଜନନୀର ଏହି ଦୁଇ ବରପୁତ୍ରଙ୍କ ମଧ୍ୟରେ ସାରସ୍ୱତ ସଂପର୍କ ଥିଲା ଅତି ନିବିଡ଼ ଓ ନିଃସ୍ୱାର୍ଥପର । ବାସୁଦେବ ସୁଢ଼ଳ ଦେବଙ୍କର ଭାଷା ଓ ସାହିତ୍ୟ ପ୍ରତି ଅସୀମ ପ୍ରୀତି କବିବରଙ୍କୁ ଆମୋଦିତ କରିଥିଲା । ତେଣୁ ସେ ତାଙ୍କ 'ମହାଯାତ୍ରା' କାବ୍ୟରେ ଯେଉଁ ରାଜପ୍ରଶସ୍ତି ପ୍ରଦାନ କରିଥିଲେ, ତାହା ଥିଲା ଅତୀବ ହୃଦୟସ୍ପର୍ଶୀ ଓ ମନୋଜ୍ଞ । ବାସୁଦେବ ସୁଢ଼ଳ ଦେବଙ୍କର ସାରସ୍ୱତ ସୌରଭ ଓ ଗୌରବକୁ ଲକ୍ଷ୍ୟ କରି କବିବର ଉଲ୍ଲେଖ କରିଥିଲେ -

'ତୁମ୍ଭ ଶୁଭ ଆବିର୍ଭାବ ହୋଇଛି ଉତ୍କଳେ
ଦେବ ଦୁର୍ଗ ଦେବ ତୀର୍ଥ ସାରସ୍ୱତ
ବୁଧହଂସ କେଳିସର ଅବିଦ୍ୟା ଭାଷାରେ ।'

ସୁଢ଼ଳ ଦେବ ଜଣେ ଉଚ୍ଚକୋଟୀର ସୁସାହିତ୍ୟିକ ରୂପେ ଖ୍ୟାତି ଅର୍ଜନ କରିଥିଲେ । 'ଅଳଙ୍କାର ବୋଧୋଦୟ' ନାମକ ଅଳଙ୍କାରିକ ସାହିତ୍ୟ ୧୮୮୬ ମସିହାରେ ତାଙ୍କ ଦ୍ୱାରା ଓଡ଼ିଆ ଭାଷାରେ ପ୍ରକାଶିତ ହୋଇଥିଲା । ଉକ୍ତ ପୁସ୍ତକ ଥିଲା ତାଙ୍କ ଅଗାଧ ପାଣ୍ଡିତ୍ୟର ପରିଚୟ । ସୁଢ଼ଳ ଦେବଙ୍କର ଶ୍ରେଷ୍ଠ ସଫଳ କୃତି ରୂପେ 'ଚିତ୍ରୋତ୍ପଳା' କାବ୍ୟ ସୁବିଦିତ । ପ୍ରାଣାଧିକ ପ୍ରିୟ ପତ୍ନୀ ଗିରିରାଜ କୁମାରୀଙ୍କ ଅକାଳ ବିୟୋଗରେ ମର୍ମାହତ ହୋଇ ଦୁଃଖ ଲାଘବ ନିମନ୍ତେ ତୀର୍ଥାଟନ ଓ ଦେଶ ଭ୍ରମଣରେ ଯିବା ପାଇଁ ସେ ଇଚ୍ଛା ପ୍ରକାଶ କଲେ । ସମ୍ବଲପୁରରୁ ମହାନଦୀ ବକ୍ଷରେ ସୁଢ଼ଳ ଦେବ ରାଜ କର୍ମଚାରୀ ଓ ବିଦ୍ୱାନ ପଣ୍ଡିତମାନଙ୍କୁ ସଙ୍ଗରେ ଧରି ଐତିହାସିକ ଯାତ୍ରା ଆରମ୍ଭ କରିଥିଲେ । ମହାନଦୀର ଅନ୍ୟ ନାମ 'ଚିତ୍ରୋତ୍ପଳା' । ଯାତ୍ରା ସମୟରେ ଚିତ୍ରୋତ୍ପଳା ନଦୀର ଦୁଇ ପାର୍ଶ୍ୱର ପ୍ରାକୃତିକ ସୌନ୍ଦର୍ଯ୍ୟ, ମନଲୋଭା, ମନୋରମ ଦୃଶ୍ୟ ସ୍ୱଚ୍ଛକାରୀ ଧାର ସୁଢ଼ଳ ଦେବଙ୍କ ହୃଦୟକୁ ଆନ୍ଦୋଳିତ ଓ ଆତ୍ମବିଭୋରିତ କରିଥିଲା । ତେଣୁ ସେ 'ଚିତ୍ରୋତ୍ପଳା' କାବ୍ୟ ରଚନାରେ ମନୋନିବେଶ କଲେ । ଚିତ୍ରୋତ୍ପଳା କାବ୍ୟ ସାଂସ୍କୃତିକ ଓ ଐତିହାସିକ ପୃଷ୍ଠଭୂମି ଉପରେ ବିରଚିତ । ମହାନଦୀର ଦୁଇ ତଟ ଦେଶରେ ଥିବା ପ୍ରାଚୀନ ସହର, ଐତିହ୍ୟ ବିମଣ୍ଡିତ ବହୁ ଦେବାଦେବୀ ମନ୍ଦିର ସହିତ ପୂର୍ବତନ ଗଡ଼ଜାତର ରାଜ୍ୟ ସୋନପୁର, ବୌଦ୍ଧ, ଦଶପଲ୍ଲାର ବର୍ଣ୍ଣନା ସୁଢ଼ଳ ଦେବଙ୍କ ଲେଖନୀ ମୁନରେ ସ୍ଥାନ ପାଇଛି । ସୋନପୁରର 'ସୁବର୍ଣ୍ଣ ମେରୁ ମହାଦେବ'ଙ୍କ ମନ୍ଦିର, କଣ୍ଟିଲୋର 'ଶ୍ରୀନୀଳମାଧବ ମନ୍ଦିର', ବଡ଼ମ୍ବାର ଭଟ୍ଟାରିକା ଓ ସିଂହନାଥ, ବାଙ୍କୀର ରାମନାଥ, ବୈଦେଶ୍ୱରନାଥ ଓ ସ୍ୱପ୍ନେଶ୍ୱର ମହାଦେବ, ଆଠଗଡ଼ର ସର୍ପେଶ୍ୱର ଓ ମଞ୍ଜେଶ୍ୱର ତଥା କଟକର ଧବଳେଶ୍ୱର ପ୍ରଭୃତି ଦେବାଦେବୀଙ୍କର ମନ୍ଦିର ସଂପର୍କରେ ସୁଢ଼ଳ ଦେବଙ୍କର ଚିତ୍ରୋତ୍ପଳା କାବ୍ୟରେ ସୁନ୍ଦର ବର୍ଣ୍ଣନା ରହିଛି । ଚିତ୍ରୋତ୍ପଳା ନଦୀର ଆବିର୍ଭାବ ଓ ସଂପର୍କରେ କବି ଚିତ୍ରୋତ୍ପଳା କାବ୍ୟରେ ଉଲ୍ଲେଖ କରିଛନ୍ତି -

'ମଧ୍ୟପ୍ରଦେଶର କିୟଦଂଶ ନେଇ ଉତ୍କଳ ବକ୍ଷସ୍ଥଳେ
ପ୍ରବାହିତ ହେଉଅଛି ଚିତ୍ରୋତ୍ପଳା ମହାନଦୀ ନାମ ଛଳେ ।'

ରାଣୀ ଲକ୍ଷ୍ମୀବାଈଙ୍କର ଉତ୍ସର୍ଗୀକୃତ ବୀରତ୍ୱପୂର୍ଣ୍ଣ କାହାଣୀକୁ ଅବଲମ୍ବନ କରି ସୁତ୍ରଳ ଦେବ ଏକ ଐତିହାସିକ କାବ୍ୟ 'ବୀର ବାମା' ରଚନା କରିଥିଲେ । ସୁତ୍ରଳ ଦେବଙ୍କ ବାମଣ୍ଡା ରାଜ୍ୟ ଯଦିଓ ଇଂରେଜମାନଙ୍କର ଅଧୀନସ୍ଥ ଥିଲା, ତଥାପି ସେ 'ବୀର ବାମା' ରଚନା କରି ନିଜର ନିର୍ଭିକତା ଓ ଅସୀମ ସାହସ, ଜାତୀୟତାବୋଧ, ସ୍ୱଦେଶପ୍ରେମ ଓ ଦେଶଭକ୍ତିର ପରିଚୟ ଦେଇଛନ୍ତି । 'ବୀର ବାମା'ରେ ସୁତ୍ରଳ ଦେବ ବର୍ଣ୍ଣନା କରିଛନ୍ତି -

'ଦେଖି ଏ ଗର୍ହିତ ବିଧି ଲକ୍ଷ୍ମୀବାଈ ରାଣୀ
ଜଳିଲେ କ୍ରୋଧରେ ଦାବାନଳ ପରିମାଣି ।'

ସ୍ୱତନ୍ତ୍ର ଉତ୍କଳ ସମ୍ମିଳନୀରେ ୧୯୦୩ ମସିହାରେ ପ୍ରଥମ ଅଧିବେଶନରେ ସଭାପତି ଆସନ ଅଳଙ୍କୃତ କରିବା ପାଇଁ ଉତ୍କଳ ଗୌରବ ମଧୁସୂଦନ ସୁତ୍ରଳ ଦେବଙ୍କୁ ନିମନ୍ତ୍ରଣ କରିଥିଲେ । କିନ୍ତୁ ଏହା ପୂର୍ବରୁ ସେ ଚିରଦିନ ପାଇଁ ପାର୍ଥିବ ଜଗତରୁ ବିଦାୟ ନେଲେ । ତାଙ୍କର ପୁଣ୍ୟକୀର୍ତ୍ତି ଉପଲକ୍ଷେ ଓଡ଼ିଆ ଜାତିର ତାଙ୍କ ପ୍ରତି ଗଭୀର ଶ୍ରଦ୍ଧାଞ୍ଜଳି ।

ସନାତନ ହରିଚନ୍ଦନ ମହାବିଦ୍ୟାଳୟ
ମଦନପୁର, ଖୋର୍ଦ୍ଧା-୭୫୨୦୫୪

## କିଓସ୍କ ମାଧ୍ୟମରେ ଆତ୍ମନିଯୁକ୍ତି ଯୋଜନା ୧୦୩ଟି ପୌରାଞ୍ଚଳରେ କାର୍ଯ୍ୟକାରୀ ହେବ

ସହରାଞ୍ଚଳ ଶିକ୍ଷିତ ବେକାରମାନଙ୍କୁ ଆତ୍ମନିଯୁକ୍ତି ଦେବା ଉଦ୍ଦେଶ୍ୟରେ 'କିଓସ୍କ' ଯୋଜନା ରାଜ୍ୟରେ କାର୍ଯ୍ୟକାରୀ କରାଯାଉଛି । ଏହା ସମସ୍ତ ୧୦୩ଟି ପୌରାଞ୍ଚଳରେ କାର୍ଯ୍ୟକାରୀ କରାଯାଉଛି । ଏଥିପାଇଁ ହିତାଧିକାରୀ ଅନ୍ୟୂନ ମାଟ୍ରିକ୍ ପାସ୍ କରିଥିବା ଆବଶ୍ୟକ । କିଓସ୍କ ମାଧ୍ୟମରେ ଆତ୍ମନିଯୁକ୍ତି ଏହି ଯୋଜନାର ମୂଳଲକ୍ଷ୍ୟ । ଏହି ଯୋଜନା ପାଇଁ ଆବଶ୍ୟକ ଜମି ସରକାର ବିନାମୂଲ୍ୟରେ ସଂପୃକ୍ତ ପୌର ପରିଷଦକୁ ଯୋଗାଇ ଦେଇଛନ୍ତି । ସଂପୃକ୍ତ ପୌର ପରିଷଦ ୨୦୦ ବର୍ଗଫୁଟ ପରିମିତ ଜମିରେ କିଓସ୍କ ପ୍ରାୟ ଟ.୫୦,୦୦୦/- (ପଚାଶ ହଜାର)ରେ ନିର୍ମାଣ କରି ଉପଯୁକ୍ତ ବିବେଚିତ ଶିକ୍ଷିତ ବେକାର ଯୁବକ ଓ ଯୁବତୀମାନଙ୍କୁ ଯୋଗାଇ ଦେବେ । ସଂପୃକ୍ତ ହିତାଧିକାରୀମାନେ ଏହି ଟଙ୍କାକୁ ଏକାଥରକେ ବା ଉପଯୁକ୍ତ କିସ୍ତିରେ ପୌର ପରିଷଦରେ ପୈଠ କରିବାକୁ ପଡ଼ିବ ବୋଲି ଗୃହ ନିର୍ମାଣ ଓ ନଗର ଉନ୍ନୟନ ବିଭାଗ ସୂତ୍ରରୁ ପ୍ରକାଶ ।

ଏହି ଯୋଜନାରେ ସହରାଞ୍ଚଳ ଗରିବ, ଅନୁସୂଚିତ ଜାତି ଓ ଉପଜାତି, ଭିନ୍ନକ୍ଷମ ଓ ମହିଳାମାନଙ୍କୁ ଅଗ୍ରାଧିକାର ଦିଆଯିବ । ହିତାଧିକାରୀମାନେ ଦୋକାନ ଘରଗୁଡ଼ିକରେ ନିତ୍ୟ ବ୍ୟବହାର୍ଯ୍ୟ ଜିନିଷର ବିକ୍ରିବଟା ସାଙ୍ଗକୁ ବିଭିନ୍ନ ଅତ୍ୟାବଶ୍ୟକୀୟ ସେବା କେନ୍ଦ୍ରମାନ ପ୍ରତିଷ୍ଠା କରିପାରିବେ । ସ୍ୱୟଂ ସହାୟକ ଗୋଷ୍ଠୀଗୁଡ଼ିକ ଦ୍ୱାରା ଉତ୍ପନ୍ନ କରାଯାଉଥିବା ଜିନିଷଗୁଡ଼ିକର ବିକ୍ରି ପାଇଁ ମଧ୍ୟ ଶିକ୍ଷିତ ବେକାରମାନଙ୍କୁ କିଓସ୍କ ଯୋଗାଇ ଦିଆଯିବ ।

ଏଥିପାଇଁ ପୌରାଞ୍ଚଳର ମୁଖ୍ୟ କାର୍ଯ୍ୟନିର୍ବାହୀ କିମ୍ବା ଜିଲ୍ଲା ନିଯୋଜନ ଅଧିକାରୀଙ୍କୁ ଯୋଗାଯୋଗ କରାଯାଇପାରେ ବୋଲି ଗୃହ ଓ ନଗର ଉନ୍ନୟନ ବିଭାଗ, ଓଡ଼ିଶା ସରକାରଙ୍କ ପକ୍ଷରୁ ଜଣାଇ ଦିଆଯାଇଛି ।

# ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ

ଶ୍ରୀନିବାସ ଆଚାର୍ଯ୍ୟ

୧୯୩୬ ମସିହା ଏପ୍ରିଲ ୧ ତାରିଖ ସମଗ୍ର ଓଡ଼ିଶାବାସୀଙ୍କ ପାଇଁ ଏକ ଗର୍ବ ଓ ଗୌରବର ଦିବସ ଅଟେ । ବିଗତ ଚାରି-ପାଞ୍ଚ ଶହ ବର୍ଷ ଧରି ଆଜିର ଉତ୍କଳ ମାତା ଥିଲା ଏକ ସୀମାହୀନ, ଜାତିହୀନ ଓ ଭାଷାହୀନ ବିଚ୍ଛିନ୍ନ ଭୂଖଣ୍ଡ ସଦୃଶ । ଅତୀତରେ ଏହି ମାଟି ଉପରେ ବିଭିନ୍ନ ଅଂଶ ଓ ଜାତିର ରାଜା, ସମ୍ରାଟ, ବଡ଼ଲାଟ ଇତ୍ୟାଦିଙ୍କ ରାଜତ୍ୱ ସମୟରେ ପ୍ରାଚୀନ କଳା, ସଂସ୍କୃତି, ଐତିହ୍ୟ, ପରମ୍ପରା, ସାମାଜିକ ରୀତିନୀତି ଇତ୍ୟାଦିର ମାନଦଣ୍ଡ ଅବକ୍ଷୟ ହେବା ସଂଗେସଂଗେ ଭାଷାର ପତନ ଓ ଭୂଖଣ୍ଡର ପରିସୀମା ସଙ୍କୁଚିତ ହୋଇଥିଲା । ଏପରିକି ଓଡ଼ିଆ ଜାତିର ବଡ଼ ପଣିଆଁର ଗୌରବ ତଥା ସ୍ୱାଭିମାନ, ଆତ୍ମସମ୍ମାନ ଓ ଦେଶାତ୍ମକ ଭାବଧାରା ପ୍ରତି ବଡ଼ କୁଠାରଘାତ ହୋଇଥିଲା । ଫଳରେ ପ୍ରାଚୀନ ଉତ୍କଳର ମାନ ସମ୍ମାନ ଓ ଅଭୁଲା ସ୍ମୃତି ଭାରତ କାହିଁକି ବିଶ୍ୱସ୍ତରରେ ବିଲୋପ ଆଡ଼କୁ ମୁହାଁଇଲା । ଓଡିଆପୁଅ ପରାଧୀନତା ଶୃଙ୍ଖଳରୁ ମୁକ୍ତିଲାଭ କରି ଅର୍ଥାତ୍ ତାର ଭୂଖଣ୍ଡର ନିର୍ଦ୍ଦିଷ୍ଟ ସୀମା ଓ ଭାଷାର ସ୍ୱାଧୀନତା ଲାଭ କରିଥିଲା । ତେଣୁ ଏହି ଦିବସଟି ଏପ୍ରିଲ ୧ ତାରିଖ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ଦିବସ ରୂପେ ସୁପରିଚିତ ।

ଦିନଥିଲା ଉତ୍କଳ ଜନନୀ ତାର କଳା, ସଂସ୍କୃତି, ବାଣିଜ୍ୟ, ସାମରିକ, ଭାଷା ଓ ସାହିତ୍ୟ ପାଇଁ ବିଶ୍ୱସ୍ତରରେ ଏକ ଶ୍ରେଷ୍ଠ ସାମ୍ରାଜ୍ୟ ଭାବରେ ମୁଣ୍ଡ ଟେକିଥିଲା । ଓଡ଼ିଶା ଇତିହାସର ପୃଷ୍ଠା ଉନ୍ମୋଚନ କଲେ ଜଣାଯାଏ କଳିଙ୍ଗର ସାଧବପୁଅ, ବୀର, ଯୋଦ୍ଧାଗଣ ସାତ ସମୁଦ୍ର ଓ ତେର ନଈ ପାରି ହୋଇ ଜାଭା, ସୁମାତ୍ରା, ବୋର୍ଣ୍ଣିଓ ଓ ବାଲି ଆଦି ଦ୍ୱୀପାଞ୍ଚଳରେ ନୌବାଣିଜ୍ୟ ବ୍ୟବସାୟ କରି ଉତ୍କଳର ଯଶ ଓ ଖ୍ୟାତିକୁ ବିଶ୍ୱଦରବାରରେ ପହଞ୍ଚାଇ ପାରିଥିଲା । ଖ୍ରୀ.ପୂ.୨୬୮ରେ ମୌର୍ଯ୍ୟ ବଂଶର ରାଜା ଅଶୋକ କଳିଙ୍ଗ ଜୟ କରି ଚଣ୍ଡାଶୋକରୁ ଧର୍ମାଶୋକରେ ଦୀକ୍ଷିତ ହୋଇଥିଲେ । ଖ୍ରୀ.ପୂ.୩୮ରୁ ୨୮ ଦୀର୍ଘ ଦଶ ବର୍ଷ ଧରି ମହାମେଘବାହାନ ଐର ଖାରବେଳ କଳିଙ୍ଗର ମାନ ସମ୍ମାନକୁ ଦ୍ୱିଗୁଣିତ କରିଥିଲେ । ତତ୍କାଳୀନ ସମୟରେ କଳିଙ୍ଗ ହିମାଳୟ ଉପକଣ୍ଠରୁ କୁମାରିକା ପର୍ଯ୍ୟନ୍ତ ବିସ୍ତାର ଲାଭ କରିଥିଲା । ଏହି ପୀଠଭୂମିରେ ଭୌମବଂଶୀୟ ରାଜା ମହାଶିବଗୁପ୍ତ ଯଯାତି ଦ୍ୱିତୀୟ ୩୯୫ ଖ୍ରୀଷ୍ଟାବ୍ଦରେ ସିଂହାସନ ଆରୋହଣ କରି ଖଣ୍ଡ ବିଖଣ୍ଡ ହୋଇଥିବା ରାଜ୍ୟ କଳିଙ୍ଗ, କଙ୍ଗୋଦ, ଉତ୍କଳ ଓ କୋଶଳକୁ ମିଶାଇ ଏକ ବିଶାଳ ଓଡ଼ିଶା ଗଠନ କରିଥିଲେ । ଏହି ବଂଶର ରାଜତ୍ୱ ସମୟରେ ଉତ୍କଳର ସୀମା ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ ବିସ୍ତୃତ ଥିଲା । ଆଉ ମଧ୍ୟ ବିଭିନ୍ନ ସମୟରେ ଓଡ଼ିଶାର ଭାଗ୍ୟରବି ଅସ୍ତଗାମୀ ସୂର୍ଯ୍ୟ ପରି ଅସ୍ତମିତ ହୋଇଥିଲା । ସେଥିପାଇଁ ବିଭିନ୍ନ ସମୟରେ ଓଡ଼ିଶାର ଭାଗ୍ୟରବିକୁ ଅକ୍ଷୁଣ୍ଣ ରଖିବା ପାଇଁ ଓଡ଼ିଆ ବୀର ସନ୍ତାନମାନେ ତୁହାକୁ ତୁହା ସଂଗ୍ରାମମାନ ଜାରି ରଖିଥିଲେ । ଏହି ସଂଗ୍ରାମ ମଧ୍ୟରେ 'ଓଡ଼ିଶାର ସୀମା ଓ ଭାଷା ଆନ୍ଦୋଳନ'ର ସଂଗ୍ରାମ ପ୍ରଧାନ ଅଟେ ।

୧୮୦୩ ମସିହାଟି ଥିଲା ଓଡ଼ିଶା ପାଇଁ ଏକ କଳଙ୍କମୟ ଅଧ୍ୟାୟର ବର୍ଷ । କାରଣ ଏହି ବର୍ଷ ନିଷ୍ଠୁର, ନିର୍ଦ୍ଦୟ ଓ ପ୍ରଜା ଶୋଷଣକାରୀ ଇଂରେଜ ସରକାର ଓଡ଼ିଶା ଅଧିକାର କରି ସମଗ୍ର ଭାରତର ଆର୍ଥିକ, ସାମାଜିକ, ସାଂସ୍କୃତିକ, ରାଜନୈତିକ ଓ ଭୌଗୋଳିକ ମାନଦଣ୍ଡକୁ ଦୁର୍ବଳ କରିଥିଲା । ପଡ଼ୋଶୀ ରାଜ୍ୟଗୁଡ଼ିକ ଇଂରେଜ ସରକାରର ହାତବାରିଶ ହୋଇ ଓଡ଼ିଶାକୁ ଶିକାର କରିଥିଲା । ଫଳରେ ଓଡ଼ିଶାର ସୀମା ଓ ଭାଷା ଅଧପତନ ଆଡ଼କୁ ମୁହାଇଲା । ଆଉମଧ୍ୟ ୧୮୬୬ ମସିହାରେ ନଅଙ୍କ ଦୁର୍ଭିକ୍ଷର ଭୟାଭହତା ଓଡ଼ିଶାର ଜନଜୀବନକୁ ଶୋଚନୀୟ କରି ପକାଇଥିଲା । ଓଡ଼ିଶାକୁ ଲାଗିଥିବା ପଡ଼ୋଶୀ ରାଜ୍ୟଗୁଡ଼ିକ ଓଡ଼ିଶାର କିଛି କିଛି ଅଂଶ ସେମାନଙ୍କ ରାଜ୍ୟରେ ମିଶାଇ ଦେଇଥିଲେ । ବର୍ତ୍ତମାନର ଗଞ୍ଜାମ ଜିଲ୍ଲା ମାନ୍ଦ୍ରାଜ ପ୍ରେସିଡେନ୍ସିରେ, ସମ୍ବଲପୁର ଜିଲ୍ଲା ମଧ୍ୟପ୍ରଦେଶ ଓ ପୁରୀ, କଟକ ଓ ବାଲେଶ୍ୱର ବଙ୍ଗଳା ପ୍ରେସିଡେନ୍ସିରେ ମିଶ୍ରଣ ହୋଇଥିଲା । ସେହିପରି ଓଡ଼ିଆ ଭାଷାର ବିଲୋପ ପାଇଁ କିଛି କିଛି ଅଂଶ ତେଲୁଗୁ ଭାଷା, ବଙ୍ଗଳା ଭାଷା ଓ ହିନ୍ଦୀ ଭାଷାଭାଷୀ ଅଞ୍ଚଳରେ ମିଶ୍ରଣ ହୋଇଥିଲା । ଓଡ଼ିଆ ଭାଷାର ପତନ ପାଇଁ ମୁଖ୍ୟ ନାୟକ ଭାବରେ ଚକ୍ରାନ୍ତ କରିଥିଲେ ବଙ୍ଗଳାବାସୀ । ସରକାରୀ ସ୍ତରରେ ଓଡ଼ିଆ ଭାଷାର ପତନ ଓ ବଙ୍ଗଳା ଭାଷାକୁ ପ୍ରାଧାନ୍ୟ ଦେବା ଥିଲା ଏହି ଚକ୍ରାନ୍ତର ମୂଳ ଲକ୍ଷ୍ୟ । ଉନବିଂଶ ଶତାବ୍ଦୀର ଶେଷ ଭାଗ ଓ ବିଂଶ ଶତାବ୍ଦୀର ପ୍ରାରମ୍ଭରେ ଓଡ଼ିଶାର ଭୌଗୋଳିକ ମାନଚିତ୍ର ଓ ଓଡ଼ିଆ ଭାଷା ଏକ କଳଙ୍କମୟ ପରିସ୍ଥିତିରେ ରହିଥିଲା । କାଳର କ୍ରୁର କରାଳରେ ଅର୍ଥାତ୍ ଇଂରେଜ ସରକାରର

ମନମୁଖୀ ଓ ଏକଛତ୍ରବାଦୀ ଶାସନ ଦ୍ୱାରା ଉତ୍କଳ ଜନନୀ ଶ୍ରୀହୀନ, ଛିନ୍ନମସ୍ତା ଓ ଶୀର୍ଣ୍ଣ କଳେବର ରୂପ ଧାରଣ କରିଥିଲା ।

ଯେଉଁ କେତେଜଣ ପ୍ରବାଦ ପୁରୁଷ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ଆନ୍ଦୋଳନକୁ ଜାରି ରଖିଥିଲେ, ସେମାନଙ୍କ ମଧ୍ୟରେ ଉତ୍କଳଗୌରବ ମଧୁସୂଦନ ଦାସ, ଉତ୍କଳମଣି ଗୋପବନ୍ଧୁ ଦାସ, ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜଦେଓ, ବ୍ୟାସକବି ଫକୀର ମୋହନ ସେନାପତି, ପଣ୍ଡିତ ନୀଳକଣ୍ଠ ଦାଶ, କବିବର ରାଧାନାଥ ରାୟ, ମହାରାଜା କୃଷ୍ଣଚନ୍ଦ୍ର ଗଜପତି ଦେବ, ସ୍ୱଭାବ କବି ଗଙ୍ଗାଧର ମେହେର, ବିଚିତ୍ରାନନ୍ଦ ଦାସ, ଗୌରୀଶଙ୍କର ରାୟ ଓ ହରିହର ମର୍ଦ୍ଦରାଜ ଦେବ ଇତ୍ୟାଦି ଅନ୍ୟତମ । ସେମାନଙ୍କର ଅତୁଳନୀୟ ତ୍ୟାଗ ନିଷ୍ଠାପର କର୍ତ୍ତବ୍ୟ ଓ ନିଃସ୍ୱାର୍ଥପର ସେବା ମନୋବୃତ୍ତି ଦ୍ୱାରା ହିଁ ଜନ୍ମଲାଭ କରିଥିଲା ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ । ପ୍ରାଚୀନ ଉତ୍କଳର ଗୌରବ ଧ୍ୱଜା ଫେରାଇ ଆଣିବା ପାଇଁ ଏହି ଯୁଗ ସୃଷ୍ଟିକାରୀ ରଥୀ ଓ ମହାରଥୀମାନଙ୍କର ଅବଦାନର ପଟ୍ଟାନ୍ତର ନାହିଁ । ଏହି ଆନ୍ଦୋଳନର ମୁଖ୍ୟ କର୍ଣ୍ଣଧାର ଓ ଅଦ୍ୱିତୀୟ ମହାପୁରୁଷ ଉତ୍କଳଗୌରବ ମଧୁସୂଦନଙ୍କ ଅବଦାନ ଅବିସ୍ମରଣୀୟ । ସେହିପରି ବ୍ୟାସକବି ଫକୀରମୋହନ ସେନାପତିଙ୍କ ଦ୍ୱାରା ଲିଖିତ କାବ୍ୟ କବିତା ଇତ୍ୟାଦି ଭାଷା ଆନ୍ଦୋଳନର ପଥପ୍ରଦର୍ଶକ । ତାଙ୍କରି ବଳିଷ୍ଠ ନେତୃତ୍ୱ ଦ୍ୱାରା ଜନ୍ମଲାଭ କରିଥିଲା 'ଓଡ଼ିଆ ଭାଷା ସଂଗ୍ରାମ' । ଏହି ସଂଗ୍ରାମ କ୍ଷେତ୍ରରେ ସକ୍ରିୟ ଅଂଶ ଗ୍ରହଣ କରିଥିଲେ କବିବର ରାଧାନାଥ ରାୟ, ମଧୁସୂଦନ ରାଓ, ସ୍ୱଭାବକବି ଗଙ୍ଗାଧର ମେହେର, ଗୌରୀଶଙ୍କର ରାୟ ଓ ନୀଳମଣି ବିଦ୍ୟାରତ୍ନ ପ୍ରମୁଖ । ଓଡ଼ିଆ ଭାଷାର ପ୍ରଚାର ଓ ପ୍ରସାର ହିଁ ଥିଲା ଏହି ସଂଗ୍ରାମର ମୂଳ ଲକ୍ଷ୍ୟ ।

୧୮୭୫ ମସିହାରେ ବାଲେଶ୍ୱରର ରାଜା ବିଚିତ୍ରାନନ୍ଦ ଦାସ ଓଡ଼ିଆ ଭାଷାର ସୁରକ୍ଷା ପାଇଁ ଲେଫ୍ଟନାଣ୍ଟ ଗଭର୍ଣ୍ଣରଙ୍କୁ ଏକ ଦାବିପତ୍ର ଦେଇଥିଲେ । ତତ୍ପରେ ଉତ୍କଳ ଦୀପିକାର ସମ୍ପାଦକ ଗୌରୀଶଙ୍କର ରାୟଙ୍କ ସହଯୋଗରେ ନୂତନ ଓଡ଼ିଶାର ସ୍ରଷ୍ଟା କୁଳବୃଦ୍ଧ ମଧୁସୂଦନ ଦାସ ଏକ 'ଓଡ଼ିଶା ଆସୋସିଏସ୍' ଗଠନ କରି ଓଡ଼ିଆ ଭାଷାର ବହୁଳ ପ୍ରଚାର ଓ ପ୍ରସାର କରିଥିଲେ । ୧୮୮୮ରେ ଉତ୍କଳ ସଭା ପକ୍ଷରୁ ଲେଫ୍ଟନାଣ୍ଟ ଗଭର୍ଣ୍ଣରଙ୍କୁ ଏକ ସ୍ମାରକପତ୍ର ଦିଆଯାଇଥିଲା । ସେହିପରି ଗଞ୍ଜାମ ଜିଲ୍ଲାରେ ଓଡ଼ିଆ ଭାଷା ତରଫରୁ ଓଡ଼ିଶାର ଭାଇସରାୟ ଲର୍ଡ଼ କର୍ଜନଙ୍କୁ ଏକ ଦାବିପତ୍ର ଦିଆଯାଇଥିଲା ।

୧୯୦୧ ମସିହାରେ ଖଲିକୋଟର ରାଜା ହରିହର ମର୍ଦ୍ଦରାଜ ଦେବଙ୍କ ପ୍ରଗାଢ଼ ପ୍ରଚେଷ୍ଟାରେ ଉତ୍କଳ 'ହିତୈଷିଣୀ' ଗଠନ ହୋଇ ଓଡ଼ିଶା ପ୍ରଦେଶ ଗଠନର ମୂଳଦୁଆ ପଡ଼ିଥିଲା । ୧୯୦୨ ମସିହାରେ ମଧୁସୂଦନ ଦାସ ଓ ଗୌରୀଶଙ୍କର ରାୟ ମାନ୍ଦ୍ରାଜଠାରେ ହେଉଥିବା ଜାତୀୟ କଂଗ୍ରେସ ସମ୍ମିଳନୀରେ ଯୋଗଦେଇ ଓଡ଼ିଶା ଡିଭିଜନରେ ଗଞ୍ଜାମ ଜିଲ୍ଲାର ମିଶ୍ରଣ ପାଇଁ ଦାବି ଉପସ୍ଥାପନ କରିଥିଲେ । ୧୯୦୩ ମସିହା ଡିସେମ୍ବର ମାସରେ ମଧୁସୂଦନଙ୍କ ବଳିଷ୍ଠ ନେତୃତ୍ୱ ଓ ଅବିଶ୍ରାନ୍ତ ଉଦ୍ୟମରେ ଜନ୍ମଲାଭ କରିଥିଲା 'ଉତ୍କଳ ସମ୍ମିଳନୀ' । ମଧୁସୂଦନଙ୍କ ସ୍ୱଜାତି ଓ ସ୍ୱଦେଶ ପ୍ରୀତି ସମଗ୍ର ଓଡ଼ିଶାବାସୀଙ୍କ ହୃଦୟ ସ୍ପର୍ଶ କରିପାରିଥିଲା । ଉତ୍କଳ ସମ୍ମିଳନୀର ଅଧିବେଶନରେ ଓଡ଼ିଶାର ଭାଇ ଭଉଣୀମାନଙ୍କୁ ଜାତି ଓ ଦେଶ ପାଇଁ ଆହ୍ୱାନ ଦେଇ ସେ କହିଥିଲେ -

'ଏହି ସମ୍ମିଳନୀ ଜାତି ପ୍ରାଣ ସିନ୍ଧୁ<br>
କୋଟି ପ୍ରାଣ ବିନ୍ଦୁ ଧରେ,<br>
ତୋର ପ୍ରାଣ ବିନ୍ଦୁ ମିଶାଇ ଦେ ଭାଇ,<br>
ଡେଇଁ ପଡ଼ି ସିନ୍ଧୁ ନୀରେ ।'

ଏହି ସମ୍ମିଳନୀ ଥିଲା ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ଓ ଭାଷା ଆନ୍ଦୋଳନର ବିଜୟ ପାଇଁ ପ୍ରଧାନ ଅମୋଘ ଅସ୍ତ୍ର । ପ୍ରଥମେ ସମ୍ବଲପୁର ମଧ୍ୟପ୍ରଦେଶରୁ ବିଛିନ୍ନ ହୋଇ ଓଡ଼ିଶାରେ ମିଶିଥିଲା । ୧୯୧୨ରେ ବିହାର ଓ ଓଡ଼ିଶା ପ୍ରଦେଶ ଗଠନ ହୋଇଥିଲା । ୧୯୧୭ ମସିହାରେ ଉତ୍କଳ ସମ୍ମିଳନୀ ତରଫରୁ ବଡ଼ଲାଟ ଚେମ୍ସଫୋର୍ଡ଼ ଓ ଭାରତର ପ୍ରଧାନମନ୍ତ୍ରୀ ମଣ୍ଟେଗୁଙ୍କୁ ଦାବିପତ୍ର ଦିଆଯାଇଥିଲା । ୧୯୧୯ ମସିହାରେ ଏହି ଦାବି ଅନୁମୋଦନ ହୋଇ ଏକ କମିଶନ ବସା ଯାଇଥିଲେ ମଧ୍ୟ ତା'ର କିଛି ଫଳ ମିଳି ନଥିଲା ।

୧୯୨୭ ମସିହାରେ ସାର ଜନ୍ ସାଇମନ୍ ସାତ ଜଣିଆ ସଦସ୍ୟ ବିଶିଷ୍ଟ ପାର୍ଲିଆମେଣ୍ଟ କମିଶନ ମୁଖ୍ୟ ଭାବେ ଭାରତକୁ ସାମ୍ବିଧାନିକ ସଂସ୍କାର ବ୍ୟବସ୍ଥା ଅନୁଧ୍ୟାନ କରିବା ପାଇଁ ଆସିଥିଲେ । ଏଥିରେ ଭାରତର କେହି ଜଣେ ହେଲେ ସଦସ୍ୟ ନଥିବାରୁ ଭାରତୀୟ ଜାତୀୟ କଂଗ୍ରେସ ସାଇମନ୍ କମିଶନଙ୍କୁ ସର୍ବତ୍ର ବାସନ୍ଦ କରିଥିଲେ । କଂଗ୍ରେସର ଏହି ଆହ୍ୱାନକୁ ଖାତିର ନକରି ଉତ୍କଳ ସମ୍ମିଳନୀ ତରଫରୁ ମଧୁସୂଦନଙ୍କ ନେତୃତ୍ୱରେ ବିହାର ଓ ଓଡ଼ିଶାର ରାଜଧାନୀ ପାଟଣାଠାରେ ସାଇମନ୍ କମିଶନଙ୍କୁ ସମ୍ବର୍ଦ୍ଧନା ଦେବା ଅବସରରେ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ପାଇଁ ଦୃଢ଼ ଦାବି ଉପସ୍ଥାପନ କରିଥିଲେ । ବିହାର-ଓଡ଼ିଶା କାଉନସିଲଙ୍କ ଦ୍ୱାରା ନିର୍ବାଚିତ ରାଜା କୃଷ୍ଣଚନ୍ଦ୍ର ଗଜପତି ଦେବ ୧୯୩୧ ମସିହା ଫେବୃଆରୀ ମାସରେ ତତ୍କାଳୀନ ପ୍ରଧାନମନ୍ତ୍ରୀଙ୍କ ଅଧକ୍ଷତାରେ ଅନୁଷ୍ଠିତ ଦ୍ୱିତୀୟ ଗୋଲଟେବୁଲ ବୈଠକରେ ଏହି ଦାବି ଉପସ୍ଥାପନ କରିଥିଲେ । ସେହିପରି ଇଂଲଣ୍ଡରେ ଅନୁଷ୍ଠିତ ବୈଠକରେ ପାରଳା ରାଜା କୃଷ୍ଣଚନ୍ଦ୍ର ଦେବ ସ୍ୱତନ୍ତ୍ର ରାଜ୍ୟ ଗଠନ ପାଇଁ ଦାବି କରିଥିଲେ । ଏତଦ୍‌ବ୍ୟତୀତ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ପାଇଁ ବିଭିନ୍ନ କବି, ଲେଖକ ଓ ସମ୍ପାଦକଙ୍କ ଦ୍ୱାରା ଓଡ଼ିଆ ଭାଷାରେ ସମ୍ବାଦପତ୍ର ଓ ପତ୍ରପତ୍ରିକାର ଭୂମିକା ଥିଲା ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ।

୧୯୩୨ ମସିହା ଏପ୍ରିଲ ମାସରେ ବ୍ରିଟିଶ ସରକାରଙ୍କ ଦ୍ୱାରା ଏକ ସୀମା ନିର୍ଦ୍ଧାରଣ କମିଟି ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ସପକ୍ଷରେ ମତପ୍ରଦାନ କରିଥିଲେ । କିନ୍ତୁ ବହୁ ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ଏଥିରୁ

ବାଦ ଦିଆଯାଇଥିଲା । ଏଥିପାଇଁ ଏକ ବିଶାଳ ଜନଜାଗରଣ ସୂତ୍ରପାତ ହୋଇଥିଲା । ସାର ସାମୁଏଲ ହୋର ୧୯୩୩ ମସିହା ମାର୍ଚ୍ଚ ମାସ ୧୮ ତାରିଖରେ ପାରଳାଖେମୁଣ୍ଡି, ଜୟପୁର ଓ ଜଳନ୍ତର ଓଡ଼ିଶାରୁ ବାଦ ଦେଇ ଏକ ଶ୍ୱେତପତ୍ର ପ୍ରକାଶ କରିଥିଲେ । ଏହି ଶ୍ୱେତପତ୍ରକୁ ବିରୋଧ କରି ଉତ୍କଳ ସମ୍ମିଳନୀ ମାଧ୍ୟମରେ ଏକ ବିଶାଳ ଜନ ଆନ୍ଦୋଳନ ୧୯୩୩ ମସିହା ମେ ମାସରେ ହୋଇଥିଲା । ଏହିପରି ଭାବରେ ବହୁ ଘାତ-ପ୍ରତିଘାତ ଓ ବାଧାବିଘ୍ନର ମୁକାବିଲା କରି ଓଡ଼ିଶାର ବରପୁତ୍ରମାନଙ୍କର ଦୀର୍ଘ ତିନି ଦଶନ୍ଧି ଧରି ଜାରି ରଖିଥିବା ସଂଗ୍ରାମକୁ ସରକାର ୧୯୩୫ ମସିହାରେ ଭାରତ ଶାସନ ଆଇନ ମାଧ୍ୟମରେ ବିଚାରକୁ ନେଇଥିଲେ । ଏହି ଆଇନ ଇଂଲଣ୍ଡ ପାର୍ଲିଆମେଣ୍ଟରେ (ଗଭର୍ଣ୍ଣମେଣ୍ଟ ଅଫ୍ ଇଣ୍ଡିଆ ଅର୍ଡ଼ର ୧୯୩୬) ନାମକ ଏକ ବିଲ୍ ୧୯୩୬ ମସିହା ମାର୍ଚ୍ଚ ୩ ତାରିଖରେ ଅନୁମୋଦିତ ହୋଇଥିଲା । ୧୯୩୬ ମସିହା ଏପ୍ରିଲ ୧ ତାରିଖରେ କାର୍ଯ୍ୟକାରୀ ହୋଇଥିଲା । ଯଦିଓ ଓଡ଼ିଶାବାସୀଙ୍କର ଦୀର୍ଘଦିନର ନ୍ୟାଯ୍ୟ ଦାବି ପୂରଣ ହୋଇ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ହେବା ସମ୍ଭବ ହେଲା, ତଥାପି ଓଡ଼ିଆ ଭାଷା ପ୍ରଚଳିତ କେତେ ଅଂଶ ଆଜି ପର୍ଯ୍ୟନ୍ତ ଓଡ଼ିଶାରେ ମିଶି ପାରିନାହିଁ ।

ଓଡ଼ିଶାକୁ ଏକ ସ୍ୱତନ୍ତ୍ର ପ୍ରଦେଶ ମର୍ଯ୍ୟାଦା ଦେବାରେ ଯେଉଁ କେତେଜଣ ଉତ୍ସର୍ଗୀକୃତ ମହାପୁରୁଷଙ୍କର ଅବଦାନ ପ୍ରତ୍ୟେକ ଓଡ଼ିଶାବାସୀଙ୍କ ନିକଟରେ ଚିରସ୍ମରଣୀୟ, ସେମାନଙ୍କର ନୀତି ଆଦର୍ଶରେ ଅନୁପ୍ରାଣିତ ହେବା ଓ ସେମାନଙ୍କ ଆଶା ଓ ଆକାଂକ୍ଷାକୁ ଯୁବ ସମାଜ କାର୍ଯ୍ୟକାରୀ କରିବା ଦ୍ୱାରା ସେମାନଙ୍କର ଅମର ଆତ୍ମା ଶାନ୍ତିଲାଭ କରିବ । ଉତ୍କଳମାତାର ଅଖଣ୍ଡତା ରକ୍ଷା ସହିତ ସର୍ବାଙ୍ଗୀନ ଉନ୍ନତି କରିବା ସମସ୍ତ ଯୁବପିଢ଼ିଙ୍କର ପ୍ରଧାନ କର୍ତ୍ତବ୍ୟ । ଏହି ପବିତ୍ର ଦିବସକୁ ଆନ୍ତରିକତା ସହିତ ପାଳନ କରିବା ଅବସରରେ ଏହାର ଐକ୍ୟ ଓ ସଂହତିକୁ ଅକ୍ଷୁଣ୍ଣ ରଖିବା ପାଇଁ ଓଡ଼ିଶାର ଆବାଳ-ବୃଦ୍ଧ-ବନିତା ବ୍ରତୀ ହେବା ଏକାନ୍ତ ବାଞ୍ଛନୀୟ ।

ଘ.ନଂ- ଟୁ.ଆର.ଏ. ୩୫/୭
୮ ନମ୍ବର, ଭୁବନେଶ୍ୱର

---

# ଉଠିଯାରେ ଧନ ଶୁଅନା ଆଉ

ଦେବରାଜ ସାମନ୍ତରାୟ

ଉଠିଯାରେ ଧନ ଶୁଅନା ଆଉ
ଯେତିକି ଶୋଇଲୁ ସେତିକି ଥାଉ
ରାତି ପାହି ଫରଚା ହୋଇବା ଆଗରୁ
ଡାକିଲାଣି ଆସି ଡାମରାକାଉ ॥

ପୂରୁବ ଦିଗରୁ ନୂଆ ସୂରୁଜ
ଅଜାଡ଼ି ଦେଲାଣି ନାଲି ମୁରୁଜ
ନୂଆ ସକାଳର ନୂଆ ନୂଆ ଶୋଭା
ଦିଶିଲାଣି ଖାଲି ଦାଉ ଦାଉ
ଉଠିଯାରେ ଧନ ଶୁଅନା ଆଉ ... ॥

ଖେଳି ବୁଲିଲାଣି ପ୍ରଗତି-ବାଆ
ହସି ଉଠିଲାଣି ବସୁଧା-ମାଆ
କାରିଗରି-କଳା-ଶିକ୍ଷଶାଳା ଯୋଗୁଁ
ବଢ଼ିଲାଣି ଆମ ଦେଶର ଭାଉ
ଉଠିଯାରେ ଧନ ଶୁଅନା ଆଉ ... ॥

ଏକତା ରଖିଲେ ସକଳ ଜନ
ଅରଜନ କଲେ ବିଜ୍ଞାନ-ଧନ
ଲିଭିଲିଭି ଯିବ ଭୋକ-ଶୋକ-ଶୋଷ
ରହିବନି ଦୁଃଖ-ଦଇନ ଦାଉ
ଉଠିଯାରେ ଧନ ଶୁଅନା ଆଉ ... ॥

ଉପସଭାପତି
ରାଜଧାନୀ ଶିଶୁ ସାହିତ୍ୟ ସଂସଦ
ଘର ନଂ-ଆଇ.ଭି.: ୪୨/୨, ୟୁନିଟ୍-୧
ଭୁବନେଶ୍ୱର-୯

■■■■



# ଓଡ଼ିଆ ପ୍ରେମୀ ଗୌରଚନ୍ଦ୍ର

ସୁନୀତା ଚୌଧୁରୀ

**ଇଂ**ରେଜମାନଙ୍କର ଅନ୍ୟାୟ ଓ ଅତ୍ୟାଚାର ଦିନକୁ ଦିନ ଅସହ୍ୟ ଭାବେ ବଢ଼ି ଚାଲିଥିଲା । ସେହି ସନ୍ଧିକ୍ଷଣରେ ଜାତିର ପିତା, ଅଗ୍ରଗଣ୍ୟ, ପରମପୂଜ୍ୟ ମହାତ୍ମା ଗାନ୍ଧୀଙ୍କର ଅହିଂସା ଆନ୍ଦୋଳନର ମନ୍ତ୍ର ସୁପ୍ତ ଭାରତୀୟମାନଙ୍କୁ ଜାଗ୍ରତ କରାଇବା ସଂଗେସଂଗେ ନବଜାଗରଣ ଆଣି ଦେଇଥିଲା । ଓଡ଼ିଶାବାସୀଙ୍କ ଉପରେ ମଧ ଏହି ମନ୍ତ୍ରର ପ୍ରଭାବ ପଡ଼ିଥିଲା ଓ ଓଡ଼ିଶା ପ୍ରଦେଶର ବହୁ ସ୍ୱାଧୀନତା ସଂଗ୍ରାମୀ ଏକତ୍ରିତ ହୋଇ ସ୍ୱାଧୀନତା ସଂଗ୍ରାମର ପନ୍ଥା ବାଛି ନେଇଥିଲେ । ୧୯୦୩ ମସିହା ଓଡ଼ିଶା ଇତିହାସରେ ଏକ ଗୁରୁତ୍ୱପୂର୍ଣ୍ଣ ବର୍ଷ ଏବଂ ସ୍ୱାଧୀନତା ସଂଗ୍ରାମ ଇତିହାସରେ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇରହିଛି । ବହୁ ସ୍ୱନାମଧନ୍ୟ ବିଶିଷ୍ଟ ବ୍ୟକ୍ତି ଓଡ଼ିଶା ଭାଷା ସାହିତ୍ୟର ସୁରକ୍ଷା ପାଇଁ ଜାତୀୟ ସ୍ରୋତରେ ନିଜକୁ ସାମିଲ କରାଇବା ସହ ଐତିହାସିକ ଉତ୍କଳ ସମ୍ମିଳନୀ ପ୍ରତିଷ୍ଠା କରିବାରେ ହୃଦୟସ୍ପର୍ଶୀ ପ୍ରେରଣା ଯୋଗାଇଥିଲେ । ଠିକ୍ ସେହି ବର୍ଷ ମେ ୧ ତାରିଖରେ ଓଡ଼ିଶାର ଭାଷା ସାହିତ୍ୟ, ଉତ୍କଳ ସମ୍ମିଳନୀ ଏବଂ ଦେଶର ସ୍ୱାଧୀନତା ସଂଗ୍ରାମକୁ ବହୁ ଆଗକୁ ନେବା ନିମନ୍ତେ ଭଗବାନଙ୍କ ଆଶୀର୍ବାଦ ଗ୍ରହଣ କରି ଜଣେ ଓଡ଼ିଆ ଜନ୍ମଗ୍ରହଣ କରିଥିଲେ ।

ଚନ୍ଦ୍ରମାଙ୍କ ପରି ସୁଶୀତଳ ଓ ଗୌରବର୍ଣ୍ଣଧାରୀ ସ୍ୱର୍ଗତଃ ଗୌରଚନ୍ଦ୍ର ପାଢ଼ୀ ୧୯୦୩ ମସିହା ମେ ମାସ ୧ ତାରିଖରେ ପିତା ବଳଭଦ୍ର ପାଢ଼ୀ ଓ ମାତା ରମା ଦେବୀଙ୍କ କୋଳ ମଣ୍ଡନ କରି ଅଖ୍ୟାତ ପଲ୍ଲୀ 'ପୁରୁଣା ପାଟଣା' ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । ସେହି 'ପୁରୁଣା ପାଟଣା' ଗ୍ରାମ ବର୍ତ୍ତମାନର ପାତ୍ ପଟନମ୍, ଶ୍ରିକାକୁଲମ୍ ଜିଲ୍ଲାରେ ଅବସ୍ଥିତ । ତାଙ୍କର ଦୁଇ ଭାଇ ଓ ତିନି ଭଉଣୀ ଥିଲେ ଏବଂ ତାଙ୍କର ପିତା ସ୍ଥାନୀୟ ନୀଳକଣ୍ଠ ମନ୍ଦିରର ମୁଖ୍ୟ ପୂଜକ ଥିଲେ ।

ସୁଯୋଗ୍ୟ ପିତାମାତାଙ୍କର ଉପଯୁକ୍ତ ଦାୟାଦ ଏବଂ ମହାପ୍ରଭୁ ନୀଳକଣ୍ଠଙ୍କର ଆଶୀର୍ବାଦରୁ ତୁଳସୀ ଦୁଇପତ୍ରରୁ ବାସିବା ପରି ପିଲାଟି ଦିନରୁ ଗୌରଚନ୍ଦ୍ରଙ୍କର ଦେଶ, ଜାତି ଓ ଭାଷା ପ୍ରତି ଖୁବ୍ ମମତା ଥିଲା । ସେ ପାରଳାଖେମୁଣ୍ଡିସ୍ଥିତ ମହାରାଜା ଉଚ୍ଚ ବାଳକ ବିଦ୍ୟାଳୟରୁ ମାଟ୍ରିକ୍ ପାସ୍ କରିବା ପରେ ଆନ୍ଧ୍ର ବିଶ୍ୱବିଦ୍ୟାଳୟରୁ ସ୍ନାତକ ଡିଗ୍ରୀ ହାସଲ କରିଥିଲେ । ପାଠପଢ଼ା ପରେ ପରେ ଜାତିର ପିତାଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ ସ୍ୱଦେଶୀ ଆନ୍ଦୋଳନରେ ଯୋଗ ଦେଇଥିଲେ । ଦେଶ ଓ ଜାତିର ମାନ ରକ୍ଷା କରିବାକୁ ବାହାରିବା ସମୟରେ ମଧ ପାଠପଢ଼ା ପ୍ରତି ତାଙ୍କର ଅଶେଷ ଆଗ୍ରହ ରହିଥିଲା ଏବଂ ଡି.ଇ.ଡି. ଡିଗ୍ରୀ ମଧ ହାସଲ କରିଥିଲେ ।

ସ୍ୱାଧୀନତା ସଂଗ୍ରାମରେ କାମ କରିବା ସହିତ ଦୈନନ୍ଦିନ ତେଲ, ଲୁଣ ସଂସାରର ଗୁଜୁରାଣ ମେଣ୍ଟାଇବା ନିମନ୍ତେ ଗୌରଚନ୍ଦ୍ର ବ୍ରହ୍ମପୁରସ୍ଥିତ ସରକାରୀ ତାଲିମ ବିଦ୍ୟାଳୟରେ ଚାକିରି କରିଥିଲେ ଓ ତାଙ୍କର ନିପୁଣ କାର୍ଯ୍ୟଦକ୍ଷତା ତାଙ୍କୁ ନେଇ ଇନିସ୍‌ପେକ୍ଟର ଅଫ୍ ସ୍କୁଲ ପାହ୍ୟାରେ ପହଞ୍ଚାଇ ପାରିଥିଲା । ଏହି ପଦବୀରେ ସେ ପାରଳାଖେମୁଣ୍ଡି ଓ ଭଞ୍ଜନଗରରେ କାର୍ଯ୍ୟ ସଂପାଦନ କରିଥିଲେ । ମୌଳିକ ଶିକ୍ଷାର ପ୍ରଚାର ଓ ପ୍ରସାର ନିମନ୍ତେ ସରକାରଙ୍କ ଦ୍ୱାରା ମନୋନୀତ ହୋଇ ମୌଳିକ ଶିକ୍ଷାର ତାଲିମ ନିମନ୍ତେ ମହାତ୍ମା ଗାନ୍ଧୀଙ୍କ ମୌଳିକ ଶିକ୍ଷା ତାଲିମ ଆଶ୍ରମ ବିଦ୍ୟାଳୟ, ୱାର୍ଦ୍ଧାକୁ ପ୍ରେରିତ ହୋଇଥିଲେ ।

ତାଲିମ ପରେ ମହାତ୍ମା ଗାନ୍ଧୀଙ୍କର ମୌଳିକ ଶିକ୍ଷା ନୀତିରେ ଓଡ଼ିଶାରେ ପ୍ରତିଷ୍ଠିତ ୬ ଗୋଟି ତାଲିମ ବିଦ୍ୟାଳୟ ମଧ୍ୟରୁ ଅନୁଗୋଳ ମୌଳିକ ତାଲିମ ବିଦ୍ୟାଳୟର ପ୍ରଧାନ ଶିକ୍ଷକ ରୂପେ ଦକ୍ଷତାର ସହ କାର୍ଯ୍ୟ ନିର୍ବାହ କରିଥିଲେ ।

ମୌଳିକ ଶିକ୍ଷାର ଲକ୍ଷ୍ୟ ଥିଲା ଛାତ୍ରମାନଙ୍କୁ ସ୍ୱାବଲମ୍ବି କରି ଗଢ଼ିତୋଳିବା । ନିଜ କାମ ନିଜେ କରିବା ସଂଗେସଂଗେ ଅନ୍ୟର ସେବା କରିବା ଓ ବିଶେଷ କରି ମାଟି ମାଆ ପାଇଁ କିଛି କରିବାର ପ୍ରେରଣା ଦିଆଯାଉଥିଲା । ନିଜ ହାତରେ ନିଜେ ଚରଖାରେ ସୂତା କାଟିବା, ଲୁଗା ବୁଣିବା, ବଗିଚା କାମ ଓ ସଫାସଫି ଆଦି ମୁଖ୍ୟ କାମ ଥିଲା ।

ତ୍ୟାଗର ମୂର୍ତ୍ତିମନ୍ତ ପ୍ରତୀକ ଗୌରଚନ୍ଦ୍ର ବ୍ୟକ୍ତିଗତ ସୁଖ, ସ୍ୱାଚ୍ଛନ୍ଦ୍ୟକୁ ଜଳାଞ୍ଜଳି ଦେଇ ମୌଳିକ ଶିକ୍ଷାକୁ ଲୋକପ୍ରିୟ କରାଇବାରେ ସମୟ ବିତାଉଥିଲେ । ପ୍ରାତଃ ସମୟରୁ ଉଠି ନିତ୍ୟକର୍ମ ସାରି ପ୍ରାର୍ଥନା ସଭାରେ ଯୋଗ ଦେଉଥିଲେ ଏବଂ ପରେ ପରେ ବିଦ୍ୟାଳୟ କାର୍ଯ୍ୟରେ

ଯୋଗ ଦେଉଥିଲେ । ବିଦ୍ୟାଳୟର କାର୍ଯ୍ୟ ସମାପନ ହେଉଥିଲା ସାନ୍ଧ୍ୟ ପ୍ରାର୍ଥନା ସଭା ପରେ । ବିଦ୍ୟାଳୟ ଥିଲା ତାଙ୍କର ବାସସ୍ଥାନ ।

ମାଦକ ଦ୍ରବ୍ୟ ସେବନର ବିରୁଦ୍ଧାଚରଣ କରିବା ଓ ରୋଗୀ ସେବା ଥିଲା ତାଙ୍କ ଜୀବନର ପରମ ବ୍ରତ । ଅନୁଗୋଳଠାରେ ଅନୁଷ୍ଠିତ ସର୍ବୋଦୟ ସମ୍ମିଳନୀର ପୃଷ୍ଠପୋଷକ ଥିଲେ ସ୍ୱର୍ଗତଃ ଗୋପବନ୍ଧୁ ଚୌଧୁରୀ, ନବକୃଷ୍ଣ ଚୌଧୁରୀ, ସ୍ୱର୍ଗତା ରମା ଦେବୀ ଓ ମାଳତୀ ଚୌଧୁରୀ । ମହାନ୍ ବ୍ୟକ୍ତିତ୍ୱର ସଂସ୍ପର୍ଶରେ ଆସି ସ୍ୱର୍ଗତଃ ଗୌରଚନ୍ଦ୍ର ମହାନ୍ କାର୍ଯ୍ୟ ସଂପାଦନ କରିପାରିଥିଲେ ।

ସଚ୍ଚୋଟତା, କର୍ତ୍ତବ୍ୟନିଷ୍ଠା, ଆଦର୍ଶପ୍ରାଣ, ଶୃଙ୍ଖଳା ଆଦି ଗୁଣ ଗୌରଚନ୍ଦ୍ରଙ୍କର ଥିଲା ଚାରିତ୍ରିକ ବିଶେଷତା ଓ ପଦସ୍ଥ କର୍ମଚାରୀ ହେବାରେ ସାହାଯ୍ୟ କରିଥିଲା । କର୍ମକ୍ଷେତ୍ରରେ ଅବହେଳା ଏବଂ ଦୁର୍ନୀତିକୁ କେବେବି ବରଦାସ୍ତ କରିନାହାନ୍ତି ସେ ।

ଗୌରଚନ୍ଦ୍ର ଭାରତର ଜଣେ ସ୍ୱନାମଧନ୍ୟ ଶିକ୍ଷାବିତ୍ ଭାବରେ ମାନବ ସମାଜର ଶିକ୍ଷାପ୍ରତି ଆଗ୍ରହ ସୃଷ୍ଟି କରିବା ନିମନ୍ତେ ୧୯୫୪ ମସିହାରେ ଆମେରିକାର ଅନୁଦାନ କାର୍ଯ୍ୟକ୍ରମରେ ଯୋଗ ଦେବା ନିମନ୍ତେ ଯୁକ୍ତରାଷ୍ଟ୍ର ଆମେରିକା ଗସ୍ତ କରିଥିଲେ ।

ତାଙ୍କର କାର୍ଯ୍ୟ ଦକ୍ଷତା ଓ କାର୍ଯ୍ୟ କୁଶଳତା ଯୋଗୁଁ ସେ ମୌଳିକ ଶିକ୍ଷା ସଂଗଠକ ରୂପେ ପଦୋନ୍ନତି ପାଇଥିଲେ ।

ଓଡ଼ିଆ ଭାଷା ପ୍ରତି ତାଙ୍କର ଖୁବ୍ ଆଦର ଥିଲା ଯାହାକି ଅନୁଗୋଳଠାରେ ଗୋଟିଏ ସଭାରେ ବଙ୍ଗଭାଷୀ ବ୍ୟକ୍ତିଙ୍କ ବଙ୍ଗ ଭାଷାର ଭାଷଣକୁ ପ୍ରତିବାଦ କରିଥିଲେ ଏବଂ ଓଡ଼ିଆ ଭାଷାରେ ଭାଷଣ ଦେବାକୁ ଅନୁରୋଧ କରିଥିଲେ ।

୧୯୫୮ ମସିହା ମେ ମାସ ୧ ତାରିଖରେ ଚାକିରି ଜୀବନରୁ ଅବସର ନେଇ ଜନ୍ମମାଟି ବ୍ରହ୍ମପୁରକୁ ଫେରି ଆସିଥିଲେ । ଅବସର ପରେ ମଧ୍ୟ ପାରିବାରିକ ସୁଖସ୍ୱାଚ୍ଛନ୍ଦ୍ୟରେ ବୁଡ଼ି ନରହି ଦେଶ, ଜାତି ଓ ଭାଷାର ଉନ୍ନତି ନିମନ୍ତେ ସଦା ସ୍ୱପ୍ନ ଦେଖୁଥିଲେ । ସ୍ୱପ୍ନକୁ ସାକାର କରିବାକୁ ଯାଇ ଗଂଜାମ ଜିଲ୍ଲାର 'କେନ୍ଦୁପଦର' ଗ୍ରାମକୁ ଆଦର୍ଶ ଗ୍ରାମ ରୂପେ ସ୍ଥିର କରିଥିଲେ । ପ୍ରଥମ ପାହାଚ ସ୍ୱରୂପ ୧୯୬୦ ମସିହାରେ କନ୍ଦୁପଦର ଗ୍ରାମର ବେସରକାରୀ ଉଚ୍ଚ ବିଦ୍ୟାଳୟର ପ୍ରଧାନ ଶିକ୍ଷକ ଦାୟିତ୍ୱ ସଂପାଦନ କରିଥିଲେ । କେନ୍ଦୁପଦର ଗ୍ରାମର ସର୍ବାଙ୍ଗୀନ ଉନ୍ନତି ଓ ବିଶେଷ କରି ଶିକ୍ଷାର ପ୍ରସାର ତାଙ୍କର ପ୍ରଧାନ ଲକ୍ଷ୍ୟ ଥିଲା । ଗ୍ରାମବାସୀଙ୍କଠାରୁ ଅର୍ଥ ସଂଗ୍ରହ କରି ସ୍କୁଲ ଗୃହ ନିର୍ମାଣ, ଉନ୍ନତ ଶିକ୍ଷାଦାନ ଓ କୃତିବାନ୍ ଶିକ୍ଷକ ନିଯୁକ୍ତି କରିଥିଲେ । ନିରହଙ୍କାରୀ ଗୌରଚନ୍ଦ୍ର ଛାତ୍ରାବାସରେ ରହୁଥିବା ଛାତ୍ରମାନଙ୍କ ଉପରେ ତୀକ୍ଷ୍ଣ ଦୃଷ୍ଟି ରଖୁଥିଲେ । ସେ ଯେପରି ଛାତ୍ରବତ୍ସଳ ସେପରି ମାନବବତ୍ସଳ ମଧ୍ୟ ଥିଲେ । ଗ୍ରାମବାସୀମାନଙ୍କୁ ସ୍ନେହ ଶ୍ରଦ୍ଧା କରିବା ସଂଗେସଂଗେ ସେମାନଙ୍କର ଦୁଃଖସୁଖର ସାଥୀ ଥିଲେ । ସେମାନଙ୍କ ସାହାଯ୍ୟ ସହଯୋଗରେ କେନ୍ଦୁପଦରଠାରେ ଏକ ମହାବିଦ୍ୟାଳୟ ସ୍ଥାପନ କରିପାରିଥିଲେ । କେନ୍ଦୁପଦର ଥିଲା ତାଙ୍କ ସ୍ୱପ୍ନର ଅପାଶୋରା ମହଲ ।

ସ୍ୱର୍ଗତଃ ଗୌରଚନ୍ଦ୍ରଙ୍କର ମହାନତା ଏହି କାର୍ଯ୍ୟରେ ସୀମିତ ନଥିଲା । ସେ ଉତ୍କଳ ସମ୍ମିଳନୀର ସଭ୍ୟ ହେବା ସଂଗେସଂଗେ ଓଡ଼ିଶାର ବିଚ୍ଛିନ୍ନାଞ୍ଚଳର ସମସ୍ୟା ସମାଧାନ କରିବାରେ ଅନେକ ସମୟ ଦେଉଥିଲେ । ଓଡ଼ିଆ ଭାଷା ସାହିତ୍ୟର ସୁରକ୍ଷା ଓ ସ୍ଥାୟିତ୍ୱ ନିମନ୍ତେ ଅତ୍ୟନ୍ତ ଆଗ୍ରହୀ ଥିଲେ । ବିଚ୍ଛିନ୍ନାଞ୍ଚଳ ଗସ୍ତ କରି ସେଠାକାର ସ୍କୁଲମାନଙ୍କରେ ଓଡ଼ିଆ ଭାଷା ଶିକ୍ଷା ଦେବା ପାଇଁ ପ୍ରବର୍ତ୍ତାଉଥିଲେ ।

୧୯୬୬ ମସିହାରେ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା କାର୍ଯ୍ୟକ୍ରମରେ କର୍ମବୀର ସ୍ୱର୍ଗତଃ ଗୌରଚନ୍ଦ୍ରଙ୍କର ଦାନ ଅତୁଳନୀୟ ଥିଲା । ଭୋଗବିଳାସର ଆକର୍ଷଣ ଗୌରଚନ୍ଦ୍ରଙ୍କୁ ଆକୃଷ୍ଟ କରିପାରିନଥିଲା । ମହାତ୍ମା ଗାନ୍ଧୀଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ ଖାଦ୍ୟ, ଅନ୍ନ, ବସ୍ତ୍ରରେ ତାହାକୁ ପ୍ରଦର୍ଶିତ କରିପାରିଥିଲେ । ଖୁବ୍ ସରଳ ଜୀବନଯାପନ କରୁଥିଲେ ଓ ଖଦଡ଼ବସ୍ତ୍ର ପରିଧାନ କରୁଥିଲେ । ସେ ଥିଲେ ଖୁବ୍ ନିର୍ଭୀକ, ସ୍ପଷ୍ଟବାଦୀ ଓ ସତ୍ୟବାଦୀ । ତାଙ୍କର ଆଚରଣ ଓ ଉଚ୍ଚାରଣ ଥିଲା ସମାନ । ମହାତ୍ମା ଗାନ୍ଧୀଙ୍କ ଓଡ଼ିଶା ଆଗମନରେ ଗୌରଚନ୍ଦ୍ର ଥିଲେ ତାଙ୍କର ସହଚର ଓ ସାଥୀ ।

୧୯୮୮ ମସିହା ସେପ୍ଟେମ୍ବର ୧ ତାରିଖରେ ଗୌରଚନ୍ଦ୍ରଙ୍କର କର୍ମମୟ ଜୀବନର ଅବସାନ ଘଟିଥିଲା, ପତ୍ନୀ ସ୍ୱର୍ଗତା ହରିପ୍ରିୟା ଦେବୀ ଓ ପୁଅ-ବୋହୂମାନଙ୍କ ଗହଣରେ । ତ୍ୟାଗପୂତ, କର୍ମମୟ ଜୀବନର ଅବସାନ ଘଟିଥିଲେ ମଧ୍ୟ ଗୌରଚନ୍ଦ୍ର ଓଡ଼ିଶାବସୀଙ୍କ ନିମନ୍ତେ ଛାଡ଼ି ଯାଇଛନ୍ତି ଅନେକ ଆଦର୍ଶର ପଦଚିହ୍ନ ଓ ଦେଶ-ଜାତି-ଭାଷା-ମୌଳିକ ଶିକ୍ଷାର ଉନ୍ନତି ନିମନ୍ତେ ଅଧାଗଢ଼ା ସ୍ୱପ୍ନର ଆହ୍ୱାନ ।

ଓଡ଼ିଆ ଜାତି, ଓଡ଼ିଆ ଭାଷା ବଞ୍ଚିଥିବା ଯାଏ 'ଗୌରଚନ୍ଦ୍ର ପାଢ଼ୀ' ବଞ୍ଚିଥିବେ ଓଡ଼ିଶାବାସୀଙ୍କ ମାନସପଟ୍ଟରେ ଏକ ଜାଜ୍ଜ୍ୱଲ୍ୟମାନ ତାରକା ଭାବରେ । ତାଙ୍କରି ଆଦର୍ଶ କୀର୍ତ୍ତିର ପତାକା ଚିରଦିନ ଫର୍‌ଫର୍ ହୋଇ ଉଡୁଥିବ ।

ସି.-୧୪୮, ନାଲ୍‌କୋ ନଗର
ଚନ୍ଦ୍ରଶେଖରପୁର, ଭୁବନେଶ୍ୱର-୨୩

- - -

# ଇତିହାସର ପଦଚିହ୍ନ

ବସନ୍ତ କୁମାର ଦେବ

ସାରା ବିଶ୍ୱରେ ଭାରତବର୍ଷ ଶ୍ରେଷ୍ଠ । ସାରା ଭାରତରେ ଉତ୍କଳ ଶ୍ରେଷ୍ଠ । ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସ କହିଥିଲେ - 'ଜଗତ ସରସେ ଭାରତ କମଳ, ତା'ମଧ୍ୟେ କେଶର ପୁଣ୍ୟ ନୀଳାଚଳ ।' ଅର୍ଥାତ୍ ଭାରତବର୍ଷକୁ ଯଦି ଗୋଟିଏ ପଦ୍ମଫୁଲ ସହିତ ତୁଳନା କରାଯାଏ, ଉତ୍କଳ ତା'ର କେଶର ସଦୃଶ । ଓଡ଼ିଶା ହେଉଛି ପ୍ରକୃତିର ବରଦାନ । ସମୁଦ୍ରର ସୁଦୀର୍ଘ ବେଳାଭୂମି, ଅଙ୍କାବଙ୍କା ନଦନଦୀ, ସୁଶୋଭିତ ସବୁଜିମା ଭରା ବଣ ପାହାଡ଼, ଜଳପ୍ରପାତ, ସୁବିସ୍ତୃତ ଚିଲିକା ହ୍ରଦ ଏବଂ ପ୍ରଚୁର ଖଣିଜ ସମ୍ପଦରେ ଭରପୂର ଏ ଓଡ଼ିଶା ମଧ୍ୟ ଉତ୍କୃଷ୍ଟ କଳାର ଦେଶ । କାରୁକଳାରେ ପରିପୂର୍ଣ୍ଣ ମନ୍ଦିରମାଳିନୀ ଐତିହାସିକ କୀର୍ତ୍ତିରାଜି ଓଡ଼ିଶାର ଅତୀତ ଗୌରବ ରୂପେ ଦଣ୍ଡାୟମାନ । କଟକର ତାରକସି କାମ, ପାରଳାଖେମୁଣ୍ଡିର ଶିଙ୍ଗ କାମ, ନୀଳଗିରି ଓ ଖିଚିଙ୍ଗର ମୁଗୁନିପଥର ବାସନ, ବାଳକାଟିର କଂସାପିତ୍ତଳ ବାସନ, ପିପିଲି ଚାନ୍ଦୁଆ, ରଘୁରାଜପୁରର ପଟ୍ଟଚିତ୍ର ତଥା ସମ୍ବଲପୁରୀ ଓ ମାଣିଆବନ୍ଧ ପାଟ ଦେଶ ବିଦେଶରେ ପ୍ରସିଦ୍ଧିଲାଭ କରିଛି ।

ଆଜିର ଓଡ଼ିଶା ଅତୀତରେ କଳିଙ୍ଗ, ଉତ୍କଳ, କଙ୍ଗୋଦ ଓ କୋଶଳ ନାମରେ ପରିଚିତ ଥିଲା । ଏହାକୁ ଉଡ୍ରଦେଶ ବୋଲି କୁହାଯାଉଥିଲା । ଉଡ୍ର ଶବ୍ଦର ଅର୍ଥ ଓଡ଼ିଆ । ଏ ଓଡ଼ିଆ ଜାତିର ଇତିହାସ ହେଉଛି ହଜାର ହଜାର ବର୍ଷର ଇତିହାସ । ସେ ଅସୀମ ପଥର ଯାତ୍ରୀ । ଭାରତବର୍ଷରେ ଖୁବ୍ କମ୍ ଜାତି ଅଛନ୍ତି, ଯେଉଁମାନଙ୍କର ଏପରି ଗୌରବମୟ ଇତିହାସ ଓ ପରମ୍ପରା ରହିଛି । ଓଡ଼ିଆ ସାଧବପୁଅର ନୌବାଣିଜ୍ୟର କାହାଣୀ ଏବେ ମଧ୍ୟ ଉଜ୍ଜୀବିତ । ଓଡ଼ିଆ ସାଧବପୁଅମାନେ ଜାଭା, ସୁମାତ୍ରା, ବୋର୍ଣ୍ଣିଓ, ବାଲି ପ୍ରଭୃତି ଦ୍ୱୀପକୁ ବାଣିଜ୍ୟ କରିବାକୁ ଯାଇ ସେଠାରୁ ପ୍ରଚୁର ପରିମାଣରେ ଧନରତ୍ନ ଆଣି ଉତ୍କଳର ଆର୍ଥିକ ଅଭିବୃଦ୍ଧି ଘଟାଇଥିଲେ । ଆଜି ଯଦି ଆମେ ସୁଦୂର ସିଂହଳ, ଜାଭା, ସୁମାତ୍ରା, ଥାଇଲାଣ୍ଡ, ମାଲେସିଆ, ସିଙ୍ଗାପୁର, ଭିଏତନାମ ଓ କାମ୍ବୋଡ଼ିଆ ଆଦି ଦେଶକୁ ଯିବା ସେଠାରେ ଇତିହାସର ପଦଚିହ୍ନ ଦେଖିବାକୁ ମିଳିବ । ଏସବୁ ଦେଶମାନଙ୍କର ସଭ୍ୟତା, ସଂସ୍କୃତି, ଇତିହାସ ଓ ପ୍ରଗତିକୁ ଯଦି ଆମେ ଅନୁଧ୍ୟାନ କରିବା ତେବେ ସେମାନଙ୍କର କଳା, ଭାସ୍କର୍ଯ୍ୟ, ନୃତ୍ୟ, ସଙ୍ଗୀତ ଆଦି ସବୁଥିରେ ଓଡ଼ିଆ ଜାତିର ଅବଦାନ ରହିଛି । ଉତ୍ଥାନ ପତନ ଜଗତର ଚିରନ୍ତନ ରୀତି ବହୁ ଉତ୍ଥାନ ପତନ ମଧ୍ୟରେ ଏ ଜାତି ଶୈଳୋଦ୍ଭବ, ଭୌମକର, ସୋମବଂଶୀ ରାଜାମାନଙ୍କ ଦ୍ୱାରା ପର୍ଯ୍ୟାୟକ୍ରମେ ଶାସିତ ହୋଇଥିଲା । ସପ୍ତମ ଶତାବ୍ଦୀରେ ନିର୍ମିତ ଭୁବନେଶ୍ୱରର ଲିଙ୍ଗରାଜ ମନ୍ଦିର, ଏକାଦଶ ଶତାବ୍ଦୀର ପୁରୀର ଶ୍ରୀଜଗନ୍ନାଥ ମନ୍ଦିର ଓ ଦ୍ୱାଦଶ ଶତାବ୍ଦୀରେ ନିର୍ମିତ କୋଣାର୍କର ସୂର୍ଯ୍ୟମନ୍ଦିର ଏହାର ଚାକ୍ଷୁସ ପ୍ରମାଣ । ଏହାର କାରୁକାର୍ଯ୍ୟ ଓଡ଼ିଆ ଶିଳ୍ପୀର କଳାନୈପୁଣ୍ୟତାର ପରିଚୟ ପ୍ରଦାନ କରିଆସୁଛି ।

ଖ୍ରୀଷ୍ଟପୂର୍ବ ୨୬୧ରେ ସଂଘଟିତ କଳିଙ୍ଗ ଯୁଦ୍ଧ ମଗଧ ସମ୍ରାଟ ଅଶୋକଙ୍କୁ ଚଣ୍ଡାଶୋକରୁ ଧର୍ମାଶୋକରେ ପରିଣତ କରିଥିଲା । ଏହି ଯୁଦ୍ଧର ବିଭୀଷିକାମୟ କାହାଣୀ ଆଜି ଭୁବନେଶ୍ୱର ଉପକଣ୍ଠରେ ଥିବା ଧଉଳି ପାହାଡ଼ର ପ୍ରସ୍ତର ଗାତ୍ରରେ ପାଲିଭାଷାରେ ଲିପିବଦ୍ଧ । ଏହି ପବିତ୍ର ଭୂମିରେ ଅଶୋକ ବୌଦ୍ଧ ଧର୍ମରେ ଦୀକ୍ଷିତ ହୋଇ ସମଗ୍ର ବିଶ୍ୱରେ ମାନବିକ ମୂଲ୍ୟବୋଧର ପ୍ରଚାର ଓ ପ୍ରସାର କରିଥିଲେ । କଳିଙ୍ଗରୁ ସିଂହଳକୁ ବୌଦ୍ଧ ଧର୍ମ ପ୍ରସାରିତ ହୋଇଥିଲା । ଏଠାରୁ ବୁଦ୍ଧଙ୍କର ଦନ୍ତ ନେଇ କଳିଙ୍ଗର ରାଜକନ୍ୟା ହେମମାଳା ସିଂହଳ ଅଭିମୁଖେ ଯାତ୍ରା କରିଥିଲେ । ବୁଦ୍ଧଙ୍କର ଏହି ଦନ୍ତ ଆଜି ସିଂହଳର କାଣ୍ଡିମନ୍ଦିରରେ ପୂଜିତ । ଖ୍ରୀଷ୍ଟପୂର୍ବ ପ୍ରଥମ ଶତାବ୍ଦୀରେ ବୀର ଓଡ଼ିଆ ଜାତିର ଦାୟାଦ ରୂପେ ମହାମେଘବାହାନ ଖାରବେଳଙ୍କ ଶାସନ କାଳରେ କଳିଙ୍ଗ ଏକ ବିଶାଳ ସାମ୍ରାଜ୍ୟରେ ପରିଣତ ହୋଇ ଗୌରବର ଶୀର୍ଷରେ ପହଞ୍ଚି ପାରିଥିଲା । ଯେଉଁ ସାମ୍ରାଜ୍ୟ ମଗଧରୁ ମହାରାଷ୍ଟ୍ର ପର୍ଯ୍ୟନ୍ତ ପରିବ୍ୟାପ୍ତ ଥିଲା । ଭୁବନେଶ୍ୱରର ଉପକଣ୍ଠରେ ଥିବା ଉଦୟଗିରି ପାହାଡ଼ର ହାତୀଗୁମ୍ଫାରେ ଖୋଦିତ ପାଲିଭାଷାରେ ଶିଳାଲିପି ତାଙ୍କ ଅନୁଶାସନର ନିଦର୍ଶନ । ତାଙ୍କ ଶାସନ କାଳରେ ସେ ଅନେକ ଲୋକହିତକର କାର୍ଯ୍ୟ କରିଯାଇଛନ୍ତି । ଜଳସେଚନ ନିମନ୍ତେ ଅନେକ କେନାଲ, ଗୁମ୍ଫା, ପ୍ରାସାଦ ଆଦି ନିର୍ମାଣ କରିବା ସହିତ ନୃତ୍ୟ ସଙ୍ଗୀତ କ୍ଷେତ୍ରରେ ମଧ୍ୟ ପରିସରବୃଦ୍ଧି କରିଥିଲେ ।

ରାଜା କପିଳେନ୍ଦ୍ର ଦେବଙ୍କ ରାଜତ୍ୱ କାଳରେ ଓଡ଼ିଶାର ସୀମା କାବେରୀ ନଦୀ ପର୍ଯ୍ୟନ୍ତ ବିସ୍ତୃତ ଥିଲା । ଏପରିକି ଓଡ଼ିଶା ସୀମା ଶହ ଶହ ବର୍ଷ ଧରି ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ ବିସ୍ତୃତ ଥିଲା । କଳା,

ସ୍ଥାପତ୍ୟ, ଭାଷା, ସାହିତ୍ୟ ଏବଂ ନୃତ୍ୟ ସଙ୍ଗୀତ କ୍ଷେତ୍ରରେ ଓଡ଼ିଶାର ଅବଦାନ ଅତୁଳନୀୟ । ଏହା ଆଜି ଭାରତ ଇତିହାସରେ ଉଦ୍‌ଘୋଷିତ । ଓଡ଼ିଆ ଜାତି ପର୍ଯ୍ୟାୟକ୍ରମେ ପ୍ରାୟ ୩୦୦ ବର୍ଷ ଧରି ବିଦେଶୀ ଶାସନରେ କବଳିତ ହୋଇ ରହିଥିଲା । ଖ୍ରୀଷ୍ଟପୂର୍ବ ୧୫୬୮ରେ ଏ ମାଟି ଆଫଗାନମାନଙ୍କ ଦ୍ୱାରା ଅଧିକୃତ ହେବା ଫଳରେ ଓଡ଼ିଆ ଜାତିର ସ୍ୱାଧୀନତା ପରାହତ ହୋଇଥିଲା । ଓଡ଼ିଶାର ଶେଷ ସ୍ୱାଧୀନ ରାଜା ମୁକୁନ୍ଦ ଦେବଙ୍କ ପରେ ୧୮୦୩ ମସିହାରେ ଏ ରାଜ୍ୟ ଇଂରେଜମାନଙ୍କ ଦ୍ୱାରା ଅଧିକୃତ ହେବା ଫଳରେ ଓଡ଼ିଆ ଜାତିର ସ୍ୱାଧୀନତା ଅସ୍ତମିତ ହୋଇଥିଲା । ଖଣ୍ଡବିଖଣ୍ଡିତ ଉତ୍କଳର ସୁରକ୍ଷା ଓ ଉନ୍ନତି ପାଇଁ ୧୮୭୮ ମସିହାରେ 'ଉତ୍କଳ ସଭା' ନାମରେ ଏକ ଅନୁଷ୍ଠାନ ଗଢ଼ି ଉଠିଥିଲା । ଏହି ସଭାର ପୃଷ୍ଠପୋଷକ ଥିଲେ କର୍ମବୀର ଗୌରୀଶଙ୍କର ରାୟ ଓ ଉତ୍କଳଗୌରବ ମଧୁସୂଦନ ଦାସ । ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ପାଇଁ ନବଜାଗରଣ ସୃଷ୍ଟି କରିବା ଏହାର ଆଭିମୁଖ୍ୟ ଥିଲା ।

ଜଗନ୍ନାଥ ଦାସ ଓଡ଼ିଆ ଜାତିର ଚିର ନମସ୍ୟ । ସେ ପ୍ରଥମେ ଓଡ଼ିଆ ଭାଷାରେ ଭାଗବତ ରଚନା କରି ଓଡ଼ିଶାର ପୁରପଲ୍ଲୀରେ ଓଡ଼ିଆ ଭାଷାକୁ ଉଜ୍ଜୀବିତ କରି ରଖିଥିଲେ । ଯେତେବେଳେ ଅନ୍ୟ ପ୍ରଦେଶର ଇଂରାଜୀ ଭାଷାପ୍ରେମୀ ତଥା କୁଚକ୍ରି ଗୋଷ୍ଠୀମାନେ ଓଡ଼ିଆ ଭାଷାକୁ ବିଲୋପ କରିବା ପାଇଁ ସ୍ୱର-ଉତ୍ତୋଳନ କରିଥିଲେ, ସେତେବେଳେ ଓଡ଼ିଆ ଭାଷାକୁ ଉଜ୍ଜୀବିତ କରି ରଖିବା ପାଇଁ ଗୋଟିଏ ରାତିରେ ଭକ୍ତକବି ମଧୁସୂଦନ ରାଓ ବର୍ଣ୍ଣବୋଧ ରଚନା କରିଥିଲେ । ଓଡ଼ିଆ ଭାଷାକୁ ଏକ ସ୍ୱତନ୍ତ୍ର ମର୍ଯ୍ୟାଦା ଦେବା ଏବଂ ଓଡ଼ିଶାକୁ ଏକ ସ୍ୱତନ୍ତ୍ର ପ୍ରଦେଶ ରୂପେ ଗଠନ କରିବା ପାଇଁ ଉତ୍କଳଗୌରବ ମଧୁସୂଦନ ଦାସ, ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସ, ଶଶୀଭୂଷଣ ରଥ, ବ୍ୟାସକବି ଫକୀରମୋହନ ସେନାପତି, ପଣ୍ଡିତ ନୀଳମଣି ବିଦ୍ୟାରତ୍ନ, ସ୍ୱଭାବକବି ଗଙ୍ଗାଧର ମେହେର, ବାଗ୍ମୀ ବିଶ୍ୱନାଥ କର, ସାହିତ୍ୟିକ ଗୋପାଳ ଚନ୍ଦ୍ର ପ୍ରହରାଜ, ପାରଳା ମହାରାଜା କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବ, ମୟୂରଭଞ୍ଜ ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜଦେଓ, ପଣ୍ଡିତ ଗୋଦାବରୀଶ ମିଶ୍ର, ପଣ୍ଡିତ ନୀଳକଣ୍ଠ ଦାସ, ଆଚାର୍ଯ୍ୟ ହରିହର, ଉତ୍କଳ କେଶରୀ ଡକ୍ଟର ହରେକୃଷ୍ଣ ମହତାବ, ଜଗବନ୍ଧୁ ସିଂହ, ଭକ୍ତକବି ମଧୁସୂଦନ ରାଓ ଓ କର୍ମବୀର ଗୌରୀଶଙ୍କର ରାୟ ପ୍ରଭୃତି ନିରବଚ୍ଛିନ୍ନ ଉଦ୍ୟମ ଜାରି ରଖିଥିଲେ । ଉତ୍କଳୀୟମାନଙ୍କର ଭାଷା ଓ ସଂସ୍କୃତିର ସୁରକ୍ଷା ପାଇଁ ୧୯୦୩ ମସିହାରେ 'ଉତ୍କଳ ସମ୍ମିଳନୀ' ପ୍ରତିଷ୍ଠା କରାଗଲା । ଏହି ସମ୍ମିଳନୀ 'ଉତ୍କଳ ସଭା'ଠାରୁ ଆହୁରି ବ୍ୟାପକ ଥିଲା । ପ୍ରତ୍ୟେକ ଓଡ଼ିଆର ପ୍ରାଣରେ ଜାତୀୟତା ଭାବ ତଥା ସ୍ୱାଭିମାନ ଭରି ଦେବା ପାଇଁ ସମାଜରେ ନବଜାଗରଣ ସୃଷ୍ଟି କରିବା ଏହି ସମ୍ମିଳନୀର ମୂଳଲକ୍ଷ୍ୟ ଥିଲା । ପ୍ରତ୍ୟେକ ବର୍ଷ ଓଡ଼ିଶାର ବିଭିନ୍ନ ଅଞ୍ଚଳରେ 'ଉତ୍କଳ ସମ୍ମିଳନୀ'ର ବାର୍ଷିକ ଅଧିବେଶନମାନ ଆୟୋଜନ କରାଯାଉଥିଲା । ଓଡ଼ିଆ ଭାଷାକୁ ବିଲୋପ କରିବାକୁ ଚକ୍ରାନ୍ତ କରୁଥିବା କେତେକ ନ୍ୟସ୍ତସ୍ୱାର୍ଥ ଗୋଷ୍ଠୀଙ୍କ ହୀନ ଉଦ୍ୟମକୁ ପରାହତ କରି ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ଦାବି ଉପସ୍ଥାପନ କରିବା ପାଇଁ ଯୋଜନାମାନ ପ୍ରସ୍ତୁତ ହେଉଥିଲା ।

ପାରଳା ମହାରାଜା ୧୯୧୯ ମସିହାରେ 'ମଣ୍ଟେଗୁ ଚେମ୍‌ସ ଫୋର୍ଡ଼ କମିଟି'ଙ୍କୁ ସାକ୍ଷାତ କରି ମାନ୍ଦ୍ରାଜ ପ୍ରଦେଶରେ ଥିବା ଓଡ଼ିଆମାନଙ୍କୁ ସ୍ୱତନ୍ତ୍ର ମତଦାନର ସୁବିଧା ଦେବା ପାଇଁ ଦାବି ଉପସ୍ଥାପନ କରିଥିଲେ । ଏହାଫଳରେ ଓଡ଼ିଆମାନେ ମାନ୍ଦ୍ରାଜ ଆସେମ୍ବ୍ଲି ପାଇଁ ୧୦ ଜଣ ଲୋକ ପ୍ରତିନିଧିଙ୍କୁ ନିର୍ବାଚିତ କରିବାରେ ସଫଳ ହୋଇଥିଲେ । ମାତ୍ର ଓଡ଼ିଆମାନଙ୍କୁ ଏକ ପ୍ରଦେଶାଧୀନ କରାଯିବା ଦାବିକୁ ମାନ୍ଦ୍ରାଜ ସରକାର ଘୋର ବିରୋଧ କଲେ ।

୧୯୨୨ ମସିହାରେ ଯେତେବେଳେ ମଧୁବାବୁ ବିହାର-ଓଡ଼ିଶା ପ୍ରଦେଶର ମନ୍ତ୍ରୀ ଥିଲେ, ସେତେବେଳେ ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ଏକ ପ୍ରଦେଶାଧୀନ କରାଯିବା ସପକ୍ଷରେ ଏକ ପ୍ରସ୍ତାବ 'ଓଡ଼ିଶା ପ୍ରାଦେଶିକ କାଉନ୍‌ସିଲ୍'ରେ ଗୃହୀତ ହୋଇଥିଲା । ତେଣୁ ଏହାକୁ ଭିତ୍ତିକରି ୧୯୨୪ ମସିହାରେ ଭାରତ ସରକାର ତତ୍କାଳୀନ ଓଡ଼ିଶାର ପଲିଟିକାଲ ଏଜେଣ୍ଟ ସି.ଆଇ.ଫିଲିଫ୍ ଏବଂ ବିଶାଖାପାଟଣା ଜିଲ୍ଲାର କଲେକ୍ଟର ଏ.ସି. ଡାଫ୍‌ଙ୍କୁ ନେଇ 'ଫିଲିଫ୍ ଡାଫ୍ କମିଟି' ଗଠନ କରିଥିଲେ । ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ଏକ ପ୍ରଦେଶାଧୀନ କରାଯିବା ସମ୍ବନ୍ଧରେ ସମୀକ୍ଷା କାର୍ଯ୍ୟ ଉକ୍ତ କମିଟି ଉପରେ ନ୍ୟସ୍ତ କରାଯାଇଥିଲା । ବିଶାଖାପାଟଣା ଓ ଗଞ୍ଜାମ ଜିଲ୍ଲାକୁ ଉକ୍ତ କମିଟି ଗସ୍ତ କରି ପାରଳା ମହାରାଜାଙ୍କୁ ସାକ୍ଷାତ କରିଥିଲେ । ପାରଳା ମହାରାଜା କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବ 'ମଣ୍ଟେଗୁ ଚେମ୍‌ସ ଫୋର୍ଡ଼ କମିଟି'ର ସୁପାରିଶକ୍ରମେ ସମସ୍ତ ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ଏକ ପ୍ରଦେଶାଧୀନ କରିବା ସପକ୍ଷରେ 'ଫିଲିଫ୍ ଡାଫ୍ କମିଟି'ଙ୍କୁ ପ୍ରଭାବିତ କରିଥିଲେ । ଏପରିକି ଜୟପୁର, ମଞ୍ଜୁଷା, ଟେକେଲି ଓ ଜଳନ୍ତରାର ରାଜାମାନେ ଗଜପତିଙ୍କ ସହିତ ଏକମତ ହୋଇ ଅନୁରୂପ ଦାବି ଉପସ୍ଥାପନ କରିଥିଲେ । 'ଫିଲିଫ୍ ଡାଫ୍ କମିଟି' ଏହି ଦାବିର ଯଥାର୍ଥତାକୁ ହୃଦୟଙ୍ଗମ କରି ମାନ୍ଦ୍ରାଜ ପ୍ରଦେଶରେ ଥିବା ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ଏକତ୍ରିକରଣ କରିବା ପାଇଁ ସହମତି ପ୍ରକାଶ କଲେ । ଏହାଥିଲା ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ଏକତ୍ର କରିବା ସପକ୍ଷରେ ପ୍ରଥମ ସରକାରୀ ସୁପାରିଶ ।

୧୯୨୮ ମସିହା ଫେବୃଆରୀ ମାସରେ 'ସାଇମନ କମିଶନ' ଭାରତ ପରିଦର୍ଶନ କଲେ । ମଧୁବାବୁ ପାଟଣାଠାରେ କମିଶନଙ୍କୁ ସାକ୍ଷାତ କରି ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ନେଇ ଏକ ସ୍ୱତନ୍ତ୍ର ପ୍ରଦେଶ ଗଠନ କରିବାକୁ ଦାବି ଉପସ୍ଥାପନ କଲେ । ସେହିବର୍ଷ ପାରଳା ମହାରାଜା କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବ ମାନ୍ଦ୍ରାଜଠାରେ କମିଶନଙ୍କ ନିକଟରେ ଅନୁରୂପ ଦାବି ଉପସ୍ଥାପନ କରିଥିଲେ । ପାରଳା ମହାରାଜାଙ୍କ ପରାମର୍ଶକ୍ରମେ ଶଶୀଭୂଷଣ ରଥ ଏବଂ ବ୍ରଜସୁନ୍ଦର ଦାସ

ମଧ୍ୟ ଅନୁରୂପ ସ୍ମାରକପତ୍ର କମିଶନଙ୍କ ନିକଟରେ ପେଶ୍ କରିଥିଲେ । ଓଡ଼ିଆମାନଙ୍କର ଦାବି ଯଥାର୍ଥ ବୋଲି କମିଶନ ହୃଦୟଙ୍ଗମ କରି ଓଡ଼ିଆ ଭାଷାଭାଷୀ ସମସ୍ତ ଜମିଦାରୀ ଓ ଗଡ଼ଜାତ ରାଜ୍ୟମାନଙ୍କୁ ମଧ୍ୟ ପରିକଳ୍ପିତ ଓଡ଼ିଶା ପ୍ରଦେଶ ସହ ମିଶ୍ରଣ କରାଯାଉ ବୋଲି ତାଙ୍କ ମତାମତରେ ଉଲ୍ଲେଖ କରିଥିଲେ ।

୧୯୩୦ ମସିହାରେ ଲଣ୍ଡନଠାରେ ଅନୁଷ୍ଠିତ ପ୍ରଥମ ଗୋଲଟେବୁଲ ବୈଠକରେ ଓଡ଼ିଆମାନଙ୍କ ପ୍ରତିନିଧିତ୍ୱ କରିବା ପାଇଁ ବିହାର-ଓଡ଼ିଶା ସରକାର ପାରଳା ମହାରାଜାଙ୍କୁ ମନୋନୀତ କରିଥିଲେ । ଉକ୍ତ ବୈଠକରେ ସେ ଓଡ଼ିଆମାନଙ୍କ ନ୍ୟାଯ୍ୟ ଦାବିକୁ ଦୃଢ଼ ଭାବରେ ଉପସ୍ଥାପନ କରିଥିଲେ । ୧୯୩୧ ମସିହାରେ ଅନୁଷ୍ଠିତ ଦ୍ୱିତୀୟ ଗୋଲଟେବୁଲ ବୈଠକରେ ଓଡ଼ିଶାକୁ ଏକ ସ୍ୱତନ୍ତ୍ର ପ୍ରଦେଶ ରୂପେ ଗଠନ କରାଯିବା ପାଇଁ ପ୍ରସ୍ତାବ ଗୃହୀତ ହୋଇଥିଲା । ଓଡ଼ିଶା ପ୍ରଦେଶର ସୀମା ନିର୍ଦ୍ଧାରଣ କରିବା ପାଇଁ ଭାରତ ସରକାର 'ଓଡ଼ନେଲ କମିଟି' ଗଠନ କଲେ । କଟକ, ପୁରୀ, ସମ୍ବଲପୁର, ଅନୁଗୁଳ, ଖଡ଼ିଆଳ, ଗଞ୍ଜାମ ଓ ବିଶାଖାପାଟଣା ଜିଲ୍ଲାର ବିସ୍ତୃତ ଅଞ୍ଚଳର ସମ୍ମିଶ୍ରଣରେ ଓଡ଼ିଶା ପ୍ରଦେଶ ଗଠନ ହେବ ବୋଲି ଉକ୍ତ କମିଟି ମତପୋଷଣ କଲେ । କିନ୍ତୁ ଇଣ୍ଡିଆ ଅଫିସ୍ ତରଫରୁ ପ୍ରକାଶିତ ଶ୍ୱେତପତ୍ରରେ ଜୟପୁର ଓ ପାରଳାଖେମୁଣ୍ଡି ଜମିଦାରୀକୁ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ପରିକଳ୍ପନାରୁ ବାଦ୍ ଦିଆଯାଇଥିଲା । କିନ୍ତୁ ଗଜପତି ମହାରାଜାଙ୍କ କର୍ମ ତତ୍ପରତା ଓ ନିଷ୍ଠାପର ଉଦ୍ୟମ ଫଳରେ ବିଲାତର ଗୃହମନ୍ତ୍ରୀ ସାମୁଏଲ ହୋରେ ଓଡ଼ିଆମାନଙ୍କର ଦାବିର ଯଥାର୍ଥତାକୁ ଉପଲବ୍ଧି କରି 'ଜଏଣ୍ଟ ପାର୍ଲାମେଣ୍ଟ କମିଟି' ମାଧ୍ୟମରେ ପରିକଳ୍ପିତ ଓଡ଼ିଶା ପ୍ରଦେଶ ଗଠନର ପୁନର୍ବିଚାର କରାଇଥିଲେ । ଜୟପୁର, ପାରଳାଖେମୁଣ୍ଡି ଓ ଜଳନ୍ତରାର ଜମିଦାରୀ ଅଞ୍ଚଳ ଓ ପାରଳାଖେମୁଣ୍ଡି ସହର ସମେତ କିଛି ଅଂଶର ମିଶ୍ରଣରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ପରିକଳ୍ପନା ବାସ୍ତବ ରୂପ ନେଲା ।

୧୯୩୬ ମସିହା ଜାନୁଆରୀ ୨୧ ତାରିଖରେ ଭାରତ ସରକାରଙ୍କ ଆଦେଶ କ୍ରମେ ଓଡ଼ିଶା ପ୍ରଦେଶ ଗଠନ ନିମନ୍ତେ ବ୍ରିଟିଶ୍ ପାର୍ଲାମେଣ୍ଟର ଉଭୟ ଗୃହରେ ଉପସ୍ଥାପିତ ଓ ଗୃହୀତ ହେଲା ଏବଂ ଏହା ୧୯୩୬ ମାର୍ଚ୍ଚ ୭ ତାରିଖରେ ବିଲାତ ସମ୍ରାଟଙ୍କ ଅନୁମୋଦନ ପାଇଁ ଉପସ୍ଥାପନ କରାଗଲା । ଏହା ଅନୁମୋଦନ ଲାଭ କଲା ପରେ ୧୯୩୬ ମସିହା ଏପ୍ରିଲ ୧ ତାରିଖରେ କାର୍ଯ୍ୟକାରୀ ହେଲା । ମାଡ୍ରାଜ ସେଣ୍ଟ୍ରାଲ ପ୍ରୋଭିନ୍ସ ଓ ବିହାରର ଓଡ଼ିଆ ଭାଷାଭାଷୀ ଅଞ୍ଚଳଗୁଡ଼ିକ ମୂଳ ଓଡ଼ିଶା ଭୂଖଣ୍ଡ ସହ ମିଶ୍ରଣ କରାଯାଇ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ହେଲା । ଏହାଫଳରେ କଟକ, ପୁରୀ, ବାଲେଶ୍ୱର, ସମ୍ବଲପୁର, ଗଞ୍ଜାମ ଓ କୋରାପୁଟ ପ୍ରଭୃତି ଜିଲ୍ଲାଗୁଡ଼ିକ ଏଥିରେ ସାମିଲ ହେଲା । ଭାରତର ରାଜନୈତିକ ଏବଂ ଭୌଗୋଳିକ ମାନଚିତ୍ରରେ ଓଡ଼ିଶା ଏକ ସ୍ୱତନ୍ତ୍ର ଆସନର ମର୍ଯ୍ୟାଦା ହାସଲ କଲା ।

ଓଡ଼ିଶାକୁ ଏକ ସ୍ୱତନ୍ତ୍ର ପ୍ରଦେଶ ରୂପେ ଗଠନ କରିବା ପାଇଁ ଇଂରେଜ ଶାସନ କାଳରେ ଯେଉଁମାନେ ଅବିରତ ଉଦ୍ୟମ, ନିରବଚ୍ଛିନ୍ନ ସାଧନା ଓ ସଂଗ୍ରାମ ଅବ୍ୟାହତ ରଖିଥିଲେ ଏବଂ ନିଜ ଜୀବନକୁ ମଧ୍ୟ ଉତ୍ସର୍ଗ କରିଥିଲେ, ସେମାନେ ଆଜି ଓଡ଼ିଆ ଜାତିର ଚିରସ୍ମରଣୀୟ । ବିଶେଷ ଭାବେ ୧୯୩୬ ମସିହା ଏପ୍ରିଲ ୧ ତାରିଖରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ହେବା ପରେ ସବୁ ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ଏହି ପ୍ରଦେଶ ସହିତ ରାଜନୈତିକ ଦୃଷ୍ଟିକୋଣରୁ ମିଶ୍ରଣ କରିବା ପାଇଁ ଉଦ୍ୟମ ଜାରି ରହିଥିଲା । ବିଶେଷ ଭାବେ ସର୍ଦ୍ଦାର ବଲ୍ଲଭଭାଇ ପଟେଲ ଓ ଡକ୍ଟର ହରେକୃଷ୍ଣ ମହତାବଙ୍କ ନିଷ୍ଠା ଓ ଉଦ୍ୟମ ଯୋଗୁଁ ୧୯୪୮ ମସିହାରେ ଏକ ବିଶାଳ ଓଡ଼ିଶା ପ୍ରଦେଶ ଗଠନ ସମ୍ଭବ ହୋଇପାରିଥିଲା ।

ଆମ ସରକାରଙ୍କ ବହୁମୁଖୀ ଯୋଜନାମାନ ପ୍ରବର୍ତ୍ତନ ହେବା ଫଳରେ ଆଜିର ଓଡ଼ିଶା ସମୃଦ୍ଧି ଓ ପ୍ରଗତି ପଥେ ଅଗ୍ରସର ହୋଇପାରିଛି । ଶିଳ୍ପ, କୃଷି, ପର୍ଯ୍ୟଟନ, ଶିକ୍ଷା, ସ୍ୱାସ୍ଥ୍ୟ, କଳା ଓ ସଂସ୍କୃତି, ଗମନାଗମନ ଓ କ୍ରୀଡ଼ା କ୍ଷେତ୍ରରେ ବିପୁଳ ଉଦ୍ୟମ ଆରମ୍ଭ ହେବା ସଂଗେସଂଗେ ଉଲ୍ଲେଖନୀୟ ସଫଳତା ମଧ୍ୟ ହାସଲ ହୋଇପାରିଛି । ରାଜ୍ୟବାସୀଙ୍କ ସାମାଜିକ ଓ ଅର୍ଥନୈତିକ ମାନଦଣ୍ଡକୁ ସୁଦୃଢ଼ କରିବା ଉଦ୍ଦେଶ୍ୟରେ ଆମ ସରକାରଙ୍କ ପକ୍ଷରୁ ଉଦ୍ୟମ ଜାରି ରହିଛି । ଆଇନ ଶୃଙ୍ଖଳା ରକ୍ଷା, ପ୍ରଶାସନିକ ତଥା ଆର୍ଥିକ ସଂସ୍କାର ମାଧ୍ୟମରେ ଜନସାଧାରଣଙ୍କ ଜୀବନଧାରଣର ଗୁଣାତ୍ମକ ମାନବୃଦ୍ଧି ପାଇଁ ରାଜ୍ୟ ସରକାଙ୍କର ସମସ୍ତ ପ୍ରୟାସ କେନ୍ଦ୍ର ସରକାରଙ୍କ ଦ୍ୱାରା ଉଚ୍ଚ ପ୍ରଶଂସିତ ହୋଇଛି । ଓଡ଼ିଶାବାସୀ ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକଙ୍କ ସ୍ୱଚ୍ଛ, ଉତ୍ତରଦାୟୀ ଓ ଲୋକାଭିମୁଖୀ ଶାସନ ଉପରେ ଆସ୍ଥା ପ୍ରକଟ କରିଛନ୍ତି ।

ଆଜିର ଏହି ପବିତ୍ର ଉତ୍କଳ ଦିବସ ଅବସରରେ ଉତ୍କଳର ମହାମନୀଷୀଗଣ ତଥା ବରପୁତ୍ରମାନଙ୍କର ସ୍ମୃତିଚାରଣ କରିବା ସହିତ ଉତ୍କଳର ଆରାଧ୍ୟ ଦେବତା ଶ୍ରୀଜଗନ୍ନାଥଙ୍କ ନିକଟରେ ଓଡ଼ିଶାର ସର୍ବାଙ୍ଗୀନ ଉନ୍ନତି କାମନା କରି ଓଡ଼ିଶାର ହୃତଗୌରବ ଫେରାଇ ଆଣିବା ପାଇଁ ଆମେ ସଂକଳ୍ପବଦ୍ଧ ହେବା ।

କ୍ୱାଟର ନଂ-ଇ/୭୫
ଇ-କଲୋନୀ, ୟୁନିଟ୍-୮
ଭୁବନେଶ୍ୱର-୧୨

■■■■■■■

# ସିଦ୍ଧାନ୍ତ ଦର୍ପଣ ହେବ ନାହିଁ ଲୟ

ଇଂ ନିରାକାର ମହାଲିକ

ଊନବିଂଶ ଶତକରେ ଯେଉଁ କେତେଜଣ ଓଡ଼ିଆ ବିଦ୍ୱାନ ସାହିତ୍ୟ ଓ ଜ୍ୟୋତିର୍ବିଜ୍ଞାନରେ ଗବେଷଣା କରି ବିଶ୍ୱରେ ଉଚ୍ଚ ମାନ୍ୟତା ପାଇଥିଲେ, ସେମାନଙ୍କ ମଧ୍ୟରେ ମହାମହୋପାଧ୍ୟାୟ ସାମନ୍ତ ଚନ୍ଦ୍ରଶେଖର ସିଂହ ହରିଚନ୍ଦନ ମହାପାତ୍ରଙ୍କ ସାଧନା ଅନବଦ୍ୟ । ଖ୍ରୀଷ୍ଟୀୟ ଦ୍ୱିତୀୟ ଶତକରେ ପରିବ୍ରାଜକ ଟଲେମି (ଖ୍ରୀ: ୧୪୦) ପୃଥିବୀକୁ ବିଶ୍ୱର କେନ୍ଦ୍ର ରୂପେ ପ୍ରତିପାଦନ କରିଥିଲେ । ସୂର୍ଯ୍ୟ ପୃଥିବୀର ଚାରିପଟରେ ଘୁରି ବୁଲୁଛି ବୋଲି ଯାହା ପ୍ରତୀୟମାନ ହୁଏ, ତାହା ଠିକ୍ ବୋଲି ସେ ବିଚାର କରିଥିଲେ । ଏହା ପୂର୍ବରୁ ଜୈନ ଓ ବୌଦ୍ଧ ଧର୍ମ ସାହିତ୍ୟରେ ଏହି ତଥ୍ୟ ରହିଆସିଛି । ପୋଲାଣ୍ଡବାସୀ କୋପରନିକସ୍ (୧୪୭୩-୧୫୪୩) ଓ ଇଟାଲୀବାସୀ ଗାଲିଲିଓ (୧୫୬୪-୧୬୪୨) ଜ୍ୟୋତିର୍ବିଦ୍‌ଗଣ ପୃଥିବୀ ସ୍ଥିର ନୁହେଁ ବୋଲି ଆବିଷ୍କାର କରିଥିଲେ ।[୧] ସାର୍ ଆଇଜାକ୍ ନିଉଟନ୍ (୧୬୪୨-୧୭୨୭) ବ୍ୟକ୍ତିଗତ ଭାବେ ଗବେଷଣା କରି ମାଧ୍ୟାକର୍ଷଣ ଶକ୍ତିର ତଥ୍ୟ ବାହାର କରିଥିଲେ । ଆଇନଷ୍ଟାଇନ (ଜନ୍ମ ୧୮୭୯) ଏହି ଶକ୍ତିର ତଥ୍ୟକୁ କିଛି ସଂଶୋଧନ କରିଥିଲେ । କିନ୍ତୁ ସାମନ୍ତ ଚନ୍ଦ୍ରଶେଖର (୧୮୬୯) ତାଙ୍କର ସେହି ପୁରୁଣା ପଦ୍ଧତିରେ (ଭୂ-ସ୍ଥିର) ଗବେଷଣା ଚଳାଇ ସଠିକ୍ କାଳ ନିର୍ଣ୍ଣୟ କରିବାରେ ସଫଳ ହୋଇଥିଲେ ।

୧୮୩୫ ମସିହା ଡିସେମ୍ବର (ପୌଷ) ମାସ କୃଷ୍ଣ ଅଷ୍ଟମୀ ଦିନ ମାତା କୃଷ୍ଣମାଳୀ ଓ ପିତା ଶ୍ୟାମବନ୍ଧୁ ସିଂହଙ୍କ ଔରସରୁ ନୟାଗଡ଼ ଜିଲ୍ଲା ଖଣ୍ଡପଡ଼ାର ରାଜ ବଂଶୋଦ୍ଭବ ଭରଦ୍ୱାଜ ଗୋତ୍ରୀ ଏକ ଜମିଦାର କୁଳରେ ସାମନ୍ତ ଚନ୍ଦ୍ରଶେଖର ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତା ଶ୍ୟାମବନ୍ଧୁ ଖଣ୍ଡପଡ଼ାର ତତ୍କାଳୀନ ରାଜାଙ୍କ ଖୁଲ୍ଲତାତ ଓ ମାତା ଥିଲେ ଧରାକୋଟ ରାଜ୍ୟର ରାଜଜେମା । ତାଙ୍କର ବାଲ୍ୟଗୁରୁ ଥିଲେ ପଣ୍ଡିତ କୃତ୍ତିବାସ ରଥ ଓ ଆନନ୍ଦ ଖାଡଙ୍ଗା । ସେ ମାତ୍ର ସାତବର୍ଷ ବୟସରେ ବର୍ଣ୍ଣଶିକ୍ଷା, ପଣକିଆ, ଗଣିତ ଓ ସଂସ୍କୃତ ଅଧ୍ୟୟନ କରିଥିଲେ । ବାଲ୍ୟକାଳରୁ ପିତାଙ୍କର ଜ୍ୟୋତିର୍ବିଦ୍ୟା ଚିନ୍ତାଧାରା, ସମାୟିକ ଛାୟାମାପ, ନକ୍ଷତ୍ର ଦର୍ଶନ ଆଦି ରହସ୍ୟ ବିଦ୍ୟା ପ୍ରତି ସେ ଆକୃଷ୍ଟ ହୋଇଥିଲେ । ଉପଯୁକ୍ତ ସମୟରେ ସେ ପିତାଙ୍କଠାରୁ ଫଳିତ ଜ୍ୟୋତିଷ ମଧ୍ୟ ଶିକ୍ଷା କରିଥିଲେ । ତିଗିରିଆର ଭୁବନେଶ୍ୱର



ବଡ଼ପଣ୍ଡାଙ୍କଠାରୁ ସେ ତର୍କ ଓ ଗଣିତ ଆଦି ଅଧ୍ୟୟନ ଓ ଚର୍ଚ୍ଚା କରିଥିଲେ । ଏତଦ୍‌ବ୍ୟତୀତ ସ୍ମୃତି, ନାଟକ, ରଘୁବଂଶ, କୁମାର ସମ୍ଭବ, ନୈଷଧ ଚରିତ ଆଦି ସଂସ୍କୃତ କାବ୍ୟ, ଅମର କୋଷ ଅଭିଧାନ, ଭାଗବତ, କିରାତାର୍ଜୁନୀୟ ମେଘଦୂତ, ହଂସଦୂତ ପାଠ କରିବା ସହିତ ସେ ଭାସ୍କରାଚାର୍ଯ୍ୟ ଓ ବରାହମିହିର ପ୍ରଭୃତି ଜ୍ୟୋତିର୍ବିଦମାନଙ୍କର ସିଦ୍ଧାନ୍ତମାନ ଅନୁଶୀଳନ କରିଥିଲେ । ସେ ମଧ୍ୟ ପାଲା, ଚୌପଦୀ ଆଦି ସମସ୍ତ ଓଡ଼ିଆ କାବ୍ୟ ନାଟକ ଓ ସାହିତ୍ୟ ଅଧ୍ୟୟନ କରିଥିଲେ । ତାଙ୍କର ପ୍ରିୟଗ୍ରନ୍ଥ ନୈଷଧୀୟ ଚରିତ ଓ ଭାଗବତ ସେ ସଦାସର୍ବଦା ଆବୃତ୍ତି କରୁଥିଲେ ।

ଶ୍ରୀହର୍ଷଙ୍କ ନୈଷଧୀୟ ଚରିତ କାବ୍ୟ ସାମନ୍ତ ଚନ୍ଦ୍ରଶେଖରଙ୍କ ବିବାହ କାଳରେ ସାହାଯ୍ୟ କରିଥିବା କଥା ଶୁଣିଲେ ଆଶ୍ଚର୍ଯ୍ୟାନ୍ୱିତ ହେବାକୁ ହୁଏ । ବିଶିଷ୍ଟ ଲେଖକ ଭାଗୀରଥି ନେପାକଙ୍କ 'ନୟାଗଡ଼ ଇତିହାସ ଓ ସଂସ୍କୃତି' ପୁସ୍ତକର ପାଣ୍ଡୁଲିପିରୁ ଜଣାଯାଏ ଯେ[୨], ସାମନ୍ତ ଚନ୍ଦ୍ରଶେଖରଙ୍କ ୨୨ ବର୍ଷ ବୟସରେ ଅନୁଗୋଳ ରାଜଜେମା ସୀତାଦେବୀଙ୍କ ସଙ୍ଗେ ତାଙ୍କର ବିବାହ ଠିକ୍ ହୋଇଥିଲା ।

ବରଯାତ୍ରୀମାନେ ଯାଇ ଅନୁଗୋଳରେ ପହଞ୍ଚିଲା ପରେ ସାମନ୍ତଙ୍କ ଅଗାଧ ବିଦ୍ୟା ବୁଦ୍ଧି-ସତ୍ତ୍ୱେ ତାଙ୍କର ରୂପ ହୀନତା ଓ ଧନହୀନତା ଯୋଗୁଁ ଅନୁଗୋଳର ରାଜମାତା ତାଙ୍କର ଦିବ୍ୟ ସୁନ୍ଦରୀ ଜେମାଙ୍କୁ ସାମନ୍ତଙ୍କ ସହ ବିବାହ ଦେବାକୁ ଅନିଚ୍ଛା ପ୍ରକାଶ କରିଥିଲେ । ସାମନ୍ତ ଚନ୍ଦ୍ରଶେଖର ଏହା ଦେଖି ନିଜର ବିଦ୍ୟାବୁଦ୍ଧିର ପରିଚୟ ଦେବାକୁ ଯାଇ ମନ୍ଦ୍ର ଗମ୍ଭୀର ସ୍ୱରରେ ତାଙ୍କର ପ୍ରିୟକାବ୍ୟ ନୈଷଧୀୟ ଚରିତରେ ବର୍ଣ୍ଣନା କରାଯାଇଥିବା ନଳ-ଦମୟନ୍ତୀଙ୍କ ସ୍ୱୟମ୍ବର ଉପାଖ୍ୟାନର ସଂସ୍କୃତ ଶ୍ଳୋକଗୁଡ଼ିକର ଆବୃତ୍ତି କରି ତା'ର ସରଳ ଅର୍ଥ ବୁଝାଇବାକୁ ଲାଗିଲେ । ଏହି ଶ୍ଳୋକାର୍ଥ ଶୁଣି ରାଜମାତାଙ୍କ ମନର ପରିବର୍ତ୍ତନ ହେଲା । ରାଜଜେମା ସୀତାଦେବୀ ସମସ୍ତ ବାଧାବିଘ୍ନ ତ୍ୟାଗକରି ବିବାହ ବେଦୀକୁ ଆଗେଇ ଆସିଲେ । ସର୍ବ ଶୁଭରେ ବିବାହ କାର୍ଯ୍ୟ ସମାପନ ହେଲା ।

ଉତ୍କଳରେ ପଞ୍ଜିକା ବିଷୟରେ କୌଣସି ଆଲୋଚନା କରିବା ପୂର୍ବରୁ ପୁରୁଷୋତ୍ତମ ନିବାସୀ ଶଙ୍କର ଓ ସରସ୍ୱତୀଙ୍କ ପୁତ୍ର ଶତାନନ୍ଦ ଆଚାର୍ଯ୍ୟଙ୍କୁ ସ୍ମରଣ କରିବାକୁ ପଡ଼େ । ଖ୍ରୀ:୧୧ଶ ଶତାବ୍ଦୀରେ ସୁପ୍ରସିଦ୍ଧ ଜ୍ୟୋତିର୍ବିଦ ପଣ୍ଡିତ ଶତାନନ୍ଦ 'ଭାସ୍ୱତୀ' ନାମକ ଗ୍ରନ୍ଥ ରଚନା କରିଥିଲେ । ଏହି ଗ୍ରନ୍ଥକୁ ଭିତ୍ତିକରି ଓଡ଼ିଶାର ପଞ୍ଜିକାରମାନେ ମୁଖ୍ୟତ ପଞ୍ଜିକା ରଚନା କରିଥାନ୍ତି । ଗଙ୍ଗ ରାଜତ୍ୱ କାଳର ପ୍ରାରମ୍ଭରେ ଶତାନନ୍ଦଙ୍କ ଜନ୍ମ ଓଡ଼ିଶାରେ ହୋଇଥିବା ଜଣାଯାଏ । ଐତିହାସିକ ସତ୍ୟନାରାୟଣ ରାଜଗୁରୁ ଲେଖିଛନ୍ତି ଯେ ଶତାନନ୍ଦଙ୍କ ନେତୃତ୍ୱରେ ଚୋଡ଼ଗଙ୍ଗ ଦେବଙ୍କ ଦ୍ୱାରା ସୁପ୍ରସିଦ୍ଧ ଧର୍ମକେନ୍ଦ୍ର ନୀଳାଚଳ ଧାମରେ ଏକ କାଳ ନିର୍ଣ୍ଣୟ କେନ୍ଦ୍ର ପ୍ରତିଷ୍ଠା ଲାଭ କରିଥିଲା । ଭାସ୍ୱତୀ ଗ୍ରନ୍ଥରେ ତିଥି ଧ୍ରୁବାଧିକାର, ଗ୍ରହ ଧ୍ରୁବାଧିକାର, ତିଥି ସିଦ୍ଧ୍ୟକାର, ଗ୍ରହ ସ୍ଫୁଟାଧିକାର, ତ୍ରି-ପ୍ରଶ୍ନାଧିକାର, ଚନ୍ଦ୍ର ଗ୍ରହଣାଧିକାର, ସୂର୍ଯ୍ୟଗ୍ରହଣାଧିକାର ଓ ପାରି ଲେଖାଧିକାର ଭେଦରେ ଆଠ ଗୋଟି ଅଧ୍ୟାୟ ରହିଛି । ଗ୍ରନ୍ଥଟି ପଞ୍ଚ ସିଦ୍ଧାନ୍ତସାର ବା ପଞ୍ଚ ସିଦ୍ଧାନ୍ତ ଭାସ୍ୱତୀ ନାମରେ ନାମିତ ।[୩]

ସାମନ୍ତ ଚନ୍ଦ୍ରଶେଖର ବିଭିନ୍ନ ଜ୍ୟୋତିର୍ବିଦମାନଙ୍କ ସିଦ୍ଧାନ୍ତମାନ ଅନୁଶୀଳନ କରି ତତ୍କାଳୀନ ପଞ୍ଜିକାରେ ଗ୍ରହ ନକ୍ଷତ୍ର ସ୍ଥିତି ଓ ଗତିରେ ଅମେଳ ଲକ୍ଷ୍ୟ କରି ନିଜେ ସ୍ୱତନ୍ତ୍ର ଭାବେ ଗବେଷଣା ଚଳାଇଥିଲେ । ସେ ଦୁଇ ଖଣ୍ଡ ବାଉଁଶ କାଠିରେ ମାନଯନ୍ତ୍ର ନିର୍ମାଣ କରି ଗ୍ରହମାନଙ୍କର ଅଂଶାତ୍ମକ ସ୍ଥିତି ମାପିବାରେ ସକ୍ଷମ ହୋଇଥିଲେ । ସେ ବୈଜ୍ଞାନିକ ଉପାୟରେ ପ୍ରାଚୀନ ସୂର୍ଯ୍ୟ ସିଦ୍ଧାନ୍ତ, ପଞ୍ଜିକାରେ ଥିବା ଦୋଷତ୍ରୁଟି ଓ ଗଣନା ଉପାୟ ଦୂର କରିବା ପାଇଁ ଚେଷ୍ଟା କରିଥିଲେ । ଗାଣିତିକ ସୂତ୍ର ମାଧ୍ୟମରେ ଛୋଟ କାଠିରେ ଏକକ ଅଂଶମାନ ଚିହ୍ନ ବା ଦାଗ ଦେଇ ତା' ସାହାଯ୍ୟରେ ସେ ଗ୍ରହମାନଙ୍କର ଅଂଶ ଓ ଦୂର ପର୍ବତର ଉଚ୍ଚତା ମାପି ପାରୁଥିଲେ । ଚନ୍ଦ୍ରର ସୂକ୍ଷ୍ମ ଓ ଶୁଦ୍ଧ ଗଣନା ତଥା ତା'ର ବିଶୃଙ୍ଖଳାଦିର ଅଧ୍ୟୟନ କରି ସେ ତୁଙ୍ଗାନ୍ତର ପାକ୍ଷିକ ଓ ଦିଗଂଶ ଗଣନାର ସୂତ୍ରପାତ କରିଥିଲେ । ସେଥିପାଇଁ ନିଜେ କେତେକ ଯନ୍ତ୍ର ମଧ୍ୟ ନିର୍ମାଣ କରିଥିଲେ । ସେଗୁଡ଼ିକ ମଧ୍ୟରେ ମାନଯନ୍ତ୍ର (ଗୋଳଯନ୍ତ୍ର ରୂପେ ତାଙ୍କ ଦ୍ୱାରା ନାମିତ), ଶଙ୍କୁଯନ୍ତ୍ର (ସୂର୍ଯ୍ୟ ଘଡ଼ି), ଉଲ୍ଲମ୍ବୀ ଚକ୍ର ଓ ଖଗୋଳ ଯନ୍ତ୍ରର ନିର୍ମାଣ ତଥା ତା'ର ଉଦ୍ଭାବନ କରିଥିଲେ । ତାଙ୍କର 'ଭୂ-ସ୍ଥିର' ମତବାଦ ମଧ୍ୟରେ ସେ ସୂର୍ଯ୍ୟର ବ୍ୟାସ, ଦୂରତ୍ୱ ଓ ଛିଦ୍ର ବା ଗର୍ତ୍ତ ଆଦିର ମାପ ଆଲୋଚନା କରି ସ୍ଥିର କରିଥିଲେ ।

ସାମନ୍ତ ଚନ୍ଦ୍ରଶେଖର ବିନା ଦୂରବୀକ୍ଷଣ ଯନ୍ତ୍ର ସାହାଯ୍ୟରେ ମଧ୍ୟ ସଠିକ୍ ଗଣନା କରିପାରୁଥିଲେ । ସେ କେତେ କେତେ ବିନିଦ୍ର ରଜନୀ ଅତିବାହିତ କରି ଆକାଶର ଗ୍ରହ ନକ୍ଷତ୍ରମାନଙ୍କ ଚଳନକୁ ପର୍ଯ୍ୟବେକ୍ଷଣ ଓ ପର୍ଯ୍ୟାଲୋଚନା ପରେ ଯାଇ କେତେକ ସିଦ୍ଧାନ୍ତରେ ଉପନୀତ ହୋଇଥିଲେ । ରାତିରେ ଯେଉଁସବୁ ତଥ୍ୟ ତାଙ୍କ ମନକୁ ସ୍ପର୍ଶ କରୁଥିଲା, ସେଗୁଡ଼ିକ ସେ କାଛରେ ଟିପି ରଖୁଥିଲେ । ସକାଳ ହେଲେ ସେଗୁଡ଼ିକୁ ପୋଥିରେ ଉତାରି ପକାଉଥିଲେ । ସଂସ୍କୃତ ଭାଷାରେ ତାଙ୍କର ଅସାଧାରଣ ପାଣ୍ଡିତ୍ୟ ଯୋଗୁଁ ସେ ଏହି ସିଦ୍ଧାନ୍ତଗୁଡ଼ିକ ସଂସ୍କୃତ ଶ୍ଳୋକ ଆକାରରେ ଦେବନାଗରୀ ଲିପିରେ ସଫଳ ଭାବରେ ପରିପ୍ରକାଶ କରିପାରୁଥିଲେ । ଦୀର୍ଘ ୨୩ ବର୍ଷ କଠିନ ପରିଶ୍ରମ ପରେ ସେ ବହୁ ସିଦ୍ଧାନ୍ତରେ ଉପନୀତ ହୋଇ ରଚନା କଲେ ଏକ ମହାର୍ଘ୍ୟ ଗ୍ରନ୍ଥ 'ସିଦ୍ଧାନ୍ତ ଦର୍ପଣ' । ଏହି ଗ୍ରନ୍ଥ ବିଷୟରେ କବିବର ରାଧାନାଥ ରାୟ ଲେଖିଛନ୍ତି -

'ସିଦ୍ଧାନ୍ତ ଦର୍ପଣ କେବେ ହେବ ନାହିଁ ଲୟ ।
ନର ଦେହେ ଥିବାଯାଏ ଯାବତ ହୃଦୟ ।।'

(ଦରବାର)

ସାମନ୍ତ ଚନ୍ଦ୍ରଶେଖର 'ସିଦ୍ଧାନ୍ତ ଦର୍ପଣ' ଗ୍ରନ୍ଥଟି ଆରମ୍ଭ କଲେ ଖ୍ରୀ:୧୮୬୯ ଅପ୍ରେଲ ୧୨ ତାରିଖଠାରୁ ।[୪] ତାଙ୍କର ନିଜ ସିଦ୍ଧାନ୍ତଗୁଡ଼ିକର ଶ୍ଳୋକସଂଖ୍ୟା ହେଲା ୨୨୮୪ଟି କିନ୍ତୁ ସେ ଅନ୍ୟାନ୍ୟ ପ୍ରାମାଣିକ ଗ୍ରନ୍ଥମାନଙ୍କରୁ ଆଉ ୨୧୬ଟି ଶ୍ଳୋକ ସଂଗ୍ରହ କରି ଏଥିରେ ସଂଯୋଗ କରିଥିଲେ । ଏହିପରି 'ସିଦ୍ଧାନ୍ତ ଦର୍ପଣ'ର ମୋଟ ଶ୍ଳୋକ ସଂଖ୍ୟା ପଚିଶ ଶହରେ ପହଞ୍ଚିଥିଲା ।

ରାମାୟଣ ସାତକାଣ୍ଡରେ ବିଭକ୍ତ ହେଲାପରି ସିଦ୍ଧାନ୍ତ ଦର୍ପଣ ପାଞ୍ଚ ଅଧିକାରରେ ବିଭକ୍ତ ହୋଇଛି । ସେଗୁଡ଼ିକ ହେଲା - ମଧ୍ୟମାଧିକାର, ସ୍ଫୁଟାଧିକାର, ତ୍ରିପ୍ରଶ୍ନାଧିକାର, ଗୋଳାଧିକାର ଓ କଳାଧିକାର । ଏହି ଅଧିକାରଗୁଡ଼ିକ ପୁଣି ପ୍ରକାଶରେ ବିଭକ୍ତ ହୋଇଛି । ମଧ୍ୟମାଧିକାର ଚାରୋଟି ପ୍ରକାଶ, ସ୍ଫୁଟାଧିକାର ଦୁଇଟି ପ୍ରକାଶ, ତ୍ରି-ପ୍ରଶ୍ନାଧିକାର ନଅଟି ପ୍ରକାଶ, ଗୋଳାଧିକାର ଛଅଟି ପ୍ରକାଶ ଓ କଳାଧିକାର ତିନୋଟି ପ୍ରକାଶ - ଏହିପରି ମୋଟ ୨୪ଟି ପ୍ରକାଶରେ ବିଭକ୍ତ ହୋଇଛି ।[୫] ଏହି ଚବିଶଟି ପ୍ରକାଶର ବିଷୟବସ୍ତୁ ଯଥାକ୍ରମେ - କାଳ ବର୍ଣ୍ଣନ, ଭଗଣାଦି ଗ୍ରହାନୟନ, ନାନାବିଧ ସଂସ୍କାର, ଗ୍ରହସ୍ଫୁଟୀକରଣ, ସୂକ୍ଷ୍ମ ପଞ୍ଜିକା କ୍ରାନ୍ତି, ଶଙ୍କୁଛାୟା, ଚନ୍ଦ୍ର ଓ ସୂର୍ଯ୍ୟ ଗ୍ରହଣ, ପରିଲେଖ, ଗ୍ରହଯୁତି, ଭବଗ୍ରହ ଯୋଗ, ଗ୍ରହୋର୍ଦ୍ଧୋଦୟାସ୍ତ ବର୍ଣ୍ଣନ, ଚନ୍ଦ୍ରଶୃଙ୍ଗୋନ୍ନତି, ମହାପାତ, ପ୍ରଶ୍ନ, ଭୂଗୋଳ, ବିବରଣ,

ଭୂଗୋଳସ୍ଥିତି, ଭୂଗୋଳ ଖଗୋଳ ବର୍ଣ୍ଣନ ଗୋଳାଦି ଯନ୍ତ୍ର, ବାସନା ଶେଷ ରହସ୍ୟ, ବସ୍ଵରାଦି, ପୁରୁଷୋତ୍ତମ ସ୍ତୁତି ଆଦି ବର୍ଣ୍ଣିତ ହୋଇଛି । ଗ୍ରହସ୍ଫୁଟ, ଗ୍ରହଣ ସଂସ୍କାର ଓ ଅୟନାଂଶ ସଂସ୍କାର ହିଁ ସିଦ୍ଧାନ୍ତ ଦର୍ପଣରେ ଉଲ୍ଲେଖ ଯୋଗ୍ୟ ବୈଶିଷ୍ଟ୍ୟ । ସାମନ୍ତ ଚନ୍ଦ୍ରଶେଖର ଏହି ଗ୍ରନ୍ଥଟିର ଲେଖା ମୁକୁନ୍ଦ ଦେବଙ୍କ ୧୪ ଅଙ୍କ (୧୮୧୪ ଶକାବ୍ଦ) ବା ୧୮୯୨ ମସିହା ମାର୍ଗଶିର ମାସ କୃଷ୍ଣପକ୍ଷ ନବମୀ ତିଥି ଶନିବାର ଦିନ ଶେଷ କରିଥିଲେ ।

ସାମନ୍ତ ଚନ୍ଦ୍ରଶେଖରଙ୍କ ବ୍ୟକ୍ତିଗତ ଜୀବନ ଦୁଃଖମୟ ଥିଲା । ସେ ମହାକାଶ ଗବେଷଣାରେ ଅଧିକାଂଶ ସମୟ ବିତାଉ ଥିବାରୁ ତାଙ୍କ ନିଜ ପରିବାରର ଭରଣପୋଷଣ କଷ୍ଟକର ହୋଇପଡ଼ିଥିଲା । ତାଙ୍କର ୫ଟି ପୁତ୍ର ଓ ୬ଟି କନ୍ୟାଙ୍କ ଅନ୍ନ ସଂସ୍ଥାନ ତାଙ୍କୁ ବ୍ୟଥିତ କରୁଥିଲା । ଆର୍ଥିକ ଅନଟନ ଓ ସଂସାର ଜଞ୍ଜାଳରେ ଜର୍ଜରିତ ହୋଇ ମଧ ତାଙ୍କର ଜ୍ୟୋତିଷ ଶାସ୍ତ୍ର ପ୍ରତି ଗଭୀର ଶ୍ରଦ୍ଧା ଥିଲା । ସେ ଯେପରି ସରଳ ପରିଶ୍ରମୀ ସଂଯମୀ ସେହିପରି ସ୍ପଷ୍ଟବାଦୀ ଓ ବିନୟୀ ଥିଲେ । ଖ୍ରୀ:୧୮୯୩ରେ ବ୍ରିଟିଶ ସରକାର ତାଙ୍କୁ ମହାମହୋପାଧ୍ୟାୟ ଉପାଧିରେ ଭୂଷିତ କରିଥିଲେ । ଏହି ଉପାଧି ପାଇଲା ପରେ ସେ ମହାମହୋପାଧ୍ୟାୟ ଶ୍ରୀ ଚନ୍ଦ୍ରଶେଖର ସିଂହ ହରିଚନ୍ଦନ ମହାପାତ୍ର ସାମନ୍ତ ଭାବରେ ପରିଚିତ ହେଲେ । ସେ 'ପଠାଣୀ ସାମନ୍ତ' ରୂପେ ଜନମାନସରେ ପରିଚିତ । ନିର୍ଭୁଲ ଗଣନା ଯୋଗୁଁ ତାଙ୍କ ପଞ୍ଜିକା ଶ୍ରୀମନ୍ଦିର ପଣ୍ଡିତ ସଭା ଦ୍ୱାରା ସ୍ୱୀକୃତି ଲାଭ କରିଥିଲା ।

ଖ୍ରୀ:୧୮୯୯ ମସିହାରେ କଲିକତାର ଇଣ୍ଡିଆନ ଡେରାକିଟର ପୁସ୍ତକାଳୟ ଦ୍ୱାରା ଗିରୀଶ ବିଦ୍ୟାରତ୍ନ ମୁଦ୍ରାଳୟରେ ସିଦ୍ଧାନ୍ତ ଦର୍ପଣ ପୁସ୍ତକଟି ମୁଦ୍ରଣ ହୋଇ ପ୍ରକାଶ କରାଯାଇଥିଲା । ପୁସ୍ତକଟିର ମୁଖବନ୍ଧ ଲେଖିଥିଲେ କଟକ ରେଭେନ୍‌ସା କଲେଜର ତତ୍କାଳୀନ ପଦାର୍ଥ ବିଜ୍ଞାନ ଅଧ୍ୟାପକ ଯୋଗେଶ ଚନ୍ଦ୍ର ରାୟ । ସେଥିରେ ସେ ୫୮ ପୃଷ୍ଠା ବ୍ୟାପୀ ଏକ ଦୀର୍ଘ ଆଲୋଚନା ସଂଯୋଗ କରି ପଠାଣି ସାମନ୍ତଙ୍କର ଜ୍ଞାନ ଗାରିମାର ଉଚ୍ଛ୍ୱସିତ ପ୍ରଶଂସା କରିଅଛନ୍ତି । ଏ କ୍ଷେତ୍ରରେ ମଧ କବିବର ରାଧାନାଥ ରାୟ ସାମନ୍ତଙ୍କ ପ୍ରତିଭାକୁ ଲୋକଲୋଚନକୁ ଆଣିବାରେ ସାହାଯ୍ୟ କରିଥିଲେ । ଏହାର ପ୍ରକାଶ ପାଇଁ କେବଳ ମୟୂରଭଞ୍ଜ ମହାରାଜା ରାମଚନ୍ଦ୍ର ଦେବ ଓ ଆଠମଲ୍ଲିକର ରାଜାସାହେବଙ୍କଠାରୁ ଆର୍ଥିକ ସାହାଯ୍ୟ ମିଳିଥିଲା ।[୬] ଯୋଗେଶ ଚନ୍ଦ୍ର ତାଙ୍କ ମୁଖବନ୍ଧରେ ଲେଖିଥିଲେ, 'ଆଶା କରୁଛି ଏହି ଦୁର୍ବଳ ବୃଦ୍ଧ ଗ୍ରହନକ୍ଷତ୍ର ପର୍ଯ୍ୟବେକ୍ଷକଙ୍କ ସୁଦିନ ଉଦୟ ହେବ ।' ସାମନ୍ତ ଚନ୍ଦ୍ରଶେଖର ମଧ ତାଙ୍କ ପ୍ରତି ଗଭୀର କୃତଜ୍ଞତା ପ୍ରକାଶ କରିଥିଲେ । ପୁସ୍ତକଟି ପ୍ରଖ୍ୟାତ ପ୍ରାଚ୍ୟ ବିଶେଷଜ୍ଞ ଅଧ୍ୟାପକ ମ୍ୟାକ୍ସ ମୁଲାରଙ୍କ ଦ୍ୱାରା ଉଚ୍ଚ ପ୍ରଶଂସିତ ହୋଇଥିଲା । ଇଂଲଣ୍ଡରୁ ପ୍ରକାଶିତ ପ୍ରସିଦ୍ଧ ବିଜ୍ଞାନପତ୍ର ନଲେଜର ୧୮୯୯ ମସିହା ଓ 'ନେଚର' ପତ୍ରିକାର ୧୮୯୯ ମସିହା ମାର୍ଚ୍ଚ ସଂଖ୍ୟାରେ ପଠାଣି ସାମନ୍ତଙ୍କ ଗବେଷଣା ଲବ୍‌ଧ ଜ୍ଞାନର ଭୂୟସୀ ପ୍ରଶଂସା କରାଯାଇଥିଲା ।

ସାମନ୍ତ ଚନ୍ଦ୍ରଶେଖର ତାଙ୍କର ମୃତ୍ୟୁ ଦିବସ କୋଷ୍ଠୀ ଜାତକ ଗଣନା ଦ୍ୱାରା ଅବହିତ ଥିଲେ । ସେ ନିଜର ମୃତ୍ୟୁର ସମୟ ସଠିକ୍ ରୂପେ ଜାଣି ପାରିଥିଲେ । ଶ୍ରୀ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ପ୍ରତି ତାଙ୍କର ଅଶେଷ ଶ୍ରଦ୍ଧା ଓ ଭକ୍ତି ଥିବାରୁ ମୃତ୍ୟୁର ବହୁପୂର୍ବରୁ ସେ ଶ୍ରୀକ୍ଷେତ୍ରରେ ଅବସ୍ଥାନ କରୁଥିଲେ । ତାଙ୍କ ଗଭୀର ଶ୍ରଦ୍ଧାର ପରିପ୍ରକାଶ ଘଟିଥିଲା । 'ସିଦ୍ଧାନ୍ତ ଦର୍ପଣ'ର ପ୍ରଥମ ଛାନ୍ଦରେ ଗ୍ରନ୍ଥର ପ୍ରଥମ ଅଧ୍ୟାୟଟି ଶ୍ରୀ ଶ୍ରୀଜଗନ୍ନାଥଙ୍କ ସ୍ତୁତି ବନ୍ଦନାରେ ପୂର୍ଣ୍ଣ । ସାମନ୍ତ ଚନ୍ଦ୍ରଶେଖର ପୁରୀ ଗୃହର ପ୍ରାଙ୍ଗଣରେ ତୁଳସୀ ଚଉଁରା ସମ୍ମୁଖରେ ଶୋଇ ରହି ଶ୍ରୀମନ୍ଦିରର ଶୀର୍ଷ ଭାଗରେ ଥିବା ନୀଳଚକ୍ର ପ୍ରତି ଏକ ଲୟରେ ଦୃଷ୍ଟି ନିବଦ୍ଧ କରିଥିଲେ । ୧୯୦୪ ମସିହା ଜୁନ୍ ମାସ ୧୧ ତାରିଖ ଦିନ ତାଙ୍କର ପ୍ରାଣବାୟୁ ଉଡ଼ି ଯାଇଥିଲା । କେବଳ ଓଡ଼ିଶା ନୁହେଁ, ଭାରତର ଆକାଶରୁ ଏକ ଉଜ୍ଜ୍ୱଳ ଦୀପ୍ତିମୟ ଜ୍ୟୋତିଷ୍କ ଉଭାନ୍ ହୋଇଗଲା । ତାଙ୍କୁ ଶ୍ରଦ୍ଧାଞ୍ଜଳି ପ୍ରଦାନ ପୂର୍ବକ ପଲ୍ଲୀକବି ନନ୍ଦକିଶୋର ଗାଇଛନ୍ତି -

'ହେ ଚନ୍ଦ୍ରଶେଖର ନବ ଉତ୍କଳ ମଣ୍ଡନ
ନବଯୁଗ ଜ୍ଞାନବୀର କୁଳ ସୁନନ୍ଦନ
ଶ୍ମଶାନ ତୁଳସୀ ଦେବ ତୁମ୍ଭେ ଏ ଉତ୍କଳେ
ତୁମ୍ଭ ଘେନି ଏ ଉତ୍କଳ ଖ୍ୟାତି ଭୂମଣ୍ଡଳେ ।'

**ଗ୍ରନ୍ଥସୂଚୀ**


୧. ସଭ୍ୟତାର କାହାଣୀ - ସି.ଇ.ଏମ୍. ଜୋଡ଼ - ଅନୁବାଦ: ରମେଶ ଚନ୍ଦ୍ର ଧଳ

୨. ନୟାଗଡ଼ ଇତିହାସ ଓ ସଂସ୍କୃତି - (ପାଣ୍ଡୁଲିପି) ଭାଗୀରଥି ନେପାକ

୩. ଉତ୍କଳରେ ଜ୍ୟୋତିଷୀ (ପ୍ରବନ୍ଧ-ସମାଜ) - ଅଧ୍ୟାପକ ଦେବରାଜ ପାଠୀ

୪. ପ୍ରଖ୍ୟାତ ଜ୍ୟୋତିର୍ବିଦ ପଠାଣୀ ସାମନ୍ତ - (ପ୍ରବନ୍ଧ-ସମାଜ) - ରାମକୃଷ୍ଣ ରଥ

୫. ସିଦ୍ଧାନ୍ତ ଦର୍ପଣ - ଓଡ଼ିଶାର ସାଂସ୍କୃତିକ ଇତିହାସ - ଓଡ଼ିଶା କଲଚରାଲ ଫୋରମ, ଭୁବନେଶ୍ୱର

୬. ସିଦ୍ଧାନ୍ତ ଦର୍ପଣ - ସମାଜ, ୪ ନଭେମ୍ବର ୨୦୦୫



ଏନ୍-୧/୮୨
ଆଇ.ଆର୍.ସି. ଭିଲେଜ୍, ଭୁବନେଶ୍ୱର-୧୫


- - -

# ଚିରସ୍ମରଣୀୟ ବୈଦ୍ୟରତ୍ନ ମାଗୁଣି ବ୍ରହ୍ମା

ଡାକ୍ତର ଦୀନବନ୍ଧୁ ମହାରଣା

ଓଡ଼ିଶାର ଆୟୁର୍ବେଦ ଇତିହାସ ଜଗତରେ ୧୮୫୭ ମସିହା ଏକ ସ୍ମରଣୀୟ ବର୍ଷ ରୂପରେ ବିବେଚିତ ହୋଇଥାଏ । ସେହିବର୍ଷ ସେପ୍ଟେମ୍ବର ମାସ ୨୦ ତାରିଖରେ ଆୟୁର୍ବେଦ ଭାଗ୍ୟ ଆକାଶରେ ଏକ ଉଜ୍ଜ୍ୱଳ ଜ୍ୟୋତିଷ୍କ ତୁଲ୍ୟ ବ୍ୟକ୍ତିଙ୍କର ଆବିର୍ଭାବ ହୋଇଥିଲା । ସେ ଥିଲେ ବୈଦ୍ୟରତ୍ନ ମାଗୁଣି ବ୍ରହ୍ମା । ପୁରୀର ରାଜବୈଦ୍ୟ ମୃତ୍ୟୁଞ୍ଜୟ ମିଶ୍ର (ମୋତି ମିଶ୍ର) ବ୍ରହ୍ମାଙ୍କ ଧର୍ମପତ୍ନୀ ଚନ୍ଦ୍ରମଣିଙ୍କ ଗର୍ଭରୁ ଏହି ଦିନ ବୈଦ୍ୟରତ୍ନ ମାଗୁଣି ବ୍ରହ୍ମା ଜନ୍ମ ଗ୍ରହଣ କରିଥିଲେ ।

ମୋତି ମିଶ୍ର ପୁରୀର ଜଣେ ଖ୍ୟାତନାମା କବିରାଜ ଥିଲେ । ସେ ପୁରୀର ଗଜପତି ରାଜା ଏବଂ ସ୍ୱୟଂ ନୀଳାଚଳ ନାଥ ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କର କବିରାଜ ଥିଲେ । କବିରାଜି ଶାସ୍ତ୍ରରେ ତାଙ୍କର ଅସାଧାରଣ ଜ୍ଞାନ ଏବଂ ରୋଗ ଭଲ କରିବାର ଅଦ୍ଭୁତ ଶକ୍ତି ହେତୁ ଗଜପତି ତାଙ୍କୁ ବ୍ରହ୍ମା ଉପାଧିରେ ଭୂଷିତ କରିଥିଲେ । କିନ୍ତୁ ବହୁବର୍ଷ ପର୍ଯ୍ୟନ୍ତ ତାଙ୍କର ସନ୍ତାନ ନହେବାରୁ, ତାହା ଥିଲା ତାଙ୍କର ଏକମାତ୍ର ଦୁଃଖ । ସେଥିପାଇଁ ସେ ବହୁ ଦେବାଦେବୀଙ୍କୁ ଆରାଧନା କରୁଥିଲେ । ଦେବତାଙ୍କୁ ମାଗି ମାଗି ପାଇଥିବାରୁ ପୁତ୍ରର ନାମ ରଖିଲେ ମାଗୁଣି ।

ବାଲ୍ୟ ଜୀବନରେ ସେ ପ୍ରଥମେ ମାଟିବଂଶ ଅବଧାନଙ୍କ ଚାହାଳୀରେ ଶିକ୍ଷା ଆରମ୍ଭ କରିବା ପରେ ଏଲିମେଣ୍ଟାରୀ ସ୍କୁଲରେ ନାମ ଲେଖିଥିଲେ । ଶେଷରେ ପୁରୀ ଗଜପତି ମହାରାଜାଙ୍କ ପ୍ରତିଷ୍ଠିତ ସଂସ୍କୃତ ଚତୁଷ୍ପାଠୀରେ ପଢ଼ିଲେ । ପୁରୀରେ ତତ୍କାଳୀନ ଶଙ୍କରାଚାର୍ଯ୍ୟ ଜଗଦ୍‌ଗୁରୁ ସ୍ୱାମୀ ଦାମୋଦର ତୀର୍ଥ ଏବଂ ଅନ୍ୟାନ୍ୟ ବହୁ ବିଶିଷ୍ଟ, ପଣ୍ଡିତଙ୍କଠାରୁ ବେଦବେଦାନ୍ତ, ଦର୍ଶନ, ନ୍ୟାୟ, ଅଳଙ୍କାର ଓ ବ୍ୟାକରଣ ଶାସ୍ତ୍ରାଦି ଅଧ୍ୟୟନ କରିଥିଲେ । ମୋତି ମିଶ୍ରେ ସ୍ୱପୁତ୍ରକୁ ଆୟୁର୍ବେଦ ପଢ଼ାଇବା ପାଇଁ ଅନୁତ୍ସୁକ ଥିଲେ । କାରଣ ଚିକିତ୍ସା ବିଦ୍ୟା ଅତ୍ୟନ୍ତ କଠିନ ଏବଂ ଅତ୍ୟନ୍ତ ନିଷ୍ଠା ତଥା ଶ୍ରମ ସାପେକ୍ଷ । କିନ୍ତୁ ଯାହାଙ୍କର ଭବିଷ୍ୟତ ଜୀବନ ଆୟୁର୍ବେଦ ଚିକିତ୍ସା ସେବା ନିମିତ୍ତ ସମର୍ପିତ ହେବାର ବିଧି ନିର୍ଦ୍ଦେଶ ଥିଲା, ତାହାକୁ ଅବା ଅଟକାଇ ପାରିବ କିଏ ?

ଏକଦା ଗୋଟିଏ ବିଶିଷ୍ଟ ଘଟଣାରେ ମାଗୁଣି ବ୍ରହ୍ମାଙ୍କ ଜୀବନର ଗତିପଥ ପରିବର୍ତ୍ତିତ ହୋଇଥିଲା । ପୁରୀର ଜଣେ ବିଶିଷ୍ଟ ଧନୀ ବ୍ୟକ୍ତି ତଥା ପୁରୀ ଟ୍ରେଜେରୀ କିରାଣୀ ଗୋପାଳ ଚନ୍ଦ୍ର ଘୋଷଙ୍କର ମୋତି ମିଶ୍ରେ ଗୃହ ଚିକିତ୍ସକ ଥିଲେ । ଘୋଷଙ୍କର ଜନୈକ ଚାକର ଅସୁସ୍ଥ ଥିବାରୁ ଚିକିତ୍ସା ନିମନ୍ତେ ମୋତି ମିଶ୍ରେ ପୁରୀରେ ନଥିବା କାରଣରୁ ଘୋଷବାବୁ ମାଗୁଣିଙ୍କୁ ଚିକିତ୍ସା କାର୍ଯ୍ୟ ପାଇଁ ଡକାଇଲେ । କିନ୍ତୁ ମାଗୁଣି ଏହି କାର୍ଯ୍ୟ ପାଇଁ ନିଜର ଅସାମର୍ଥ୍ୟ ପ୍ରକାଶ କରିବାରୁ ଘୋଷବାବୁ ତାଙ୍କୁ ତାଙ୍କର ଶିକ୍ଷାଦୀକ୍ଷା କଥା ପଚାରିଲେ ଏବଂ କବିରାଜୀ କରିବା ପାଇଁ ପ୍ରସ୍ତାବ ଦେଲେ । ଏହି ଘଟଣା ମାଗୁଣିଙ୍କ ଅନ୍ତରକୁ ସ୍ପର୍ଶ କଲା ଏବଂ ସେ ଆୟୁର୍ବେଦ ପଢ଼ିବା ପାଇଁ ଦୃଢ଼ ପ୍ରତିଜ୍ଞ ହେଲେ । ସଂସ୍କୃତ ଶାସ୍ତ୍ରରେ ତାଙ୍କର ଅଗାଧ ଜ୍ଞାନ ସେଥିରେ ବିଶେଷ ସହାୟକ ହେଲା । ଅଧ୍ୟୟନ ସହିତ ପିତାଙ୍କଠାରୁ ପ୍ରତ୍ୟକ୍ଷ ଜ୍ଞାନ ଓ ଅଭିଜ୍ଞତା ଲାଭ କରି ଅଳ୍ପଦିନ ମଧ୍ୟରେ ସେ ଜଣେ ଖ୍ୟାତନାମା କବିରାଜ ହେଲେ । ବ୍ରହ୍ମାଙ୍କର ଜ୍ଞାନ, ଚିକିତ୍ସା ଓ ମହାନୁଭବତା ଧୀରେ ଧୀରେ ସର୍ବତ୍ର ପ୍ରଚାରିତ ହେବାକୁ ଲାଗିଲା । ତାଙ୍କୁ ଉତ୍କଳର ରାଜନ୍ୟବର୍ଗଙ୍କ ଚିକିତ୍ସା ନିମନ୍ତେ ସବାରି ପଠାଇ ଯେଉଁପରି ଡାକରା ଆସୁଥିଲା, ନିରୀହ ଜନତାର ସେବା ନିମନ୍ତେ ସେହିପରି କାତର ପ୍ରାର୍ଥନା ମଧ୍ୟ ଆସୁଥିଲା । ଯେଉଁ ରୋଗୀମାନଙ୍କୁ ବଡ଼ ବଡ଼ ଡାକ୍ତର ଓ କବିରାଜମାନେ ଭଲ କରିପାରୁନଥିଲେ ବ୍ରହ୍ମା ତାଙ୍କୁ ଭଲ କରି ଦେଉଥିଲେ । ରୋଗୀକୁ ସେ ଭଲ ଭାବରେ ପରୀକ୍ଷା ନକରି ଔଷଧ ଦେଉନଥିଲେ । ରୋଗାକ୍ରାନ୍ତ ଶରୀରସ୍ୟ ସ୍ଥାନନଷ୍ଟେପରୀକ୍ଷୟେତ୍, ନାଇ, ମୂତ୍ରଂ, ମଳଂ, ଜିହ୍ୱାଂ, ଶବ୍ଦଂ, ସ୍ପର୍ଶଂ ଦୃଷାକୃତିମ୍ । ରୋଗୀର ନାଡ଼ୀ, ମୂତ୍ର, ମଳ, ଜିଭ, କଥା କହିବା, ସ୍ପର୍ଶ କରିବା ଶକ୍ତି, ଆଖି ଆକୃତି, ପ୍ରକୃତି ଓ ବଳାବଳ ଆଦିକୁ ଭଲ ଭାବରେ ପରୀକ୍ଷା କରି ଔଷଧର ବ୍ୟବସ୍ଥା କରୁଥିଲେ । ଅର୍ଥ ଲାଭ ଆଶାରେ ଯତ୍‌ପରୋନାସ୍ତି ଔଷଧ ଦେଇ ରୋଗୀକୁ ବିଦାୟ କରୁନଥିଲେ । ତାଙ୍କର ଚିକିତ୍ସକ ଜୀବନର ଅନେକ ଅଦ୍ଭୁତପୂର୍ଣ୍ଣ ଘଟଣାବଳୀ ବିଷୟରେ ଜାଣିବାକୁ ମିଳିଥାଏ ।

୧୯୨୯ ମସିହାର ଘଟଣା । ଜୟକୃଷ୍ଣ ମହାପାତ୍ର ନାମକ ସୁଆର ସାହିର ଜଣେ ବ୍ୟକ୍ତି ଜଗନ୍ନାଥ ଦର୍ଶନ ଓ ମନ୍ଦିର ଭିତରେ ଥିବା ତାଙ୍କ ସରଘର ହିସାବ ବୁଝିବାକୁ ଯାଉଥିବା ସମୟରେ ହଠାତ୍ ମନ୍ଦିର ଭିତରେ ସେ ଅବଶ ହୋଇପଡ଼ିଲେ । ପୂର୍ବରୁ ତାଙ୍କୁ ସାମାନ୍ୟ

ଜ୍ୱର ହୋଇଥିଲା । ପ୍ରାଣବାୟୁ ଉଡ଼ିଯିବା ଭଳି ସନ୍ଦେହ ହେବାରୁ ତାଙ୍କର ପୁତ୍ର ନଟବର ପିତା ଜୟକୃଷ୍ଣ ମହାପାତ୍ରଙ୍କ ଶବକୁ ଘରକୁ ନେଇ ଆସି କବିରାଜଙ୍କୁ ଦେଖାଇବାରୁ ସେ ମୃତ ବୋଲି କବିରାଜ ଘୋଷଣା କରିଥିଲେ । ମାଗୁଣି ବ୍ରହ୍ମାଙ୍କୁ ଶବ ପରୀକ୍ଷା ପାଇଁ ଡକା ହେବାରୁ ସେ ମଧ୍ୟ ପ୍ରାଣ ନାହିଁ ବୋଲି କହିଲେ । ତାଙ୍କୁ ଅଧଘଣ୍ଟାକ ପାଇଁ ବଞ୍ଚାଇଦେବା କଥା କହିଲେ । ଏହି ସମୟରେ ବ୍ରହ୍ମା ସଙ୍ଗେ ସଙ୍ଗେ ନିକଟସ୍ଥ ଜଙ୍ଗଲିଆ ସ୍ଥାନରୁ କେତେକ ପତ୍ର ସଂଗ୍ରହ କରି ତା' ରସ ମୃତବତ୍ ବ୍ୟକ୍ତିର ଦୁଇ ନାକପୁଡ଼ାରେ ପକାଇ ଆଉ କେତେ ରସ ପାଟି ଭିତରେ ବୁଲାଇ ଦେଲେ । ସେହି ବ୍ୟକ୍ତି ଜଣକ କେବଳ କୋଡ଼ିଏ-ପଚିଶ ମିନିଟ୍ ପାଇଁ ସଚଳ ହେଲା । ଏହି ସଚଳ ଅବସ୍ଥା ଅଧିକ କାଳ ପାଇଁ ରହୁ ବୋଲି ଅନ୍ୟମାନେ ଯେତେ ଅନୁରୋଧ କରିଥିଲେ ସୁଦ୍ଧା ତାହା ସମ୍ଭବ ନୁହେଁ ବୋଲି ବ୍ରହ୍ମା ସ୍ପଷ୍ଟ କହିଦେଲେ । ତାହା ମଧ୍ୟ ଅକ୍ଷରେ ଅକ୍ଷରେ ସତ୍ୟ ହୋଇଥିଲା ।

ଏହିପରି ଭାବରେ ବ୍ରହ୍ମାଙ୍କ ଚିକିତ୍ସକ ଜୀବନର ଅନେକ ଆଶ୍ଚର୍ଯ୍ୟଜନକ ଅନୁଭୂତିପୂର୍ଣ୍ଣ ଘଟଣା ରହିଛି । ଅନ୍ୟ ଏକ ଘଟଣାରୁ ବ୍ରହ୍ମାଙ୍କର ମହାନୁଭବତା ଓ ଅସୀମ ଉଦାରତାର ପ୍ରମାଣ ମିଳେ । ଏକଦା ସୋନପୁର ମହାରାଜାଙ୍କର ବରାଦ ମୁତାବକ ଗୋଟିଏ ଔଷଧ ବ୍ରହ୍ମା ପ୍ରସ୍ତୁତ କରି ରଖିଥାନ୍ତି । ଔଷଧ ପ୍ରସ୍ତୁତ କରିବା ଚିକିତ୍ସକ ଚାରିଭାଗରୁ ଭାଗେ ଔଷଧ ରଖିବା ବିଧି ଅଟେ । ବ୍ରହ୍ମା ଔଷଧକୁ ଚାରିଭାଗ କରି ନିଜେ ଏକଭାଗ ରଖିଲେ । ଏହା ଦେଖି ମହାରାଜା ଏହି ଏକ ଭାଗ ଔଷଧକୁ ମଧ୍ୟ ଅର୍ଥ ବଦଳରେ ନେବା ପାଇଁ ଚାହିଁଲେ । କିନ୍ତୁ ବ୍ରହ୍ମା ଏପରି କାର୍ଯ୍ୟ ପାଇଁ ସମ୍ମତି ଦେଲେ ନାହିଁ । ଗରିବ ଲୋକମାନେ ଏତେ ପଇସା ଖର୍ଚ୍ଚ କରି ଔଷଧ କରି ପାରିବେ ନାହିଁ । ଏହି ଏକ ଭାଗ ଔଷଧ ଗରିବ ଲୋକମାନଙ୍କ ଚିକିତ୍ସାରେ ଆବଶ୍ୟକ ହେବ ବୋଲି ବ୍ରହ୍ମା ଜଣାଇ ଏହାକୁ ଦେବା ପାଇଁ ମନା କଲେ । ଏଥିରୁ ତାଙ୍କର ରୋଗୀ ସେବା ପ୍ରତି ଅତ୍ୟନ୍ତ ନିଷ୍ଠା ଓ ଉଦାରତାର ପ୍ରମାଣ ମିଳେ ।

ଚିକିତ୍ସା ସେବା ଯୋଗାଇ ଦେବା କ୍ଷେତ୍ରରେ ସେ ଧନୀ, ଗରିବ, ଉଚ୍ଚ-ନୀଚ ମଧ୍ୟରେ କୌଣସି ପ୍ରଭେଦ ଦେଖୁନଥିଲେ କିମ୍ବା କୌଣସି ପ୍ରକାର ଅର୍ଥ ଲାଳସାର ବଶବର୍ତ୍ତୀ ହୋଇ ଚିକିତ୍ସକର ପ୍ରକୃତ ଧର୍ମ ତ୍ୟାଗ କରୁନଥିଲେ । ପ୍ରତିଦିନ ବହୁ ସଂଖ୍ୟାରେ ରୋଗୀ ବିନା ପଇସାରେ ତାଙ୍କ ଦ୍ୱାରରୁ ଔଷଧ ଓ ପରାମର୍ଶ ନେଇ ଫେରିଯାଉଥିଲେ ।

ଏକଦା ରାୟବାହାଦୂର ଭାସ୍କର ମହାପାତ୍ର ନାମକ ସ୍ଥାନୀୟ ଧନୀ ବ୍ୟକ୍ତି ତାଙ୍କ ସ୍ତ୍ରୀଙ୍କ ଚିକିତ୍ସା ପାଇଁ ସକାଳ ସମୟରେ ବ୍ରହ୍ମାଙ୍କୁ ନେବା ପାଇଁ ନିଜ କାର ପଠାଇଲେ । ସେତେବେଳକୁ ବ୍ରହ୍ମାଙ୍କ ଘରେ ଅନେକ ରୋଗୀ ଜମା ହୋଇଥାନ୍ତି । ଦୀର୍ଘ ଦୁଇ ଘଣ୍ଟା ଅତିବାହିତ ହେବାରୁ ବିଳମ୍ବର କାରଣ ପରିଲକ୍ଷେ ରାୟବାହାଦୂର ନିଜେ ସେଠାରେ ପହଁଚି ଯିବା ପାଇଁ ଅନୁରୋଧ କଲେ । ବ୍ରହ୍ମା ତାଙ୍କୁ କହିଲେ, ଆପଣ ଧନୀ ଲୋକ, ଆପଣ ପୁରୀର ଯେକୌଣସି ଡାକ୍ତର କବିରାଜଙ୍କୁ ସାଙ୍ଗରେ ନେଇ ଚିକିତ୍ସା କରାଇପାରନ୍ତି, କିନ୍ତୁ ଏହି ଗରିବ ଅସହାୟ ରୋଗୀମାନେ ତାହା କରିବାକୁ ଅକ୍ଷମ । ଏମାନଙ୍କ କାମସାରିବା ପରେ ମୁଁ ନିଶ୍ଚୟ ଯାଇଥାନ୍ତି । ଏଥିରୁ ବ୍ରହ୍ମାଙ୍କର ଚିକିତ୍ସା କ୍ଷେତ୍ରରେ ସମଦର୍ଶିତା ଗୁଣର ପରିଚୟ ମିଳେ ।

ଆମେରିକାର ଜଣେ ସାହେବ ଡକ୍ଟର ଓ୍ୱାଇ ଇଭାନ୍ସ ଓୟେଣ୍ଟଜ୍ ଏମ୍.ଏ., ଡି.ଲିଟ୍. ଡି. ଏସ୍‌ସି. ବହୁ ସମୟରେ ବ୍ରହ୍ମାଙ୍କ ନିକଟକୁ ଆସୁଥିଲେ ଏବଂ ତାଙ୍କ ସଂସ୍ପର୍ଶରେ ଆସି ତାଙ୍କର ମହନୀୟ ଗୁଣ ଦ୍ୱାରା ଅତିମାତ୍ରାରେ ପ୍ରଭାବିତ ହୋଇଥିଲେ । ଡକ୍ଟର ଇଭାନ୍ସ ତାଙ୍କର ପ୍ରସିଦ୍ଧ ପୁସ୍ତକ 'ଟିବଟାନ ଯୋଗ ଆଣ୍ଡ ସିକ୍ରେଟ ଡକଟ୍ରିଜ'ରେ ଭାରତର ଯେଉଁ ଛଅଜଣ ବିଶିଷ୍ଟ ବ୍ୟକ୍ତିଙ୍କର ଫଟୋ ସହ ସେମାନଙ୍କ ବିଷୟ ସୂଚନା ଦେଇଛନ୍ତି, ସେମାନଙ୍କ ମଧ୍ୟରୁ ଚତୁର୍ଥ ସ୍ଥାନରେ ସେ ବ୍ରହ୍ମାଙ୍କ ବିଷୟରେ ଲେଖିଛନ୍ତି । ଏଥିରେ ସେ ବ୍ରହ୍ମାଙ୍କୁ ଜଣେ ଗୁରୁ ଓ କର୍ମଯୋଗୀ ବୋଲି ଉଲ୍ଲେଖ କରିଛନ୍ତି ।

ଆୟୁର୍ବେଦ କ୍ଷେତ୍ରରେ ବିଶେଷ କୃତିତ୍ୱ ନିମିତ୍ତ ୧୯୨୧ ମସିହାରେ ରାଞ୍ଚିର ଏକ ଦରବାର ସଭାରେ ବିହାର ଓ ଓଡ଼ିଶାର ତତ୍କାଳୀନ ଗଭର୍ଣ୍ଣର ଓ ଭାଇସରାୟ ଲର୍ଡ଼ ଚେମ୍‌ସଫୋର୍ଡ଼ ତାଙ୍କୁ ସନନ୍ଦ ପ୍ରଦାନ କରି 'ବୈଦ୍ୟରତ୍ନ' ଉପାଧିରେ ଭୂଷିତ କରିଥିଲେ । ସେ ତାଙ୍କର ଜୀବନର ପରିଣତ ବୟସରେ ପୁରୀ ସଂସ୍କୃତ କଲେଜରେ କିଛି ବର୍ଷ ଅଧ୍ୟାପନା କାର୍ଯ୍ୟ କରିଥିଲେ । କାଶୀ ହିନ୍ଦୁ ବିଶ୍ୱ ବିଦ୍ୟାଳୟର ପ୍ରତିଷ୍ଠାତା ପଣ୍ଡିତ ମଦନମୋହନ ମାଳବ୍ୟ ଏବଂ ଉତ୍କଳଗୌରବ କୁଳବୃଦ୍ଧ ମଧୁସୂଦନ ଦାସ ତାଙ୍କୁ କାଶୀ ହିନ୍ଦୁ ବିଶ୍ୱବିଦ୍ୟାଳୟରେ ଶିକ୍ଷାଦାନ କରିବା ପାଇଁ ପ୍ରସ୍ତାବ ଦେଇଥିଲେ ମଧ୍ୟ ବୟସାଧିକ୍ୟ କାରଣରୁ ସେ ଏହି ପ୍ରସ୍ତାବରେ ରାଜି ହୋଇନଥିଲେ । ସେ ନିଖିଳ ଉତ୍କଳ ବୈଦ୍ୟ ସମ୍ମିଳନୀର ପ୍ରତିଷ୍ଠାତା କହିଲେ ଅତ୍ୟୁକ୍ତି ହେବ ନାହିଁ । ୧୯୨୯ ମସିହାରେ ଆୟୋଜିତ ଏହି ସମ୍ମିଳନୀର ପ୍ରଥମ ଅଧିବେଶନ ତାଙ୍କରି ସଭାପତିତ୍ୱରେ ଅନୁଷ୍ଠିତ ହୋଇଥିଲା । ସେ ମଧ୍ୟ ବିହାର-ଓଡ଼ିଶା ସଂସ୍କୃତ ପରିଷଦ, ନିଖିଳ ଭାରତ ଆୟୁର୍ବେଦ ମହାମଣ୍ଡଳ ଓ ଆଲିଗଡ଼ ବିଦ୍ୱତ୍ ସମ୍ମିଳନୀର ସଭ୍ୟ ଥିଲେ ।

ରୋଗକ୍ଲିଷ୍ଟ, ପୀଡ଼ିତ ମନୁଷ୍ୟର ସେବା କ୍ଷେତ୍ରରେ ନିଜର ସମଗ୍ର ଜୀବନକୁ ଉତ୍ସର୍ଗ କରିଥିବା ଏହି ମହାନ୍ ଆତ୍ମା ନିଜର ଜନ୍ମପୀଠ ପୁରୀଠାରେ ୧୯୩୩ ମସିହା ଡିସେମ୍ବର ୮ ତାରିଖ ଦିନ ଚିରଦିନ ପାଇଁ ନିଦ୍ରିତ ହୋଇଯାଇଥିଲେ ।

ଓଡ଼ିଶା ଆୟୁର୍ବେଦ ସେବା ସଦନ
ରୁମ୍ ନଂ-୧୧୧, ମ୍ୟୁନିସିପାଲିଟି ମାର୍କେଟ
ଓ.ଏମ୍.ପି. ଛକ, କଟକ-୩

# ପୂର୍ବ ଉପାନ୍ତ ଓଡ଼ିଶାର କଥିତ ଭାଷା ଶୈଳୀ : ଏକ ଅନୁଧ୍ୟାନ

ଗୌରହରି ରାଉତ

**ବି**ଭିନ୍ନ ପରିବେଶ, ପରିସ୍ଥିତି ଏବଂ ପ୍ରଭାବ ଫଳରେ ଭାଷା ଯେ ତା'ର ରୂପ ପରିବର୍ତ୍ତନ କରିଥାଏ - ଏହା ଭାଷା ବିଜ୍ଞାନୀ ବିଚାରସିଦ୍ଧ । ସେଥିପାଇଁ 'ଦେଶକେ ଫାଙ୍କ୍, ନଈ କେ ବାଙ୍କ୍' ଭଳି ବିଭିନ୍ନ ସ୍ଥାନର ଭାଷା ମଧ୍ୟ ଅଲଗା ଅଲଗା ହୋଇଥାଏ । ଓଡ଼ିଶାର ବିଭିନ୍ନ ଅଞ୍ଚଳର କଥିତ ଭାଷାଶୈଳୀ ସେହି ଦୃଷ୍ଟିକୋଣରୁ ପୃଥକ୍ । ଦକ୍ଷିଣ ଭାରତୀୟ ଭାଷାର ପ୍ରଭାବ ଯୋଗୁଁ ଦକ୍ଷିଣ ଓଡ଼ିଶା ଯଥା- ବ୍ରହ୍ମପୁର, ଗଞ୍ଜାମ, ରାୟଗଡ଼ା, କୋରାପୁଟ ଆଦି ସ୍ଥାନର ଭାଷାରେ ତେଲୁଗୁର ପ୍ରଭାବ ସ୍ୱତଃ ପରିଲକ୍ଷିତ ହେଲାବେଳେ ମଧ୍ୟପ୍ରଦେଶ, ଛତିଶଗଡ଼ ଆଦିର ପ୍ରଭାବ ପଶ୍ଚିମ ଓଡ଼ିଶା ଯଥା- ସମ୍ବଲପୁର, ବଲାଙ୍ଗୀର ଉପରେ ପଡୁଥିବାରୁ ତାହା ହିନ୍ଦୀ ଏବଂ ଛତିଶଗଡ଼ି ଭାଷା ପ୍ରଭାବିତ ହେବା ସ୍ୱାଭାବିକ । ସେହିପରି ପଶ୍ଚିମବଙ୍ଗର ପ୍ରଭାବ ଉତ୍ତର ଓଡ଼ିଶା ଯଥା- ବାଲେଶ୍ୱର, ବାରିପଦା ଆଦି ଅଞ୍ଚଳରେ ପଡୁଥିବାରୁ ଏଠାକାର କଥିତ ଭାଷାରେ ବଙ୍ଗଭାଷାର ପ୍ରାବଲ୍ୟ ରହିଥାଏ । ଅବଶ୍ୟ ବାରିପଦା ଉପରେ ବଙ୍ଗ ଏବଂ ଝାରଖଣ୍ଡ ଭାଷାର ପ୍ରଭାବ ପଡ଼ିଥାଏ । ମାତ୍ର ପୂର୍ବ ଓଡ଼ିଶା ଯଥା- କେନ୍ଦ୍ରାପଡ଼ା, ଜଗତସିଂହପୁର, ପାରାଦ୍ୱୀପ ଆଦି ଅଞ୍ଚଳ କିଛି ମାତ୍ରାରେ କଟକ, ଖୋର୍ଦ୍ଧା ଆଦି ଭାଷା ଦ୍ୱାରା ପ୍ରଭାବିତ ହେଲାବେଳେ ଓଡ଼ିଶାର ପୂର୍ବ ଉପାନ୍ତ ଭାବରେ ପରିଚିତ କିଛି ଅଂଶ ଯଥା- ରାଜନଗର, ରାଜକନିକା, ଗହିରୀମଥା, ଡାଙ୍ଗମାଳ, ଭିତରକନିକା, ସାତଭାୟା ଆଦି ଅଞ୍ଚଳର ଭାଷାରେ ଉତ୍ତର ଓଡ଼ିଶା ଭାଷାର ଆଂଶିକ ପ୍ରଭାବ ପଡ଼ିଥାଏ ଅର୍ଥାତ୍ ବଙ୍ଗଭାଷାର ଆଭାସ ଶୈଳୀ ପଡ଼ିଥିବାର ପରିଲକ୍ଷିତ ହୋଇଥାଏ । ଓଡ଼ିଶାର ପୂର୍ବ ଉପାନ୍ତର ପୂର୍ବରେ ବଙ୍ଗୋପସାଗରର ବଜ୍ର ନିର୍ଘୋଷ ଧ୍ୱନି, ସୁତରାଂ ପୂର୍ବସୀମାରେ ଅନ୍ୟ କୌଣସି ଭାରତୀୟ ଭାଷାର ପ୍ରଭାବ ପଡୁ ନଥିବାରୁ ଏସବୁ ଅଞ୍ଚଳ ପଡ଼ୋଶୀ ଉତ୍ତର ଓଡ଼ିଶା ଯଥା- ଚାନ୍ଦବାଲି, ବାଲେଶ୍ୱର ଦ୍ୱାରା ଆଂଶିକ ଭାବରେ ପ୍ରଭାବିତ ହେବା ସ୍ୱାଭାବିକ । ଆଲୋଚ୍ୟ ପ୍ରବନ୍ଧରେ ଏହି ପୂର୍ବ ଉପାନ୍ତ ଓଡ଼ିଶା (ରାଜନଗର, ରାଜକନିକା, ଗହିରୀମଥା, ଡାଙ୍ଗମାଳ, ତାଳଚୁଆ, ଭିତରକନିକା, ସାତ ଭାୟା ଆଦି ଅଞ୍ଚଳ)ର କଥିତ ଭାଷା ଶୈଳୀ ସଂପର୍କରେ କିଞ୍ଚିତ୍ ଆଲୋକପାତ କରିବା ହିଁ ଏ ଲେଖକର ଆଭିମୁଖ୍ୟ ।

ଭାଷା ଯେଉଁ ଭାବରେ ଯେତେ ମାତ୍ରାରେ ଏବଂ ଯାହାଦ୍ୱାରା ପ୍ରଭାବିତ ହେଉନା କାହିଁକି ସେ କେବେ ତା'ମାନକ ଭାଷା (Standard Language) ଅର୍ଥାତ୍ ଲିଖିତ ସାହିତ୍ୟିକ ଭାଷାର ମାନ ହରାଇ ନଥାଏ ବରଂ ମାନକ ଭାଷାର ଚାରିପାଖେ ପ୍ରଦକ୍ଷିଣ କରି ସ୍ୱଭାବ ସୁଲଭ ସଂସ୍ପର୍ଶ ଯୋଗୁଁ କିଛି ନୂତନତାକୁ ଆହରଣ କରି ମାନକ ଭାଷା ସହିତ ତାକୁ ସମୀକରଣ କରିଥାଏ । ଆହରଣ ଓ ସମୀକରଣ ନଥିଲେ ଭାଷା କେବେ ବି ଗତିମୁଖର ହୋଇପାରିବ ନାହିଁ, ଏହା ଯେକୌଣସି ଭାଷାର ମୌଳିକ ଗୁଣ ।

ପୂର୍ବ ଉପାନ୍ତର କୌଣସି ନିରକ୍ଷର ଗ୍ରାମ୍ୟ ଲୋକଟି ଯଦି ସହରରେ ଆସି ନିଜର କଥିତ ଭାଷାରେ କଥାବାର୍ତ୍ତା କରେ ତେବେ ସେ ନିହାତି 'ମଫ୍ସ', ଗାଉଁଲି ଏବଂ ସର୍ବୋପରି ତଳମାଳ/ତଳଘଟି ଭାବରେ ପରିଚିତ ହେବା ହିଁ ସାର ହୁଏ । କିନ୍ତୁ କହିବା ବାହୁଲ୍ୟ - ତାର ଏଇ କଥିତ ଭାଷା ହିଁ ତା ସ୍ୱାତନ୍ତ୍ର୍ୟ, ତା' ଅନନ୍ୟତାର ପରିଚୟ ଦେଇଥାଏ । ପୂର୍ବ ପ୍ରସଙ୍ଗ ଅନୁସାରେ ଭାଷା ବିଭିନ୍ନ ଭାବରେ ତା' ରୂପଗତ ଗୁଣଗତ ସ୍ୱଭାବ ପରିବର୍ତ୍ତନ କରିଥାଏ । ପୃଥିବୀରେ ଏପରି କୌଣସି ଭାଷା ନାହିଁ ଯାହା ଅନ୍ୟ ଭାଷା ଦ୍ୱାରା ପ୍ରଭାବିତ ହୋଇନାହିଁ କିମ୍ବା ପରିବର୍ତ୍ତିତ ହୋଇନାହିଁ । ସେହି ଦୃଷ୍ଟିରୁ ବିଚାର କଲେ ପୂର୍ବ ଉପାନ୍ତର କଥିତ ଭାଷା ଶୈଳୀ ଅଲଗା ଭାବରେ ବାରି ହୋଇପଡ଼େ । ଉଦାହରଣ ପ୍ରସଙ୍ଗରେ ପ୍ରବନ୍ଧକୁ ଗତିମୁଖର କରାଯାଇପାରେ । ଯଥା-

'ଯିମି' - ଯିବି (ମୁଁ କଟକ ଯିମି)
'ଖାଇମି' - ଖାଇବି (ମୁଁ ଭାତ ଖାଇମି)
'ମେତେ' - ମୋତେ (ମେତେ ଏସବୁ କାମ ଆସେନି)

ଲକ୍ଷ୍ୟ କଲେ ଜଣାଯିବ ଯେ ଏସବୁ କେବେ ନିଜର ମାନକ ଭାଷାକୁ ଅବମାନନା କରିନାହାନ୍ତି । ମାନକ ଭାଷାରେ ଯାହା ଯିବି, ଖାଇବି, ମୋତେ ଭାବରେ ମାନ୍ୟତା ଲାଭ କରିଛି ଏଠାରେ 'ଯିମି', 'ଖାଇମି', 'ମେତେ' ସେଇ ଏକା ଅର୍ଥକୁ ସ୍ୱାଗତ କରି କଥିତ ଭାଷାର ରୂପ ନେଇଛି । ଏ ପ୍ରକାର କଥିତ ଭାଷା ଉତ୍ତର ଓଡ଼ିଶାର କିଛି ଅଞ୍ଚଳରେ ପ୍ରଚଳିତ । ଉପାନ୍ତ ଓଡ଼ିଶାର ସାତଭାୟା ଅଞ୍ଚଳ ଚାନ୍ଦବାଲିକୁ ଲାଗିଥିବାରୁ

ତା’ ଭାଷା ଶୈଳୀର ପ୍ରଭାବ ଏ ଅଞ୍ଚଳରେ ପଡ଼ିଥିବାରୁ ଅନୁମାନ କରାଯାଏ । ସେହିପରି - ପୁଖୁରୀ - ପୋଖରୀ, ଗୁଡ଼ - ଗୋଡ଼, ନୁଟା - ନୋଟା (ଢାଳ), ଦୁକୁରୀ - ଦୋକରୀ (ଗାଁ ଭିତରର ଦୁଇଘର ମଝିରେ ଥିବା ଗଳିବାଟ), ଧୁଇଦେବା - ଧୋଇ ଦେବା, ପୁକଜୁକ - ପୋକଜୋକ, ଦୁକାନ- ଦୋକାନ, ଯୁତା-ଯୋତା ।

ପୂର୍ବ ଉପାନ୍ତ ଭାଷାରେ ବ୍ୟବହୃତ ହେଉଥିବା ଏହିସବୁ କଥିତ ଶବ୍ଦ ମାନକ ଶବ୍ଦର ଅର୍ଥକୁ କେବେ ବିକୃତ କରିନାହିଁ । ମାନକ ଶବ୍ଦର ପ୍ରଥମ ବର୍ଣ୍ଣ ‘ଓ’କାରାନ୍ତ ହେଲାବେଳେ ଆଲୋଚ୍ୟ କଥିତ ଶବ୍ଦର ପ୍ରଥମ ବର୍ଣ୍ଣ ‘ଉ’କାରାନ୍ତ ହୋଇଥାଏ । ଉତ୍ତର ଓଡ଼ିଶାର କଥିତ ଭାଷାରେ ମଧ୍ୟ ଏ ସାଦୃଶ୍ୟ ପରିଲକ୍ଷିତ ହୋଇଥାଏ । ଆହୁରି ମଧ୍ୟ ଲକ୍ଷ୍ୟଣୀୟ ଯେ ପୂର୍ବ ଉପାନ୍ତର କଥିତ ଶବ୍ଦ ‘ଦୁକାନ’ ଓ ‘ଯୁତା’କୁ ଆମେ ହିନ୍ଦୀର ମାନକ ଶବ୍ଦ ଭାବରେ ଦେଖିବାକୁ ପାଉ । ‘ଦୁକାନ’, ‘ଯୁତା’, ‘ପୁଲିସ’ ଇତ୍ୟାଦି ଆମର ଲୋକ କଥିତ ଶବ୍ଦ ହିନ୍ଦୀର ମାନକ ଶବ୍ଦ ଭାବରେ ଏକା ରୂପରେ ବ୍ୟବହୃତ ହୋଇଥାଏ । ଏହି କିଛି ଶବ୍ଦ ବୋଧହୁଏ ହିନ୍ଦୀ ଭାଷାରୁ ଆହୂତ ହୋଇ ପୂର୍ବ ଉପାନ୍ତର କଥିତ ଶବ୍ଦରେ ମିଶି ଯାଇଛି । ଆହୁରି ମଧ୍ୟ ‘ଥିଲା’ ଶବ୍ଦଟି ଏ ଅଞ୍ଚଳରେ ‘ଥଲା’ ଭାବରେ ବ୍ୟବହୃତ ହୋଇଥାଏ । ଅନୁମାନ କରାଯାଏ ଏହି ‘ଥଲା’ ଶବ୍ଦଟି ବଙ୍ଗଳାର ‘ଥାକ୍’ ଶବ୍ଦର ପାଖାପାଖି, ଯାହା ମୂଳ ସଂସ୍କୃତ ‘ସ୍ଥା’ ଧାତୁରୁ ଆସିଅଛି । କଥିତ ଭାଷାକୁ ନେଇ ଏ ଅଞ୍ଚଳରେ ଏକ ସୁନ୍ଦର ଲୋକୋକ୍ତି ଶୁଣିବାକୁ ମିଳେ । ତାହା ହେଲା -

‘ଦୁକୁରୀ ଦୁକୁରୀ ଦଉଡ଼ି ଦଉଡ଼ି ପୁଖୁରୀରୁ ନୁଟାଏ ପାଣି ଆଣି କୁଣିଆଁର ଗୁଡ଼ ଧୁଇ ଦେ’ ।’

ଅତଏବ ଆଲୋଚନାର ସୁବିଧା ଦୃଷ୍ଟିରୁ ପୂର୍ବ ଉପାନ୍ତ ଓଡ଼ିଶାର କଥିତ - ଭାଷାଶୈଳୀକୁ କେତେଗୁଡ଼ିଏ ପର୍ଯ୍ୟାୟରେ ବିଭକ୍ତ କରାଯାଇପାରେ ।

୧. ରୂପାନ୍ତରିତ ଶବ୍ଦ - ଓଡ଼ିଶାର ମାନକ ଶବ୍ଦର ରୂପାନ୍ତରିତ ଶବ୍ଦ ଭାବରେ ଅନେକ ଶବ୍ଦ ଏଠାରେ ବ୍ୟବହୃତ ହୋଇଥାଏ । କିଛି ଶବ୍ଦ ସଂପର୍କରେ ପୂର୍ବରୁ ଆଲୋଚିତ ହୋଇଥିଲେ ମଧ୍ୟ ସବିଶେଷ ଧାରଣା ନିମିତ୍ତ ଏଠାରେ ଆହୁରି କିଛି ଶବ୍ଦର ଉଦାହରଣ ଦେବାକୁ ପ୍ରାସଙ୍ଗିକ ମନେକରୁଛି । ଯଥା- ଗାଇବଲ୍‌ଲ-ଗାଇ ବଳଦ, ଦୁଳି-ଦୋଳି, କୁଳି-କୋଳି, ରୁଗ-ରୋଗ, ଗୁକା-ଗୋଖା, ନାଗିଯିବା-ଲାଗିଯିବା, ସାବିନି-ସାବୁନ୍, ଅମେଇସା-ଅମାବାସ୍ୟା, ପୁଡ଼ିଦେବା-ପୋଡ଼ିଦେବା, ପୁତିଦେବା-ପୋତିଦେବା, ଖୁଲିଦେବା-ଖୋଲିଦେବା, କୁଦାଳ-କୋଦାଳ, ନୁଗା-ଲୁଗା, ଗୁବୁର-ଗୋବର, ବାର-ବାଡ଼, ଚରେଇ-ଚଢ଼େଇ ।

ଅନୁଧ୍ୟାନ କଲେ ଜଣାଯିବ ଯେ ଅଧିକାଂଶ ରୂପାନ୍ତରିତ ଶବ୍ଦର ପ୍ରଥମ ବର୍ଣ୍ଣ ‘ଉ’ କାରାନ୍ତ ହୋଇଥାଏ । ଡ/ଢ ଉଚ୍ଚାରିତ ଆଉ କେତେକ ଧ୍ୱନି ମଧ୍ୟ ପୂର୍ବଉପାନ୍ତର କିଛି ଅଞ୍ଚଳରେ ‘ର’ ଉଚ୍ଚାରିତ ଧ୍ୱନି ଭାବରେ ବ୍ୟବହୃତ ହୋଇଥାଏ । ଯଥା- ‘ଚିଙ୍ଗୁଡ଼ି’କୁ କିଛି ନିରକ୍ଷର ପୁରୁଖା ଲୋକେ ‘ଚୁଙ୍ଗୁରି’ ଭାବରେ ଉଚ୍ଚାରଣ କରିଥାନ୍ତି । ସେହିପରି ‘କଙ୍କଡ଼ା’କୁ ‘କଙ୍କରା’, ‘ବାଡ଼’କୁ ‘ବାର’, ‘ଚଢ଼େଇ’କୁ ‘ଚରେଇ’, ‘ଷଢ଼େଇ’କୁ ‘ସରେଇ, ‘ବାଡ଼ି (ଘରକୁ ଲାଗି- ପନିପରିବା ଫସଲ ଉପଯୋଗୀ ଉଦ୍ୟାନ)କୁ ‘ବାରି’, ‘ମାଙ୍କଡ଼’କୁ ‘ମାଙ୍କର’ ଇତ୍ୟାଦି ଭାବରେ ଉଚ୍ଚାରଣ କରିଥାନ୍ତି । ଅବଶ୍ୟ ଭାଷାର ଆଧୁନିକୀକରଣ ଓ ସହରୀ ସଭ୍ୟତାର ସଂସ୍ପର୍ଶରେ ଏପରି ଉଚ୍ଚାରଣ ଧୀରେ ଧୀରେ ହ୍ରାସ ପାଉଅଛି । ବୋଧହୁଏ ଗଭୀର ବଳାଘାତ ଜନିତ ଉଚ୍ଚାରଣ (ଡ ଏବଂ ଢ)ର ବିଷମ ପରିସ୍ଥିତିରୁ ରକ୍ଷା ପାଇବା ପାଇଁ ଏବଂ ସହଜ ସରଳ ଉଚ୍ଚାରଣ ପାଇଁ ଡ/ଢ ବଦଳରେ ‘ର’ର ଉଚ୍ଚାରଣ ଏକ କାରଣ ହୋଇଥାଇପାରେ ।

୨. ଅପ୍ରଭାବିତ କିଛି ସ୍ୱତଃ ଶବ୍ଦ - ଏଭଳି କିଛି ଶବ୍ଦ ମଧ୍ୟ ଏଠାକାର ଅଞ୍ଚଳରେ ପ୍ରଚଳିତ ହୋଇଥାଏ ଯାହା ଅନ୍ୟଠାରୁ ଆହୂତ, ପ୍ରଭାବିତ କିମ୍ବା ରୂପାନ୍ତରିତ ନୁହେଁ । ଏସବୁ ନିଜସ୍ୱ କଥିତ ଭାଷାର ପ୍ରଚଳିତ ଶବ୍ଦ । ଯେପରି - (କ) ଦଣ୍ଡୁରି - ଖାଳେଇ (ହେନ୍ତାଳ ଜଙ୍ଗଲର ନାଳି ପାଖାପାଖି ଜନ୍ମୁଥିବା ଏକ ଘାସ ଜାତୀୟ ଗୁଳ୍ମ ‘ନାଳିଆ’ରୁ ଏ ଅଞ୍ଚଳର ଗ୍ରାମ୍ୟ ହସ୍ତଶିଳ୍ପୀମାନେ ସୁନ୍ଦର ଗୋଲାକାର ବସ୍ତୁ ପ୍ରସ୍ତୁତ କରିଥାନ୍ତି ଯେଉଁଥିରେ ମାଛ ରଖାଯାଏ) । (ଖ) ହାଣ୍ଡି - ଶ୍ରାଦ୍ଧ (ଶ୍ରାଦ୍ଧର ପ୍ରତିଶବ୍ଦ ଭାବରେ ଏ ଅଞ୍ଚଳର ଲୋକମାନେ ‘ହାଣ୍ଡି’ ଶବ୍ଦର ପ୍ରୟୋଗ କରିଥାନ୍ତି । (ଗ) ତୁଅଣ - ତରକାରୀ (ତରକାରୀର ପ୍ରତିଶବ୍ଦ ଭାବରେ ‘ତୁଅଣ’କୁ ବ୍ୟବହାର କରାଯାଇଥାଏ ।

୩. ସମ୍ବୋଧନାତ୍ମକ ଶବ୍ଦର ବିଶେଷତ୍ୱ - ଏଠାକାର ସମ୍ବୋଧନାତ୍ମକ ଶବ୍ଦରେ ମଧ୍ୟ କିଛି ସ୍ୱାତନ୍ତ୍ର୍ୟ ପରିଲକ୍ଷିତ ହୁଏ । ଯେପରି - (କ) ମାମା - ଆଈ । ବ୍ୟୁତ୍ପତ୍ତିଗତ ଦୃଷ୍ଟିକୋଣରୁ ପର୍ଯ୍ୟାଲୋଚନା କଲେ ଦେଖାଯାଏ ଯେ ଏଠାରେ ବ୍ୟବହୃତ ହେଉଥିବା ‘ଆଈ’ର ପ୍ରତିଶବ୍ଦ ‘ମାମା’ ଅଧିକ ମାତ୍ରାରେ ଅର୍ଥ ସଂଗତ । କିନ୍ତୁ ଏହା ସମ୍ବୋଧନ ଦୃଷ୍ଟିକୋଣରୁ ଶ୍ରୁତିକଟୁ ହୋଇଥାଏ । ମାମାର ଅର୍ଥ ହେଲା - ମା’ର ମା’ । କେହି ଯଦି ନିଜ ମା’ର ମା’କୁ ଏହିପରି ସମ୍ବୋଧନ କରେ ତେବେ ତାହା ଶ୍ରୁତିକଟୁ ନିଶ୍ଚୟ । କିନ୍ତୁ ଏଠାରେ ଏହା ପ୍ରଚଳିତ ସମ୍ବୋଧିତ ଶବ୍ଦ ହୋଇଥିବାରୁ ଶ୍ରୁତିକଟୁ ବୋଲି ମନେ ହୋଇନଥାଏ । ମାତ୍ର ଅନ୍ୟ ପ୍ରାନ୍ତର ଲୋକ ପାଇଁ ଶ୍ରୁତିକଟୁ ହୋଇପାରେ । କହିବା ବାହୁଲ୍ୟ ଯେ ବ୍ରହ୍ମପୁର କିମ୍ବା ଦକ୍ଷିଣ ଓଡ଼ିଶାରେ ଏପରି କିଛି ଲୋକ ପ୍ରଚଳିତ କଥିତ ଶବ୍ଦ ଅଛି ଯାହା ଶୁଣିବାକୁ ଶ୍ରୁତିକଟୁ ତ ନିଶ୍ଚୟ ପରନ୍ତୁ ଅଶାଳୀନ ମଧ୍ୟ । କିନ୍ତୁ ଆଞ୍ଚଳିକ ଲୋକେ ଏହାକୁ ଅତି ପ୍ରଚଳିତ ଶବ୍ଦ ଭାବରେ ଗ୍ରହଣ କରି ନେଇଥାନ୍ତି ।

(ଖ) ମାଁପ - ଅଜା । ଏହା ମଧ୍ୟ ବ୍ୟୁତ୍ପତ୍ତିଗତ ଦୃଷ୍ଟିକୋଣରୁ ଅର୍ଥ ସଂଗତ ମାତ୍ର ଶ୍ରୁତିକଟୁ । ଏହାର ଅର୍ଥ ହେଲା - ମା’ର ବାପ । ଏଠାରେ

'ବା' ବର୍ଣ୍ଣଟି ଉହ୍ୟ ରହିଯାଉଛି । ଦ୍ରୁତ ଉଚ୍ଚାରଣର କାରଣରୁ ବୋଧହୁଏ 'ବା' ଧ୍ୱନିଟିର ବିଲୋପ ଘଟି କେବଳ 'ମାଁ'ପ' ରହିଯାଇଛି । ଯେପରି ଭାଇନନା - ଭାଇନା'ରେ, ରାମଭାଇ - ରାମାଇ'ରେ ରୂପାନ୍ତରିତ ହୋଇଥାଏ । ଏଭଳି ଶବ୍ଦ ସମ୍ବୋଧନ ମଧ୍ୟ ଶ୍ରୁତିକଟୁ ମାତ୍ର ଲୋକ ପ୍ରଚଳିତ ଦୃଷ୍ଟିରୁ ଏକ ଶ୍ରୁତିମଧୁର ସମ୍ବୋଧନରେ ପରିଣତ ହୋଇସାରିଛି ।

(ଗ) ବୁଢ଼ା ବା' - ଜେଜେ ବାପା ଅର୍ଥାତ୍ ବାପାଙ୍କର ବାପା । ଘରର ବୟସ୍କ, ପୁରୁଖା, ବୃଦ୍ଧ ଏବଂ ନିଜ ବାପାଙ୍କର ବାପା ହୋଇଥିବାରୁ ନାତିନାତୁଣୀମାନେ ଏହି ବୃଦ୍ଧ ବ୍ୟକ୍ତିଙ୍କୁ ବୁଢ଼ା ବା' ବୋଲି ସମ୍ବୋଧନ କରିଥାନ୍ତି ।

(ଘ) ବା' - ବାପା । ପୂର୍ବ ଉପାନ୍ତର ଆହୁରି ଅନୁନ୍ନତ ଅଞ୍ଚଳର ନିରକ୍ଷର ଲୋକଙ୍କ ମୁହଁରେ ଏପ୍ରକାର ସମ୍ବୋଧନ ପ୍ରଚଳିତ ଥିବାର ଦେଖାଯାଏ । ସହଜ ସୁବିଧାର ଉଚ୍ଚାରଣ ହେତୁ ଏଠି ମଧ୍ୟ ପା' ଧ୍ୱନି ଉହ୍ୟ ହୋଇ ଲୋପ ପାଇଛି ।

(ଙ) ମା' - ବାପାଙ୍କର ମା' । ଓଡ଼ିଶାର ଅନ୍ୟ ପ୍ରାନ୍ତରେ ମା' ଶବ୍ଦ ଯଦିଓ ଇଂରାଜୀ Motherର ପ୍ରତିଶବ୍ଦ ଭାବରେ ବ୍ୟବହୃତ ହୋଇଥାଏ ମାତ୍ର ଏ ଅଞ୍ଚଳରେ ବାପାଙ୍କର ମା'କୁ ମା' (Grand mother) ଭାବରେ ସମ୍ବୋଧନ କରିବାର ଦେଖାଯାଏ । କେଉଁଠି କେଉଁଠି ବୁଢ଼ୀ ମା' ଭାବରେ ମଧ୍ୟ ସମ୍ବୋଧନ କରାଯାଇଥାଏ ଏବଂ ନିଜ ମା' (Mother)କୁ 'ବୋଉ' ଭାବରେ ସମ୍ବୋଧନ କରାଯାଏ ।

୪. 'ଅ' ଲଗାଇ କଥା କହିବା - ପୂର୍ବ ଉପାନ୍ତ ଓଡ଼ିଶାର ଲୋକମାନଙ୍କର ଏହା ହିଁ ବିଶେଷତ୍ୱ ଯେ ସେମାନେ 'ଅ' ଲଗାଇ କଥା ଆରମ୍ଭ କରିଥାନ୍ତି । ଏହା କଥନଗତ ଶୈଳୀର ସ୍ୱାତନ୍ତ୍ର୍ୟ । ଯେପରି ଆମେ କୌଣସି ବାକ୍ୟ କହିଲାବେଳେ ସିଧାସଳଖ ଭାବରେ କହିଥାଉ । ଏହା ଭାଷାର ମାନକ ଶୈଳୀ । ଯେପରି - 'ମୁଁ ଭୁବନେଶ୍ୱର ଯାଇ ତିନି ଦିନ ପରେ ଫେରିବି ।' ମାତ୍ର ପୂର୍ବ ଉପାନ୍ତର ଶୈଳୀ ଅନୁସାରେ ଏହା ଏହିପରି ହେବ - 'ଅ.ଅ..ଅ...ଅ ମୁଁ ଭୁବନେଶ୍ୱର ଯାଇ ତିନିଦିନ ପରେ ଫେରିମି ।' ଏହା ଲୋକ କଥନ ଶୈଳୀର ଏକ ମୁଖ୍ୟ ବିଶେଷତ୍ୱ । ଏହିପରି ଶୈଳୀର କଥା କହୁଥିବା ଲୋକ ଅତି ସହଜରେ ପୂର୍ବ ଉପାନ୍ତର ଲୋକ ଭାବରେ ଚିହ୍ନିତ ହୋଇଥାନ୍ତି ।

୫. 'ବା' ଲଗାଇ କଥା ଶେଷ କରିବା - 'ଅ' ଲଗାଇ କଥା କହିବା ଯେପରି ଏକ ବିଶେଷତ୍ୱ ସେହିପରି କଥାକୁ 'ବା' ଲଗାଇ ଶେଷ କରିବା ମଧ୍ୟ ଏଠାକାର ଏକ ସ୍ୱାତନ୍ତ୍ର । 'ହରି କାଲି କ'ଣ କଲା କି ?' ମାନକ ଶୈଳୀରେ ଏହି ବାକ୍ୟକୁ ପୂର୍ବ ଉପାନ୍ତ ଶୈଳୀରେ କହିଲେ ଏହିପରି ହେବ - 'ହରି କାଲି କ'ଣ କଲା ବା ?' କିମ୍ବା 'ସେଥିରୁ ମୋର କ'ଣ ଗଲା ବା ?' ଇତ୍ୟାଦି ।

୬. ପ୍ରଶ୍ନସୂଚକ 'କି'ର ପ୍ରୟୋଗ - ମାନକ ଶୈଳୀରେ କୌଣସି ଘଟଣା ସଂପର୍କରେ ଜିଜ୍ଞାସା କଲେ 'କାହିଁକି'ର ପ୍ରୟୋଗ ହୋଇଥାଏ । ମାତ୍ର ପୂର୍ବ ଉପାନ୍ତରେ 'କାହିଁକି' ବଦଳରେ 'କି'ର ବ୍ୟବହାର ଦେଖିବାକୁ ମିଳେ । ଏ ଶବ୍ଦଟି ଉତ୍ତର ଓଡ଼ିଶା ପ୍ରଭାବିତ ବୋଲି ଧାରଣା ହୁଏ ।

ଆଲୋଚ୍ୟ ପ୍ରବନ୍ଧରେ ପୂର୍ବ ଉପାନ୍ତ ଓଡ଼ିଶାର ଭାଷାଶୈଳୀ ସଂପର୍କରେ ଯାହା ଆଲୋଚିତ ହୋଇଅଛି ତାହା ସର୍ବଶେଷ ଚୂଡ଼ାନ୍ତ ପରିଣାମ ନୁହେଁ, ଫ୍ରେମ ଭିତରର ଏକ 'ଲେ ଆଉଟ୍' ମାତ୍ର । ବିଶଦ୍ ଆଲୋଚନା, ଅନୁଶୀଳନ ପାଇଁ ଗଭୀର ଅଧ୍ୟୟନ ଏବଂ ସମୟର ବହୁମୂଲ୍ୟତା ଅପରିହାର୍ଯ୍ୟ । ଭାଷା ଏକ ବହମାନ ନଦୀ ସଦୃଶ । କେଉଁ ପରିସ୍ଥିତି ଏବଂ ପ୍ରଭାବରୁ ଏହାର ରୂପଗତ/ଗୁଣଗତ ସ୍ୱଭାବ ପରିବର୍ତ୍ତନ ହୋଇଥାଏ ତାହା ଅବଶ୍ୟ କୁଛ ଗବେଷଣା ସାପେକ୍ଷ ।

ସଂଗ୍ରାମୀ ଭବନ
ଏଣ୍ଡୁଳାପୁର, କୁରୁଣ୍ଡି
ରାଜନଗର, କେନ୍ଦ୍ରାପଡ଼ା

---

## ଓମ୍‌ଫେଡ୍‌ର ଆଉ ଏକ ଭେଟି ସୋରିଷ ସସ୍ (କାସୁନ୍ଦି)

ଓଡ଼ିଶା କନ୍ଧମାଳ ଜିଲ୍ଲାରୁ ଉତ୍ପାଦିତ ହେଉଥିବା ହଳଦୀ ଓ ସୋରିଷ ଆନ୍ତର୍ଜାତିକମାନର ମାନ୍ୟତା ପାଇଛି । ଆଦିବାସୀ ବହୁଳ ଏହି କନ୍ଧମାଳ ଜିଲ୍ଲାର ଚାଷୀଙ୍କ ଦ୍ୱାରା ଉତ୍ପାଦନ କରାଯାଉଥିବା ସୋରିଷ ଓ ଅଦାକୁ ମିଶ୍ରିତ କରି ଓମ୍‌ଫେଡ୍ ଏବେ ପ୍ରସ୍ତୁତ କରିଛି ଓଡ଼ିଶାରେ ପ୍ରଥମ ଥର ପାଇଁ ସୋରିଷ ସସ୍ (କାସୁନ୍ଦି) ୨୦୦ ଗ୍ରାମ କାଚ ଜାର୍‌ରେ । ଖାଉଟି ମାନଙ୍କ ପାଇଁ ଦାମ୍ ମାତ୍ର ୨୨ ଟଙ୍କା ସମସ୍ତ କର ସହ ।

ଏହି କାସୁନ୍ଦି ତିଆରି କରିବାରେ ଆବଶ୍ୟକୀୟ ଲୁଣ ଓ ଭିନେଗାରର ସମ୍ମିଶ୍ରଣ କରାଯାଇଥାଏ । ଏହା ଏକ ଜୈବିକ ଦ୍ରବ୍ୟ ହୋଇଥିବାରୁ ଉଭୟ ଆମିଷ ଓ ନିରାମିଷ ଖାଦ୍ୟ ଯଥା- କଟଲେଟ୍, ସ୍ୟାଣ୍ଡଉଇଚ୍, ବର୍ଗର, ପିଜା, ଭଜାମାଛ ଓ ଅନ୍ୟାନ୍ୟ ଜଳଖିଆରେ ସିଧାସଳଖ ବ୍ୟବହାର କରାଯାଇପାରିବ । ପ୍ରସ୍ତୁତ ହେବା ଦିନଠାରୁ ୧୮ ମାସ ମଧ୍ୟରେ ଏହାକୁ ବ୍ୟବହାର କରାଯାଇପାରିବ । ସୂର୍ଯ୍ୟ କିରଣରେ ଏହାକୁ ନରଖି ଥଣ୍ଡା ଜାଗା ଯଥା- ଫ୍ରିଜ୍‌ରେ ରଖି ଏହାକୁ ବ୍ୟବହାର କଲେ ଏହାର ସ୍ୱାଦ ବହୁଗଣିତ ହୋଇଥାଏ । ଆଗାମୀ ଦିନରେ ଓମ୍‌ଫେଡ୍ ଆଦିବାସୀ ଅଧ୍ୟୁଷିତ ଜିଲ୍ଲାର ଚାଷୀଙ୍କ ଦ୍ୱାରା ଉତ୍ପାଦିତ ବିଭିନ୍ନ କୃଷିଜାତ ସାମଗ୍ରୀ ପ୍ରସ୍ତୁତ କରି ଖାଉଟିମାନଙ୍କ ଚାହିଦା ପୂରଣ କରିବା ସହିତ ଚାଷୀମାନଙ୍କ ଅର୍ଥନୈତିକ ପ୍ରଗତିରେ ସହାୟକ ହେବା ପରି ଯୋଜନା ରଖିଛି ।

# ଓଡ଼ିଶାରେ ପଞ୍ଚାୟତିରାଜ ବ୍ୟବସ୍ଥା ସମ୍ପର୍କରେ କେତେକ ଜ୍ଞାତବ୍ୟ ତଥ୍ୟ

ତାରାକାନ୍ତ ମହାନ୍ତି

ପଞ୍ଚାୟତିରାଜ ଅନୁଷ୍ଠାନ ମାଧ୍ୟମରେ ଗ୍ରାମାଞ୍ଚଳର ସମୃଦ୍ଧି ଆଣିବା ନିମନ୍ତେ ରାଜ୍ୟ ସରକାର ଅଙ୍ଗୀକାରବଦ୍ଧ । ଓଡ଼ିଶା ଗ୍ରାମପଞ୍ଚାୟତ ଅଧିନିୟମ, ୧୯୪୮ ରାଜ୍ୟର ଗ୍ରାମପଞ୍ଚାୟତ ଗଠନ, କ୍ଷମତା ଓ କାର୍ଯ୍ୟକାରିତା ଉଦ୍ଦେଶ୍ୟରେ ପ୍ରଣୀତ ପ୍ରଥମ ଆଇନ ଅଟେ । ୧୯୫୦-୫୧ରେ ରାଜ୍ୟର ବିଭିନ୍ନ ଅଞ୍ଚଳରେ ୫୦୦ ଗୋଟି ଗ୍ରାମପଞ୍ଚାୟତ ଗଠନ କରାଯାଇଥିଲା । ୧୯୫୮ରୁ ୧୯୬୧ ମଧ୍ୟରେ ରାଜ୍ୟର ବଛା ବଛା ସ୍ଥାନରେ ବ୍ଲକ୍‌ମାନ ପ୍ରତିଷ୍ଠା କରାଯାଇଥିଲା । ଓଡ଼ିଶା ଜିଲ୍ଲା ପରିଷଦ ଅଧିନିୟମ ୧୯୫୯ରେ ଅଧିନିୟମିତ କରାଗଲା କିନ୍ତୁ ତତ୍‌କ୍ଷଣାତ୍ ଜିଲ୍ଲା ପରିଷଦ ଗଠନ କରାଯାଇନଥିଲା । ପରବର୍ତ୍ତୀ ଅବସ୍ଥାରେ ୧୯୬୧ ମସିହାରେ ଜିଲ୍ଲା ପରିଷଦ ଅଧିନିୟମକୁ ସଂଶୋଧନ କରାଯାଇ ଓଡ଼ିଶାର ପଞ୍ଚାୟତ ସମିତି ଓ ଜିଲ୍ଲା ପରିଷଦ ଅଧିନିୟମ, ୧୯୫୯ (୧୯୬୧ର ଓଡ଼ିଶା ଅଧିନିୟମ-୨୪) ପ୍ରଣୟନ କରାଗଲା । ୧୯୬୧ ମସିହାରେ ରାଜ୍ୟକୁ ନିରକ୍ଷରତା, ଦାରିଦ୍ର୍ୟ ଓ ରୋଗମୁକ୍ତ କରାଇବାର ଲକ୍ଷ୍ୟ ନେଇ ତ୍ରିସ୍ତରୀୟ ପଞ୍ଚାୟତିରାଜ ଅନୁଷ୍ଠାନ ପ୍ରତିଷ୍ଠା କରାଗଲା । ୧୯୬୮ ମସିହାରେ ଜିଲ୍ଲା ପରିଷଦ ବ୍ୟବସ୍ଥାକୁ ଉଚ୍ଛେଦ କରାଗଲା । ଉନ୍ନୟନ କାର୍ଯ୍ୟକ୍ରମ, ଦାରିଦ୍ର୍ୟ ଦୂରୀକରଣ ଓ ସାମାଜିକ ସୁରକ୍ଷା କାର୍ଯ୍ୟକ୍ରମ ନିମନ୍ତେ ପଞ୍ଚାୟତ ସମିତି ଏକ ଗୁରୁତ୍ୱପୂର୍ଣ୍ଣ ଅନୁଷ୍ଠାନ ଭାବରେ ଉଭା ହେଲା, ମାତ୍ର ପଞ୍ଚାୟତ ସମିତି ଓ ଗ୍ରାମ ପଞ୍ଚାୟତ ସ୍ୱୟଂ ଶାସିତ ସ୍ୱାୟତ୍ତ ଶାସନ ସଂସ୍ଥା ରୂପେ ଉଦ୍ଭିତ ହୋଇ ପାରିଲାନାହିଁ । ସମ୍ବିଧାନର ୭୩ତମ ସଂଶୋଧନ ପୂର୍ବରୁ ତ୍ରିସ୍ତରୀୟ ପଞ୍ଚାୟତିରାଜ ଅନୁଷ୍ଠାନଗୁଡ଼ିକରେ ଅନୁସୂଚିତ ଜାତି, ଅନୁସୂଚିତ ଜନଜାତି ଓ ମହିଳାମାନଙ୍କ ନିମନ୍ତେ ସ୍ଥାନ ସଂରକ୍ଷଣ କରିବାରେ ଓଡ଼ିଶା ଏକ ଅଗ୍ରଣୀ ଭୂମିକା ଗ୍ରହଣ କରିଥିଲା । ଓଡ଼ିଶାର ପଞ୍ଚାୟତିରାଜ ବ୍ୟବସ୍ଥାର ଏକ ଉତ୍ତମ ଦିଗ ହେଲା ଏହାର ଅନୁଷ୍ଠାନର ମୁଖ୍ୟ କିମ୍ବା ଉପମୁଖ୍ୟ ମଧ୍ୟରୁ ନିଶ୍ଚିତ ରୂପେ ଜଣେ ମହିଳା ରହିବେ । ସମ୍ବିଧାନର ୭୩ତମ ସଂଶୋଧନ ଓ ପଞ୍ଚାୟତ (ଅନୁସୂଚିତ ଅଞ୍ଚଳକୁ ସମ୍ପ୍ରସାରଣ) ଅଧିନିୟମ ୧୯୯୬ (ପେସା) ବ୍ୟବସ୍ଥା ଯଥାକ୍ରମେ ୧୯୯୩ ଓ ୧୯୯୬ରେ ପ୍ରବର୍ତ୍ତିତ ହେଲା । ସମ୍ବିଧାନର ୭୩ତମ ସଂଶୋଧନ ଓ ପଞ୍ଚାୟତ (ଅନୁସୂଚିତ ଅଞ୍ଚଳକୁ ସମ୍ପ୍ରସାରଣ) ବ୍ୟବସ୍ଥା ସହିତ ସମତା ରକ୍ଷା କରାଯିବା ଉଦ୍ଦେଶ୍ୟରେ ଓଡ଼ିଶା ପଞ୍ଚାୟତ ଆଇନର ସଂଶୋଧନ କରାଗଲା । ପେସାରେ ଥିବା ବ୍ୟବସ୍ଥା ଅନୁସାରେ ଅନୁସୂଚିତ ଜନଜାତିର ଲୋକଙ୍କୁ ସାମାଜିକ ନ୍ୟାୟ ପ୍ରଦାନ କରି ନିର୍ବାଚନ କରିବାରେ ଓଡ଼ିଶା ହିଁ ପ୍ରଥମ ରାଜ୍ୟ ଅଟେ ।

**ସମ୍ବିଧାନର ବ୍ୟବସ୍ଥା ଅନୁସାରେ ପଞ୍ଚାୟତିରାଜ ଅନୁଷ୍ଠାନଗୁଡ଼ିକର କ୍ଷମତା**

ପଞ୍ଚାୟତିରାଜ ଅନୁଷ୍ଠାନଗୁଡ଼ିକୁ ସ୍ୱୟଂ ଶାସିତ ସଂସ୍ଥା ଭାବରେ ସମୃଦ୍ଧ କରାଇବା ନିମନ୍ତେ ସରକାର ପ୍ରତିଶ୍ରୁତିବଦ୍ଧ ଅଟନ୍ତି । ୨୦୦୩ ମସିହାରେ ୧୧ଟି ବିଭାଗର ୨୧ ଗୋଟି ବିଷୟ ପଞ୍ଚାୟତିରାଜ ବିଭାଗକୁ ହସ୍ତାନ୍ତରିତ ହୋଇଥିଲା । ଉକ୍ତ ୧୧ଟି ବିଭାଗର ଜିଲ୍ଲାସ୍ତରୀୟ ଅଧିକାରୀ, ବ୍ଲକ୍‌ସ୍ତରୀୟ ଅଧିକାରୀ ଓ ଗ୍ରାମସ୍ତରୀୟ କର୍ମକର୍ତ୍ତାମାନେ ଯଥାକ୍ରମେ ଜିଲ୍ଲାପରିଷଦ, ପଞ୍ଚାୟତ ସମିତି ଓ ଗ୍ରାମ ପଞ୍ଚାୟତକୁ ହସ୍ତାନ୍ତରିତ ହୋଇଥିବା ବିଷୟ/ପ୍ରକଳ୍ପର କାର୍ଯ୍ୟକାରିତା ନିମନ୍ତେ ଉତ୍ତରଦାୟୀ ରହିବେ । ସେମାନେ ସଂପୃକ୍ତ ପଞ୍ଚାୟତିରାଜ ଅନୁଷ୍ଠାନରେ ସେମାନଙ୍କର ଯୋଜନା ଓ ପ୍ରକଳ୍ପର ଅନୁମୋଦନ ନିମନ୍ତେ ବୈଠକରେ ଉପସ୍ଥାପନ କରିବେ । ତ୍ରିସ୍ତରୀୟ ପଞ୍ଚାୟତିରାଜ ମୁଖ୍ୟମାନେ ୧୧ଟି ବିଭାଗର ନିର୍ଦ୍ଦିଷ୍ଟ କର୍ମକର୍ତ୍ତାଙ୍କର ସାମୟିକ ଛୁଟି ମଂଜୁର କରିବେ । ସଂପ୍ରତି ଗ୍ରାମପଞ୍ଚାୟତଗୁଡ଼ିକୁ ନିର୍ବାହୀ ଅଧିକାରୀ ଯୋଗାଇ ଦିଆଯାଇଅଛି ।

ପଞ୍ଚାୟତିରାଜ ଅନୁଷ୍ଠାନକୁ ହସ୍ତାନ୍ତରିତ ହୋଇଥିବା ୨୧ ଗୋଟି ବିଷୟରୁ ୧୮ ଗୋଟି ବିଷୟରେ ରାଜ୍ୟ ସରକାର କାର୍ଯ୍ୟଶୈଳୀ ରେଖାଙ୍କିତ କରିସାରିଛନ୍ତି ।

**ଗ୍ରାମସଭା ଓ ପଲ୍ଲୀସଭାକୁ କ୍ଷମତା ପ୍ରଦାନ**

**ଗ୍ରାମ ସଭା -** ଗ୍ରାମସଭାରେ ମହିଳାମାନଙ୍କର ଅଂଶଗ୍ରହଣକୁ ନିଶ୍ଚିତ କରିବା ପାଇଁ କୋରମର ଏକ ତୃତୀୟାଂଶ ମହିଳାଙ୍କର ଉପସ୍ଥିତି ନିମନ୍ତେ ବ୍ୟବସ୍ଥା କରାଯାଇଅଛି । ପଲ୍ଲୀସଭାକୁ ଆସିଥିବା ବାର୍ଷିକ ଖସଡ଼ାକୁ ବିଚାର କରି ଗ୍ରାମ ପଞ୍ଚାୟତର ବଜେଟ୍ ଅନୁମୋଦନ ନିମନ୍ତେ ଗ୍ରାମସଭା

ଦାୟୀ ରହିବ । ଆହୁରି ମଧ୍ୟ ଦାରିଦ୍ର୍ୟ ଦୂରୀକରଣ କାର୍ଯ୍ୟକ୍ରମରେ ହିତାଧିକାରୀମାନଙ୍କର ତାଲିକା ପ୍ରସ୍ତୁତ କରିବା ପାଇଁ ଗ୍ରାମସଭା ଦାୟୀ ରହିବ । ଗ୍ରାମପଞ୍ଚାୟତର ବିନିଯୋଗ ପତ୍ର ଗ୍ରାମସଭା ଦ୍ୱାରା ଅନୁମୋଦିତ ହେବ ।

**ପଲ୍ଲୀସଭା -** ପଲ୍ଲୀସଭାରେ ମହିଳାମାନଙ୍କର ଅଂଶଗ୍ରହଣକୁ ଉତ୍ସାହିତ କରିବା ପାଇଁ ପଲ୍ଲୀସଭା ବୈଠକରେ ଉପସ୍ଥିତ ଥିବା ସଭ୍ୟଙ୍କ ମଧ୍ୟରୁ ଏକ ଦଶମାଂଶ ମହିଳାଙ୍କର ଉପସ୍ଥିତ ନିମନ୍ତେ ପୀଠାସିନ ଅଧିକାର ପ୍ରଚେଷ୍ଟା କରିବେ ।

**ପଲ୍ଲୀସଭାର ଦାୟିତ୍ୱ -**

୧. ସ୍ଥାନୀୟ ଅବସ୍ଥାକୁ ଚାହିଁ ବାର୍ଷିକ ଖସଡ଼ା ପ୍ରସ୍ତୁତ କରିବେ ।

୨. ଦାରିଦ୍ର୍ୟ ଦୂରୀକରଣ ଯୋଜନା ଅନ୍ତର୍ଗତ ହିତାଧିକାରୀଙ୍କୁ ଚୟନ କରିବେ ।

୩. ବିଭିନ୍ନ ପ୍ରକଳ୍ପ କାର୍ଯ୍ୟକାରୀ କରିବେ ଓ ଶ୍ରମିକ ନେତା ଚୟନ କରିବେ ।

**ପଞ୍ଚାୟତିରାଜ ବିଭାଗର କମ୍ପ୍ୟୁଟରୀକରଣ/ଇ-ଗଭର୍ଣ୍ଣାନ୍‌ସ**

କମ୍ପ୍ୟୁଟରୀକରଣ ପଦକ୍ଷେପ ସ୍ୱରୂପ ସରକାର ରାଜ୍ୟର ୩୧୪ ବ୍ଲକ୍, ୩୦ ଡି.ଆର୍.ଡି.ଏ. ଜିଲ୍ଲା ପଞ୍ଚାୟତ ଅଧିକାରୀ ତଥା-ଅତିରିକ୍ତ ପ୍ରକଳ୍ପ ନିର୍ଦ୍ଦେଶକ (ପଞ୍ଚାୟତ)ମାନଙ୍କୁ କମ୍ପ୍ୟୁଟର ଯୋଗାଇ ଦେଇଅଛନ୍ତି ଏବଂ ତାହା ଶିକ୍ଷିତ କମ୍ପ୍ୟୁଟର ଅପରେଟରମାନଙ୍କ ଦ୍ୱାରା ପରିଚାଳିତ କରାଯାଉଅଛି ଯାହାଦ୍ୱାରା କି ବ୍ଲକ୍ ସ୍ତରରୁ ଜିଲ୍ଲା ଏବଂ ଜିଲ୍ଲାସ୍ତରରୁ ରାଜ୍ୟସ୍ତର ପର୍ଯ୍ୟନ୍ତ ସମସ୍ତ ସୂଚନା ସୁରୁଖୁରରେ ପ୍ରାପ୍ତ ହେଉଅଛି । ଗ୍ରାମସାଟ୍ ପାଇଲଟ୍ ପ୍ରୋଜେକ୍ଟ ଅଧୀନରେ ରାଜ୍ୟର ସମସ୍ତ ୩୧୪ ଗୋଟି ବ୍ଲକ୍ ଓ ୩୦ ଗୋଟି ଡି.ଆର୍.ଡି.ଏ.କୁ ଭି-ସାଟ୍ ନେଟ୍‌ୱାର୍କ ଦ୍ୱାରା ସଂଯୋଗୀକରଣ କରାଯାଇଛି । ଏତଦ୍‌ବ୍ୟତୀତ ପଞ୍ଚାୟତିରାଜ ଅନୁଷ୍ଠାନ ଓ ଏଥିସହିତ ଜଡ଼ିତ ସରକାରୀ କର୍ମଚାରୀଙ୍କୁ ବ୍ୟାପକ ପ୍ରଶିକ୍ଷଣ କାର୍ଯ୍ୟକ୍ରମରେ (ଆଇ.ଟି.ପି.) ସମସ୍ତ ଜିଲ୍ଲା ଓ ବ୍ଲକ୍ ସମେତ ୧୧୯୨ ଗୋଟି ଗ୍ରାମ ପଞ୍ଚାୟତକୁ ଗ୍ରାମସାଟ୍ ଅନ୍ତର୍ଭୁକ୍ତ କରାଯାଇଛି ଯଦ୍ୱାରା ବିପୁଳ ସଫଳତା ମିଳିଅଛି । ଏନ୍.ଆଇ.ସି. ଜରିଆରେ ପଞ୍ଚାୟତିରାଜ ଅନୁଷ୍ଠାନଗୁଡ଼ିକୁ ପ୍ରିଆ ସଫ୍‌ଟ ଓ ରୁରାଲ ସଫ୍‌ଟ ନାମରେ ଦୁଇଟି ସଫ୍‌ଟୱେୟାର ଯୋଗାଇ ଦିଆଯାଇଛି । ହିସାବ ରଖିବା ପାଇଁ ପ୍ରିୟା ସଫ୍‌ଟ ଏବଂ ପ୍ରକଳ୍ପ ବିବରଣୀ ରଖିବା ନିମନ୍ତେ ରୁରାଲ ସଫ୍‌ଟ କାର୍ଯ୍ୟ କରୁଅଛି । ସେହିପରି ଏକ୍ସ.ଆଇ.ଏମ୍. ଦ୍ୱାରା ପ୍ରାୟୋଜିତ ପାମିସ ସଫ୍‌ଟୱେୟାର ଦ୍ୱାରା ଡି.ଆର୍.ଡି.ଏ. ଏବଂ ବ୍ଲକ୍‌ଗୁଡ଼ିକର ଦୈନନ୍ଦିନ କାରବାରର ହିସାବ ରଖିବା ପାଇଁ ନିୟୋଜିତ ହୋଇଅଛି । ତଦୋପରି ଡି.ଆର୍.ଡି.ଏ./ବ୍ଲକ୍ କର୍ମଚାରୀ ଓ ପ୍ରାଥମିକ ଶିକ୍ଷକମାନଙ୍କର ବେତନ ପ୍ରକ୍ରିୟା କାର୍ଯ୍ୟରେ ବେଟାନ ସଫ୍‌ଟୱେୟାର ନିୟୋଜିତ ହୋଇଅଛି ।

ରାଜ୍ୟର ମୋଟ ୬୨୩୪ ଗୋଟି ଗ୍ରାମ ପଞ୍ଚାୟତ ମଧ୍ୟରୁ ୫୦୦୦ରୁ ଉର୍ଦ୍ଧ୍ୱ ଲୋକସଂଖ୍ୟା ବିଶିଷ୍ଟ ୨୭୪୨ ଗୋଟି ଗ୍ରାମ ପଞ୍ଚାୟତକୁ କମ୍ପ୍ୟୁଟରୀକୃତ କରିବା ପାଇଁ ପଦକ୍ଷେପ ଗ୍ରହଣ କରାଯାଇଛି । ପ୍ରଥମ ପର୍ଯ୍ୟାୟରେ ଦ୍ୱାଦଶ ଅର୍ଥ କମିଶନ ଅନୁଦାନରୁ ଉପରୋକ୍ତ କାର୍ଯ୍ୟର ପ୍ରାରମ୍ଭ କରାଯାଇଛି ।

**ଗ୍ରାମପଞ୍ଚାୟତ ପ୍ରଶାସନର କାର୍ଯ୍ୟଦକ୍ଷତା ବୃଦ୍ଧି**

ଗ୍ରାମପଞ୍ଚାୟତର ଦକ୍ଷତା ବୃଦ୍ଧି ନିମନ୍ତେ ପ୍ରତି ପଞ୍ଚାୟତରେ ଗ୍ରାମ ସେବକ ଓ ଗ୍ରାମ୍ୟକୃଷି କର୍ମୀମାନଙ୍କୁ ନିର୍ବାହୀ ଅଧିକାରୀ ଭାବରେ ନିଯୁକ୍ତି ପ୍ରଦାନ କରାଯାଇଅଛି । ପ୍ରକଳ୍ପଗୁଡ଼ିକର ପ୍ରଶାସନିକ ଅନୁମୋଦନ ନିମନ୍ତେ ଗ୍ରାମପଞ୍ଚାୟତର ସରପଞ୍ଚଙ୍କ ଆର୍ଥିକ କ୍ଷମତା ବୃଦ୍ଧି କରାଯାଇଅଛି । ଲଘୁ ବନଜାତ ଦ୍ରବ୍ୟର ପ୍ରଶାସନିକ କ୍ଷମତା ଗ୍ରାମପଞ୍ଚାୟତକୁ ହସ୍ତାନ୍ତରିତ କରାଯାଇଛି ।

**ଜାତୀୟ ଖାଦ୍ୟ ପାଇଁ କାମ ଯୋଜନା**

ଭାରତ ସରକାର ଅକ୍ଟୋବର ୨୦୦୪ଠାରୁ ଜାତୀୟ ଖାଦ୍ୟ ପାଇଁ କାମ ଯୋଜନାର ଶୁଭାରମ୍ଭ କରିଛନ୍ତି ଯାହାର ଶତ ପ୍ରତିଶତ ବ୍ୟୟ ଭାର କେନ୍ଦ୍ର ସରକାର ବହନ କରୁଛନ୍ତି । ସମଗ୍ର ଦେଶର ମୋଟ ୧୫୦ ଗୋଟି ପଛୁଆ ଜିଲ୍ଲାକୁ ଏହି ଯୋଜନାର ଅନ୍ତର୍ଭୁକ୍ତ କରାଯାଇଛି । ଯେଉଁଥିରେ କି ଓଡ଼ିଶାର ୧୮ ଗୋଟି ଜିଲ୍ଲାକୁ ସାମିଲ କରାଯାଇଛି । ପଛୁଆ ଜିଲ୍ଲାଗୁଡ଼ିକୁ ଅତିରିକ୍ତ ସମ୍ବଳ ଯୋଗାଇଦେବା ଏହି ଯୋଜନାର ଲକ୍ଷ୍ୟ ଅଟେ । ସର୍ବନିମ୍ନ ସାମାଜିକ - ଆର୍ଥିକ ଗୋଷ୍ଠୀ ସହାୟତା ଜରିଆରେ ଅତିରିକ୍ତ ମଜୁରୀ ନିଯୁକ୍ତି ଓ ଖାଦ୍ୟ ନିରାପତ୍ତା ଯୋଗାଇଦେବା ପାଇଁ ଏହା ଉଦ୍ଦିଷ୍ଟ । ଗ୍ରାମାଞ୍ଚଳରେ ବାସ କରୁଥିବା ସମସ୍ତ ଗରିବ ଲୋକ ଯେଉଁମାନେ ମଜୁରୀ ନିଯୁକ୍ତି ଚାହୁଁଛନ୍ତି ଏବଂ ଅଣକୁଶଳୀ ଓ କୁଶଳୀ ଶ୍ରମ ନିମନ୍ତେ ଇଚ୍ଛୁକ ଅଟନ୍ତି ସେ ସମସ୍ତଙ୍କ ନିମନ୍ତେ ଏହା ଉନ୍ମୁକ୍ତ ଅଟେ ।

**ସଂପୂର୍ଣ୍ଣ ଗ୍ରାମୀଣ ରୋଜଗାର ଯୋଜନା**

ସଂପୂର୍ଣ୍ଣ ଗ୍ରାମୀଣ ରୋଜଗାର ଯୋଜନା ଏକ କେନ୍ଦ୍ରୀୟ ପ୍ରବର୍ତ୍ତିତ ଯୋଜନା ଯେଉଁଥିରେ କେନ୍ଦ୍ର ସରକାର ୭୫ ଭାଗ ଅର୍ଥ ଓ ରାଜ୍ୟ ସରକାର ୨୫ ଭାଗ ଅର୍ଥ ବହନ କରିଥାନ୍ତି । ଏତଦ୍‌ବ୍ୟତୀତ କେନ୍ଦ୍ର ସରକାର ଏହି ଯୋଜନାରେ ବିନା ମୂଲ୍ୟରେ ଖାଦ୍ୟଶସ୍ୟ ଯୋଗାଇ ଦେଇଥାନ୍ତି ।

ସଂପୂର୍ଣ୍ଣ ଗ୍ରାମୀଣ ରୋଜଗାର ଯୋଜନାର ମୁଖ୍ୟ ଉଦ୍ଦେଶ୍ୟ ହେଲା ଗ୍ରାମାଞ୍ଚଳର ଲୋକମାନଙ୍କୁ ଅତିରିକ୍ତ କର୍ମନିଯୁକ୍ତି ଯୋଗାଇଦେବା ସଂଗେ ସଂଗେ ଖାଦ୍ୟ ନିରାପତ୍ତାରେ ସ୍ୱାବଲମ୍ବୀ କରାଇବା । ଏତଦ୍‌ବ୍ୟତୀତ ଦ୍ୱିତୀୟ ଲକ୍ଷ୍ୟ ହେଲା ଗ୍ରାମାଞ୍ଚଳରେ ସ୍ଥାୟୀ ସାମାଜିକ ଓ ଅର୍ଥନୈତିକ ଭିତ୍ତିଭୂମି ସ୍ଥାପନ କରିବା ।

### ସ୍ୱର୍ଣ୍ଣ ଜୟନ୍ତୀ ଗ୍ରାମ ସ୍ୱରୋଜଗାର ଯୋଜନା

ଏହା ଏକ କେନ୍ଦ୍ରୀୟ ପ୍ରବର୍ତ୍ତିତ ଯୋଜନା ଅଟେ । ଗ୍ରାମାଞ୍ଚଳର ଦରିଦ୍ର ଜନତାଙ୍କ ସମନ୍ୱିତ ପ୍ରଚେଷ୍ଟାରେ ଆତ୍ମନିଯୁକ୍ତି ସୁଯୋଗ ସୃଷ୍ଟି କରିବାପାଇଁ ଏହା ଉଦ୍ଦିଷ୍ଟ । ଗ୍ରାମାଞ୍ଚଳର ଦରିଦ୍ର ଜନତାଙ୍କୁ ସ୍ୱୟଂ ସହାୟକ ଗୋଷ୍ଠୀରେ ରୂପାନ୍ତରିତ କରାଇବା ସହିତ ସେମାନଙ୍କର ଦକ୍ଷତା ବୃଦ୍ଧି, କୁଶଳତାର ଅଭିବୃଦ୍ଧି, ପ୍ରଶିକ୍ଷଣ, ବିଭିନ୍ନ ଆର୍ଥିକ କାର୍ଯ୍ୟକ୍ରମ ନିମନ୍ତେ ସହାୟତା ପ୍ରଦାନ, ଋଣ ସମ୍ପୃକ୍ତି, ଭିତ୍ତିଭୂମି ପ୍ରଯୁକ୍ତି ବିଦ୍ୟା ଏବଂ ବାଣିଜ୍ୟିକ ସହାୟତା ପ୍ରଦାନ କରିବାରେ ଏହି ଯୋଜନା କେନ୍ଦ୍ରିତ ଅଟେ । ଏହାର ପ୍ରକଳ୍ପ ବ୍ୟୟ କେନ୍ଦ୍ର ସରକାର ଓ ରାଜ୍ୟ ସରକାର ଯଥାକ୍ରମେ ୭୫:୨୫ ଅନୁପାତରେ ବହନ କରିବେ ।

### ମୌଳିକ ସେବା ନିମନ୍ତେ ଦ୍ୱାଦଶ ଅର୍ଥ କମିଶନ ଅନୁଦାନ

୨୦୦୫-୦୬ଠାରୁ ୨୦୦୯-୧୦ ମଧ୍ୟରେ ଗ୍ରାମପଞ୍ଚାୟତ/ପଞ୍ଚାୟତ ସମିତି ରାସ୍ତା ଓ କଲଭର୍ଟ ନିର୍ମାଣ ନିମନ୍ତେ ଦ୍ୱାଦଶ ଅର୍ଥ କମିଶନ ୨୦୦ କୋଟି ଟଙ୍କାର ଅନୁଦାନ ପ୍ରଦାନ କରିଛନ୍ତି । ଏତଦ୍‌ବ୍ୟତୀତ ପଞ୍ଚାୟତ ସମିତି ଗୃହ ନିର୍ମାଣ ଓ ମରାମତି ପାଇଁ ଉପରୋକ୍ତ ସମୟ ମଧ୍ୟରେ ଦ୍ୱାଦଶ ଅର୍ଥ କମିଶନ ୧୫ କୋଟି ଟଙ୍କାର ଅନୁଦାନ ଦେଇଛନ୍ତି । ଗ୍ରାମପଞ୍ଚାୟତରେ କମ୍ପ୍ୟୁଟରୀକରଣ ସ୍ଥାପନର ବ୍ୟବସ୍ଥା ଏହି ଦ୍ୱାଦଶ ଅର୍ଥ କମିଶନଙ୍କ ଅନୁଦାନରୁ କରାଯିବ ।

ଗ୍ରାମପଞ୍ଚାୟତ ଗଣତନ୍ତ୍ରର ତୃଣମୂଳ ଅନୁଷ୍ଠାନରୂପେ କାର୍ଯ୍ୟ କରୁଅଛି । ସଂପ୍ରତି ରାଜ୍ୟରେ ମୋଟ ୬୨୩୪ ଗୋଟି ଗ୍ରାମପଞ୍ଚାୟତ ରହିଅଛି । ସମ୍ବିଧାନର ୭୩ତମ ସଂଶୋଧନ ଅନୁଯାୟୀ ଗ୍ରାମପଞ୍ଚାୟତକୁ ବିଭିନ୍ନ ବିଷୟ ହସ୍ତାନ୍ତରିତ କରାଯାଇଛି ଏବଂ ଅଧିକ କ୍ଷମତା ପ୍ରଦାନ କରାଯାଇଛି । ସମ୍ପ୍ରତି ଗ୍ରାମପଞ୍ଚାୟତ ସମ୍ପାଦକ ମାସିକ ୨୨୦୦ ଟଙ୍କା ପାରିଶ୍ରମିକ ପାଉଛନ୍ତି ।

ପ୍ରତ୍ୟେକ ସରପଞ୍ଚ ଓ ନାଏବ ସରପଞ୍ଚ ମାସିକ ୩୦୦ ଟଙ୍କା ହିସାବରେ ମାନଦେୟ ପାଉଛନ୍ତି ।

### ପଞ୍ଚାୟତ ପରିଚାଳନା ବ୍ୟବସ୍ଥାର ଉନ୍ନତିକରଣ

ଗ୍ରାମ ସେବକ ଓ ଗ୍ରାମ କୃଷିକର୍ମୀମାନଙ୍କୁ ଗ୍ରାମପଞ୍ଚାୟତର ନିର୍ବାହୀ ଅଧିକାରୀ ଭାବରେ ନିଯୁକ୍ତି ପ୍ରଦାନ କରାଯାଇଅଛି । ରାଜ୍ୟର ସମସ୍ତ ୩୧୪ ଗୋଟି ବ୍ଲକ୍ ଓ ୩୦ ଗୋଟି ଡି.ଆର୍.ଡି.ଏ. କାର୍ଯ୍ୟାଳୟରେ ମାସିକ ଏକତ୍ରୀକୃତ ୫୦୦୦ ଟଙ୍କା ପାରିଶ୍ରମିକ ଗୋଟିଏ କରି କମ୍ପ୍ୟୁଟର ଅପରେଟର ପଦ ନିଯୁକ୍ତି ସୃଷ୍ଟି କରାଯିବ ।

### ପଞ୍ଚାୟତିରାଜ ବ୍ୟବସ୍ଥାର ସୁଦୃଢ଼ୀକରଣ

କ. ବ୍ଲକ୍ ଉନ୍ନୟନ ଅଧିକାରୀଙ୍କ ପାହ୍ୟା ବୃଦ୍ଧି କରାଯାଇ ସେହି ପଦକୁ ଓଡ଼ିଶା ପ୍ରଶାସନ ସେବା, ପ୍ରଥମ ଶ୍ରେଣୀ (କନିଷ୍ଠ ବ୍ରାଞ୍ଚ) ଅନ୍ତର୍ଭୁକ୍ତ କରାଯାଇଅଛି । ପ୍ରତ୍ୟେକ ପଞ୍ଚାୟତ ସମିତିକୁ ଜଣେ ଲେଖାଏଁ ସହାୟକ ଯନ୍ତ୍ରୀ ଯୋଗାଇ ଦିଆଯାଇଛି । ଏହା ପ୍ରକଳ୍ପଗୁଡ଼ିକର ମାନବୃଦ୍ଧି କରିବାରେ ସହାୟକ ହେବ ।

ଖ. ପ୍ରତ୍ୟେକ ପଞ୍ଚାୟତ ସମିତିକୁ କମ୍ପ୍ୟୁଟର ଅପରେଟର ଯୋଗାଇ ଦିଆଯାଇଛି ।

ଗ. ଏ.ବି.ଡି.ଓ. ପଦ ରାଜ୍ୟର ସମସ୍ତ ୩୧୪ ଗୋଟି ବ୍ଲକ୍‌ରେ ସୃଷ୍ଟି କରାଯାଇଅଛି ।

### ଜିଲ୍ଲା ପରିଷଦ

ଜିଲ୍ଲାପାଳ ଓ ପ୍ରକଳ୍ପ ନିର୍ଦ୍ଦେଶକ, ଡି.ଆର୍.ଡି.ଏ.ଙ୍କୁ ଯଥାକ୍ରମେ ଜିଲ୍ଲା ପରିଷଦର ମୁଖ୍ୟ ନିର୍ବାହୀ ଅଧିକାରୀ ଓ ନିର୍ବାହୀ ଅଧିକାରୀ ଭାବରେ ଦାୟିତ୍ୱ ଅର୍ପଣ କରାଯାଇଅଛି ।

ଜିଲ୍ଲା ପରିଷଦ କାର୍ଯ୍ୟର ସୁପରିଚାଳନା ପାଇଁ ଓଡ଼ିଶା ଜିଲ୍ଲା ପରିଷଦ ନିୟମ ପ୍ରଣୟନ କରାଯାଇଅଛି । ୧୧ଟି ବିଭାଗର ୨୧ ଗୋଟି ବିଷୟକୁ ପଞ୍ଚାୟତିରାଜ ଅନୁଷ୍ଠାନଗୁଡ଼ିକୁ ହସ୍ତାନ୍ତରିତ କରାଯାଇଅଛି । ସେପରି ହସ୍ତାନ୍ତରିତ ହୋଇଥିବା ବିଷୟଗୁଡ଼ିକର କାର୍ଯ୍ୟକାରିତା ନିମନ୍ତେ ଜିଲ୍ଲାସ୍ତରୀୟ ଅଧିକାରୀମାନେ ଉତ୍ତରଦାୟୀ ରହିବେ । ନିମ୍ନରେ ଓଡ଼ିଶାର ପଞ୍ଚାୟତିରାଜ ଅନୁଷ୍ଠାନର ଏକ ଚିତ୍ର ପ୍ରଦାନ କରାଗଲା । ଜିଲ୍ଲା/ଜିଲ୍ଲା ପରିଷଦ ସଂଖ୍ୟା-୩୦, ତନ୍ମଧ୍ୟରୁ ଅନୁସୂଚିତ ଅଞ୍ଚଳ ସମ୍ପୂର୍ଣ୍ଣ ଭାବେ ୭, ଆଂଶିକ ଭାବେ ୬, ବ୍ଲକ୍/ପଞ୍ଚାୟତ ଓ ସମିତି ସଂଖ୍ୟା- ୩୧୪, ତନ୍ମଧ୍ୟରୁ ଅନୁସୂଚିତ ୧୧୮, ଗ୍ରାମପଞ୍ଚାୟତ ସଂଖ୍ୟା-୬୨୩୪, ତନ୍ମଧ୍ୟରୁ ଅନୁସୂଚିତ-୧୯୩୧, ମୋଟ ନିର୍ବାଚିତ ପ୍ରତିନିଧି ୧,୦୦,୮୬୪, ତନ୍ମଧ୍ୟରୁ ମହିଳା-୩୪.୮୩୧ ହରିଜନ ୧୬,୩୦୭, ଆଦିବାସୀ-୨୩,୭୪୮, ମୋଟ ଗ୍ରାମ ସଂଖ୍ୟା- ୫୧,୩୪୯ ।

ଉପନିର୍ଦ୍ଦେଶକ ତଥା ଉପଶାସନ ସଚିବ
ସୂଚନା ଓ ଲୋକ ସଂପର୍କ ବିଭାଗ, ଭୁବନେଶ୍ୱର



# ଅନୁଗୋଳ ଜିଲ୍ଲାରେ ପ୍ରଧାନମନ୍ତ୍ରୀ ଗ୍ରାମ ସଡ଼କ ଯୋଜନାର ରୂପରେଖ

ବରଦା ପ୍ରସନ୍ନ ଦାସ

ଗ୍ରାମାଞ୍ଚଳ ସଂଯୋଗୀକରଣ କେବଳ ଗ୍ରାମାଞ୍ଚଳର ଉନ୍ନତିକରଣ ନିମନ୍ତେ ନୁହେଁ, ତାହା ଆର୍ଥିକ ଓ ସାମାଜିକ ସେବାର ଦ୍ୱାର ଉନ୍ମୁକ୍ତ କରିଥାଏ ଏବଂ କୃଷିଜାତ ଦ୍ରବ୍ୟର ବହୁଳ ଭାବରେ ଉତ୍ପତ୍ତି କରେ । ତାହା ବ୍ୟତିରେକ ଜିଲ୍ଲାର ଲୋକମାନଙ୍କର ନିଯୁକ୍ତି କ୍ଷେତ୍ରରେ ସୁଯୋଗ ସୃଷ୍ଟି କରିଥାଏ । ଏତଦ୍‌ବ୍ୟତୀତ ଦାରିଦ୍ର୍ୟ ଦୂରୀକରଣର ମୂଳାଧାର ଭାବରେ ପରିଗଣିତ ହୋଇଥାଏ । ଜିଲ୍ଲାର ପ୍ରାୟ ଶତକଡ଼ା ୪୦ ଭାଗ ଗ୍ରାମଗୁଡ଼ିକୁ ଏପର୍ଯ୍ୟନ୍ତ ସବୁଦିନିଆ ରାସ୍ତା ସହିତ ସଂଯୋଗ ହୋଇପାରିନାହିଁ । ଏଥିରୁ ଜଣାପଡୁଛି ଯେ ଯେଉଁ ସ୍ଥାନକୁ ସଂଯୋଗ କରିବା ପାଇଁ ରାସ୍ତା ନିର୍ମାଣ ହୋଇଛି, ସେଗୁଡ଼ିକ ସ୍ୱାଭାବିକ ଗୁଣ ଅଭାବ ଯୋଗୁଁ ସବୁଦିନିଆ ରାସ୍ତାରେ ପରିଗଣିତ କରାଯାଇପାରିନାହିଁ । ଉପରୋକ୍ତ ପରିସ୍ଥିତିର ପ୍ରତିବିଧାନ କରିବା ନିମନ୍ତେ ଭାରତ ସରକାର ପ୍ରଧାନମନ୍ତ୍ରୀ ଗ୍ରାମ ସଡ଼କ ଯୋଜନା ୨୦୦୦ ମସିହା ଡିସେମ୍ବର ୨୫ ତାରିଖରୁ ଆରମ୍ଭ କରିଛନ୍ତି, ଯାହା ଶତକଡ଼ା ୧୦୦ ଭାଗ କେନ୍ଦ୍ରୀୟ ଅନୁଦାନର ପରିକଳ୍ପନା ଅଟେ । ପ୍ରଧାନମନ୍ତ୍ରୀ ଗ୍ରାମ ସଡ଼କ ଯୋଜନାର ପ୍ରାରମ୍ଭିକ ଲକ୍ଷ୍ୟ ହେଉଛି ଅସଂଯୋଗୀକରଣ ହୋଇ ପଡ଼ିଥିବା ୧୦୦୦ ଓ ୧୦୦୦ରୁ ଊର୍ଦ୍ଧ୍ୱ ଜନବସତି ଥିବା ଗ୍ରାମଗୁଡ଼ିକୁ ୨୦୦୨-୦୩ ସୁଦ୍ଧା ଏବଂ ୫୦୦ ଓ ୫୦୦ରୁ ଅଧିକ ଜନବସତି ଥିବା ଗ୍ରାମଗୁଡ଼ିକୁ ୨୦୦୭ ମସିହା ସୁଦ୍ଧା ସବୁଦିନିଆ ରାସ୍ତା ମାଧ୍ୟମରେ ସଂଯୋଗୀକରଣ କରାଇବା । ଆବଶ୍ୟକ ସ୍ଥଳେ ଛୋଟ ପୋଲ ଓ ଜଳ ନିଷ୍କାସନ ପ୍ରଣାଳୀ ନିର୍ମାଣ କରାଯାଇଥାଏ । ପ୍ରଧାନମନ୍ତ୍ରୀ ଗ୍ରାମ ସଡ଼କ ଯୋଜନାରେ ସାମାନ୍ୟ ଉନ୍ନତି ହୋଇଥିବା ରାସ୍ତାଗୁଡ଼ିକ ଏହି ଯୋଜନାରେ ଅନ୍ତର୍ଭୁକ୍ତ କରିବାର ଆବଶ୍ୟକତା ଅଛି ଯେତେବେଳେ ସଂପୃକ୍ତ ଜିଲ୍ଲାର ନିର୍ଦ୍ଧାରିତ ହୋଇଥିବା ଲୋକସଂଖ୍ୟା ବିଶିଷ୍ଟ ଗ୍ରାମଗୁଡ଼ିକ ସବୁଦିନିଆ ରାସ୍ତା ମାଧ୍ୟମରେ ସଂଯୋଗୀକରଣ ସଂପୂର୍ଣ୍ଣ ହୋଇଥିବ । ଯେଉଁ ଅସଂଯୋଗୀକରଣ ଗ୍ରାମଗୁଡ଼ିକ ୨୦୦୧ ଜନଗଣନା ଅନୁସାରେ ନିର୍ଦ୍ଧାରିତ ଜନସଂଖ୍ୟା ଆକାରରେ ହୋଇଥିବ ଏବଂ ଅନ୍ୟୁନ ୫୦୦ ମି ଦୂରତା କିମ୍ବା ତା'ଠାରୁ ଅଧିକ ହୋଇଥିବା ସଂଯୋଗିକ ଗ୍ରାମ ବା ରାସ୍ତାଠାରୁ ଦୂରଥିବା ଦରକାର । ଉପରୋକ୍ତ ନିୟମାବଳୀ ମୁତାବକ ପ୍ରଧାନମନ୍ତ୍ରୀ ଗ୍ରାମସଡ଼କ ଯୋଜନା ୨୦୦୦-୦୧ ମସିହାଠାରୁ ଅନୁଗୋଳ ଜିଲ୍ଲାରେ ଆରମ୍ଭ ହୋଇ ଏ ପର୍ଯ୍ୟନ୍ତ ଚାଲୁ ରହିଅଛି । ଅନୁଗୋଳ ଜିଲ୍ଲାରେ ୨୦୦୪-୦୫ ମସିହା ସୁଦ୍ଧା ୧୦୦୦ ତଦୁର୍ଦ୍ଧ୍ୱ ଜନସଂଖ୍ୟା ବିଶିଷ୍ଟ ୬୪ଟି ଗ୍ରାମ, ୫୦୦ ଏବଂ ତଦୁର୍ଦ୍ଧ୍ୱ ୨୮ଟି ଗ୍ରାମ, ୨୫୦ରୁ ଊର୍ଦ୍ଧ୍ୱ ୧୪ଟି ଗ୍ରାମ ଏବଂ ୨୫୦ରୁ କମ୍ ୨ଟି ଗ୍ରାମକୁ ସଂଯୋଗୀକରଣ କରାଯାଇଅଛି । ଜିଲ୍ଲାର ଜନଗଣନା ଅନୁପାତ ଅନୁଯାୟୀ ୧୦୦୦ ଏବଂ ତଦୁର୍ଦ୍ଧ୍ୱ ଜନସଂଖ୍ୟା ବିଶିଷ୍ଟ ୭୪ଟି ଗ୍ରାମକୁ ୫୦୦ରୁ ଊର୍ଦ୍ଧ୍ୱ ଜନସଂଖ୍ୟା ବିଶିଷ୍ଟ ୧୭୯ଟି, ୨୫୦ରୁ ଊର୍ଦ୍ଧ୍ୱ ଜନସଂଖ୍ୟା ବିଶିଷ୍ଟ ୨୩୫ଟି ଏବଂ ୨୫୦ରୁ କମ୍ ଜନସଂଖ୍ୟା ବିଶିଷ୍ଟ ୨୩୩ଟି ଗ୍ରାମ, ମୋଟରେ ୭୨୧ଟି ଗ୍ରାମ ଅସଂଯୋଗ ହୋଇ ରହିଅଛି । ପ୍ରଧାନମନ୍ତ୍ରୀ ଗ୍ରାମସଡ଼କ ଯୋଜନାରେ ପ୍ରଥମ ସୋପାନରେ ୧୮ଟି ରାସ୍ତାକୁ ନିଆଯାଇ ୩୨.୧୫ କି.ମି. ରାସ୍ତା ନିର୍ମାଣ କରାଯାଇଥିଲା । ଏଥିଦ୍ୱାରା ୨୨ଟି ଗ୍ରାମକୁ ସୁବିଧା ପ୍ରଦାନ କରାଯାଇଥିଲା । ଦ୍ୱିତୀୟ ସୋପାନରେ (୨୦୦୧-୦୨) ୨୪ଟି ରାସ୍ତାକୁ ନିଆଯାଇ ୮୪.୭୯୫୧ କି.ମି. ରାସ୍ତା ନିର୍ମାଣ କରାଯାଇଥିଲା । ଏହାଦ୍ୱାରା ୩୧ଟି ଗ୍ରାମକୁ ସୁବିଧା ପ୍ରଦାନ କରାଯାଇଥିଲା । ସୋପାନ ତୃତୀୟରେ (୨୦୦୩-୦୪) ସମୁଦାୟ ୨୦ଟି ରାସ୍ତାକୁ ନିଆଯାଇ ୬୮.୦୮ କି.ମି. ରାସ୍ତା ନିର୍ମାଣ କରାଯାଇ ୩୭ଟି ଗ୍ରାମକୁ ସୁବିଧା ପ୍ରଦାନ କରାଯାଇଥିଲା । ସୋପାନ ଚତୁର୍ଥରେ (୨୦୦୪-୦୫) ୧୧ଟି ରାସ୍ତାକୁ ନିଆଯାଇ ୪୯.୨୯ କି.ମି. ରାସ୍ତା ନିର୍ମାଣ କରିବା ପାଇଁ ପ୍ରସ୍ତାବ ରହିଛି । ଏହି କାର୍ଯ୍ୟ ଶେଷ ହେଲେ ୧୮ଟି ଗ୍ରାମ ସୁବିଧା ପ୍ରଦାନ କରାଯିବାର ବ୍ୟବସ୍ଥା ରହିଛି । ଏହିପରି ଭାବରେ ଏସିଆ ଉନ୍ନତିକରଣ ବ୍ୟବସ୍ଥା ମାଧ୍ୟମରେ ପ୍ରଧାନମନ୍ତ୍ରୀ ଗ୍ରାମସଡ଼କ ଯୋଜନା (୨୦୦୫-୦୬) ନିୟମାବଳୀ ମୁତାବକ ୫୧.୩୫ କି.ମି. ରାସ୍ତାକୁ ନିର୍ମାଣ କରାଯାଇ ୧୧ଟି ଗ୍ରାମକୁ ସୁବିଧା ପ୍ରଦାନ କରାଯିବ । ଅଧିକନ୍ତୁ ସୋପାନ ପଞ୍ଚମରେ (୨୦୦୫-୦୬) ୧୭ଟି ରାସ୍ତାକୁ ନିଆଯାଇ ୭୧.୫୦ କି.ମି. ରାସ୍ତା ନିର୍ମାଣ କରାଯିବାର ପ୍ରସ୍ତାବ ଅଛି । ଏଥିରେ ୨୮ଟି ଗ୍ରାମ ସଂଯୋଗୀକରଣ ହୋଇପାରିବ । ତନ୍ମଧ୍ୟରୁ ଅନୁଗୋଳ

ବ୍ଲକ୍‌ରେ ୮ଟି ରାସ୍ତା ନିର୍ମାଣ କରାଯାଇ ୧୮ଟି ଗ୍ରାମକୁ, ବଅଁରପାଳ ବ୍ଲକ୍‌ରେ ୧୧ଟି ରାସ୍ତା ନିର୍ମାଣ କରାଯାଇ ୧୭ଟି ଗ୍ରାମକୁ, ଆଠମଲ୍ଲିକ ବ୍ଲକ୍‌ରେ ୧୦ଟି ରାସ୍ତା ନିର୍ମାଣ କରାଯାଇ ୧୬ଟି ଗ୍ରାମକୁ, କିଶୋରନଗର ବ୍ଲକ୍‌ରେ ୧୦ଟି ରାସ୍ତା ନିର୍ମାଣ କରାଯାଇ ୧୭ଟି ଗ୍ରାମକୁ, ଛେଣ୍ଡିପଦା ବ୍ଲକ୍‌ରେ ୯ଟି ରାସ୍ତା ନିର୍ମାଣ କରାଯାଇ ୨୧ଟି ଗ୍ରାମକୁ, ପାଲଲହଡ଼ା ବ୍ଲକ୍‌ରେ ୧୨ଟି ରାସ୍ତା ନିର୍ମାଣ କରାଯାଇ ୧୧ଟି ଗ୍ରାମକୁ, ତାଳଚେର ବ୍ଲକ୍‌ରେ ୩ଟି ରାସ୍ତା ନିର୍ମାଣ କରାଯାଇ ୮ଟି ଗ୍ରାମକୁ ସଂଯୋଗୀକରଣ କରାଯାଇଅଛି । ଏହି ପ୍ରସ୍ତାବଗୁଡ଼ିକ ଜିଲ୍ଲା ଅସଂଯୋଗୀକରଣ ଗ୍ରାମକୁ ଭିତ୍ତିକରି ପ୍ରସ୍ତୁତ ହୋଇଅଛି ଏବଂ ଏହି ପ୍ରସ୍ତାବଗୁଡ଼ିକ ଜିଲ୍ଲା ପରିଷଦରେ ଅନୁମୋଦନ ଲାଭ କରିଥିଲା । ରାସ୍ତାଗୁଡ଼ିକର ଅଗ୍ରଗଣ୍ୟତାକୁ ଭିତ୍ତିକରି ଜିଲ୍ଲା ନୂତନ ଅଗ୍ରାଧିକାର ସଂଯୋଗୀକରଣ ତାଲିକାରୁ ମନୋନୀତ କରାଯାଇଅଛି ଏବଂ ବାର୍ଷିକ କାର୍ଯ୍ୟକାରୀ ଯୋଜନା ଭାରତ ସରକାରଙ୍କ ନିୟମାବଳୀ ଅନୁସାରେ ଅନୁଦାନ ମୁତାବକ ପ୍ରସ୍ତୁତ କରାଯାଇଅଛି । ପ୍ରଧାନମନ୍ତ୍ରୀ ଗ୍ରାମସଡ଼କ ଯୋଜନାରେ କେବଳ ଗ୍ରାମ ରାସ୍ତା ଓ ପ୍ରଚଳିତ ଜିଲ୍ଲା ରାସ୍ତାଠାରୁ ନିମ୍ନରେ ଥିବା ରାସ୍ତାଗୁଡ଼ିକର ନୂତନ ନିର୍ମାଣ ଓ ପୁନଃ ନିର୍ମାଣ କରାଯିବାର ପ୍ରସ୍ତାବ ରହିଛି ।

ଡି.ଆଇ.ପି.ଆର୍.ଓ
ଜିଲ୍ଲା ସୂଚନା ଓ ଲୋକ ସଂପର୍କ କାର୍ଯ୍ୟାଳୟ, ଅନୁଗୋଳ

---

# ଉତ୍କଳ ଦିବସ ସତୁରୀ ବୟସ

ଓମ୍ ପ୍ରକାଶ ମହାପାତ୍ର

ବୟସ ସତୁରୀ ଧରି ଆସେ ଉତ୍କଳ ଦିବସ ଆମରି
ଜାତି ଭାଷା ବୟସ ଆୟୁଷ ଯାଏନି ସରି ସଳିତା ପରି ।
ଘସିମାଜି ହୋଇ ଚମକେ ଝଲକେ ଚକ ଚକ କରି
ବସି ବାଢ଼ିଥାଏ ଆଶା ଭରସାର ସିନ୍ଦୂର ଶଙ୍ଖା ଚୂଡ଼ି ।
ଜାତି ନନ୍ଦିଘୋଷ ଦିଶେ ଅବଶ ସଂକଟେ ପଡ଼ି
ଖୋଜେ ଗୋରା କବରୁ କଳାଘୋଡ଼ା ମଧୁପଗଡ଼ି ।
ମା' ମା' ଡାକି ଭାଇ ଭାଇ କହି ପଶିଲା କଫିନ ପେଡ଼ି
ଥିଲେ ସିଏ ଭାଇ ଖଟି ଖଟାଇ ଦେଇଥାନ୍ତା ସଜାଡ଼ି ।
ମନେ ନାହିଁ ସେଦିନ ପୋଡ଼ିଲା କେତେ ଜୋତା
ସ୍ୱାଭିମାନର ଦେବତା ଉତ୍କଳ ଟ୍ୟାନେରୀ ହତା ।
କହିଥିଲା ଜଣେ ନୁହଁ ତୁମେ ଜାତି ବା ଭାଷା
କି ଅପଦସ୍ତେ ଲୁଚିଲା ସେଦିନ ଖାଇ ତୁମ ଭୁଷା ।
କଲ ସାବ୍ୟସ୍ତ ପରସ୍ତ ପରସ୍ତ ଏ ଜାତି କୁଳ ବେଉସା
କବି ରାଧାନାଥ ଫକୀରମୋହନ ନୀଳକଣ୍ଠ ଭାବଭାଷା ।
ଉଠାଇ ପକେଇଲା ସୁପ୍ତ ଓଡ଼ିଆ ଜାତି ପଖାଳ କଂସା
ଅଧୁନା ଉତ୍କଳ ବିଜୁ ମହତାବ ଗଠନ ଶୈଳୀ ।
ଦେ ଦେ ଏ ଜାତି ପିଲା କୁଟୁମ୍ବେ ବୋଲି
ବକୁଳ ବନରୁ ଡାକେ ସେବା ଧର୍ମ ଗୋପବନ୍ଧୁ
ଚେନାଏ ନେରେ ତା'ଠାରୁ ସ୍ୱାର୍ଥ ବାନ୍ଧୁ ବାନ୍ଧୁ ।
ଏ ଜାତି ନୁହେଁରେ ଠକ ବଦମାସ ଭୀରୁ
ଜନମ ତାହାର ଉତ୍କଳ ଜନନୀ ଗରଭରୁ
ପାଇକ ସାଧବ ଶକତି ବୈଭବ ଫେରୁ ।
କଳାକୃତି କୀରତି କାରିଗରି ତୋର ବିଶ୍ୱଖ୍ୟାତି ଧରି
ଦେଖେ ଦର୍ଶକ କୋଣାରକ ମନଭରି ଫେରି ଫେରି ।
ଜୟ ଜଗତନାଥ ପତିତପାବନ ନନ୍ଦିଘୋଷ ରଥ
ବନ୍ଦେ ଉତ୍କଳ ଜନନୀ ଜନମ ଘଡ଼ିରେ ନମସ୍ତେ ମାଥ ।

ଉପଶାସନ ସଚିବ
ସୂଚନା ଓ ଲୋକ ସଂପର୍କ ବିଭାଗ, ଭୁବନେଶ୍ୱର




# ଆଜିର ବାର୍ତ୍ତା




ଏ ଦିନଟି ଆମର ସ୍ମୃତିଚାରଣର ଦିନ । ଏହି ଦିନ ଓଡ଼ିଶାରେ ଏକ ଅନ୍ଧକାରମୟ ଯୁଗର ଅବସାନ ଘଟିଥିଲା । ଆଜି ଓଡ଼ିଶା ଏକ ସ୍ୱତନ୍ତ୍ର ପ୍ରଦେଶ ହେବାର ୭୦ ବର୍ଷ ପୂରି ୭୧ ବର୍ଷ ଚାଲିଲା । ଓଡ଼ିଆ ଜାତିର ଇତିହାସ ହେଉଛି ହଜାର ହଜାର ବର୍ଷର ଇତିହାସ ।

ଆଜି ଆମେ ବିଶେଷ ଭାବେ ସ୍ମରଣ କରିବା ସେହିମାନଙ୍କୁ, ଯେଉଁମାନେ ଓଡ଼ିଶାର ସଭ୍ୟତା ଏବଂ ସଂସ୍କୃତିକୁ ଭାରତ ବାହାରେ ବଣିକ ଭାବରେ, ଧର୍ମପ୍ରଚାରକ ଭାବରେ ଓଡ଼ିଶାର କଳା, ସାହିତ୍ୟ, ସଂସ୍କୃତି ଓ ସ୍ଥାପତ୍ୟକୁ ସୁଦୂର ସିଂହଳ, ଜାଭା, ସୁମାତ୍ରା, ବାଲି, ବୋର୍ଣ୍ଣିଓ ଓ ବ୍ରହ୍ମ ଦେଶରେ ପହଞ୍ଚାଇ ପାରିଥିଲେ । ଏକ ଦୁଃସାହସୀ ଜାତି ରୂପେ କଳିଙ୍ଗବାସୀଙ୍କ ଶକ୍ତି ଓ ଖ୍ୟାତି ଥିଲା ଅପ୍ରମିତ । ଏହାର ସୈନ୍ୟ ଆଲେକ୍‌ଜାଣ୍ଡରଙ୍କ ସୈନ୍ୟବାହିନୀକୁ ପରାସ୍ତ କରିଥିଲେ ଏବଂ ସେମାନଙ୍କୁ ଭାରତର ସୀମା ବାହାରକୁ ତଡ଼ି ଦେଇଥିଲେ । ଯେଉଁମାନେ ସେଦିନୁ ଏ ଯାତ୍ରା ଆରମ୍ଭ କରିଛନ୍ତି, ସେମାନେ ଓଡ଼ିଆ ଜାତିର ପୂର୍ବସୂରୀ, ନମସ୍ୟ ।

ଦୀର୍ଘକାଳ ଧରି ଯେତେବେଳେ ଭାରତର ଅଧିକାଂଶ ରାଜ୍ୟ ପଠାଣ, ମୋଗଲ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ ହୋଇ ରହିଥିଲା, ଓଡ଼ିଶା ସେପର୍ଯ୍ୟନ୍ତ ନିଜର ସ୍ୱାଧୀନତାକୁ ରକ୍ଷା କରିପାରିଥିଲା । ଓଡ଼ିଶାର ଏ ଗୌରବମୟ ଇତିହାସ ଆଲୋଚନା କରିବାର ଉଦ୍ଦେଶ୍ୟ ହେଉଛି ଯେ ଇତିହାସ ଅନେକ ସମୟରେ ଆମକୁ ପ୍ରେରଣା ଦିଏ ।

ଆମେ ସ୍ମରଣ କରିବା ସେଦିନର କଥା, ଓଡ଼ିଆ ଭାଷା ଏକ ସ୍ୱତନ୍ତ୍ର ଭାଷା ନୁହେଁ ବୋଲି କେତେକ ଇଂରାଜୀ ଭାଷା ଗର୍ବିତ ଅନ୍ୟ ପ୍ରଦେଶର ଲୋକ ଓଡ଼ିଆ ଭାଷାକୁ ଲୋପ କରିବା ପାଇଁ ଚେଷ୍ଟା କରିଥିଲେ ଏବଂ ସେତେବେଳେ ଓଡ଼ିଆ ଭାଷାକୁ ବଞ୍ଚେଇ ରଖିବା ପାଇଁ ଯେଉଁମାନେ ଉଦ୍ୟମ କରିଥିଲେ, ସେମାନେ ହେଲେ କବିବର ରାଧାନାଥ ରାୟ, ଭକ୍ତକବି ମଧୁସୂଦନ ରାଓ, ବ୍ୟାସକବି ଫକୀରମୋହନ ସେନାପତି ଓ ଗଙ୍ଗାଧର ମେହେର । ସେମାନଙ୍କୁ ମଧ ଆମେ ଆଜି ଶ୍ରଦ୍ଧାର ସହ ସ୍ମରଣ କରିବାର ଦିନ । ଓଡ଼ିଶାକୁ ଏକ ସ୍ୱତନ୍ତ୍ର ପ୍ରଦେଶ ରୂପେ ଗଢ଼ି ତୋଳିବା ପାଇଁ ଇଂରେଜ ଶାସନ ଅମଳରେ ଯେଉଁମାନେ ଉଦ୍ୟମ କରିଥିଲେ, ସଂଗ୍ରାମ କରିଥିଲେ ଓ ପ୍ରାଣପାତ କରିଥିଲେ, ସେମାନଙ୍କୁ ଆମେ ଆଜି ବିଶେଷ ଭାବେ ଶ୍ରଦ୍ଧାଞ୍ଜଳି ଜଣାଇବାର ଦିନ । ସେମାନେ ହେଉଛନ୍ତି ଉତ୍କଳଗୌରବ ମଧୁସୂଦନ ଦାସ, ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସ, ମହାରାଜା କୃଷ୍ଣଚନ୍ଦ୍ର ଗଜପତି ଏବଂ ଆହୁରି ଅନେକ ବ୍ୟକ୍ତି ଯେଉଁମାନେ ବିଶେଷ ଭାବେ ଓଡ଼ିଆ ଜାତିର ପ୍ରଣମ୍ୟ ଏବଂ ପୁଣ୍ୟଶ୍ଲୋକ ପୁରୁଷ ।

୧୯୩୬ ମସିହାରେ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ରୂପେ ଜନ୍ମଲାଭ କରିବା ପରେ, ପୁଣି ଯେଉଁସବୁ ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ଏହି ପ୍ରଦେଶ ସହିତ ରାଜନୈତିକ ଦୃଷ୍ଟିକୋଣରୁ ମିଶ୍ରଣ କରିବା ପାଇଁ ଉଦ୍ୟମ ହୋଇଥିଲା, ଯେଉଁମାନେ ଏ ଉଦ୍ୟମ କରିଥିଲେ, ସେମାନଙ୍କୁ ମଧ ବିଶେଷ ଭାବେ ସ୍ମରଣ କରିବାର ଦିନ । ସେ ପୁଣ୍ୟଶ୍ଲୋକ ବ୍ୟକ୍ତି ହେଲେ ସର୍ଦ୍ଦାର ବଲ୍ଲଭଭାଇ ପଟେଲ ଓ ଡକ୍ଟର ହରେକୃଷ୍ଣ ମହତାବ । ସେମାନଙ୍କ ଉଦ୍ୟମ ଯୋଗୁଁ ୧୯୪୮ ମସିହାରେ ଏକ ବିଶାଳ ଉତ୍କଳ ପ୍ରଦେଶ ଗଠନ ସମ୍ଭବ ହୋଇଥିଲା ଏବଂ

ଯେଉଁସବୁ ଗଡ଼ଜାତ ଅଞ୍ଚଳ ଓଡ଼ିଶାରୁ ବିଚ୍ଛିନ୍ନ ହୋଇ ରହିଥିଲା, ସେସବୁ ଅଞ୍ଚଳର ମିଶ୍ରଣ ସମ୍ଭବ ହୋଇଥିଲା । ଯାହାଫଳରେ ପୂର୍ଣ୍ଣାଙ୍ଗ ଉତ୍କଳ ଗଠନର ସ୍ୱପ୍ନ ଆମର ସାକାର ହୋଇଥିଲା ।  ଖାରବେଳ ଓ ମହାନ୍ ଜଗନ୍ନାଥ ସଂସ୍କୃତିର ଦାୟାଦ ରୂପେ ସ୍ୱପ୍ନ ଦେଖୁଥିବା ପ୍ରବାଦପୁରୁଷ ବିଜୁ ପଟ୍ଟନାୟକ ଓଡ଼ିଶାକୁ ବିଶ୍ୱ ଦରବାରରେ କିପରି ଏକ ସମୁଚିତ ଆସନର ଅଧିକାରୀ କରାଇପାରିବେ, ୧୯୬୧ ମସିହାରେ ସେ ମୁଖ୍ୟମନ୍ତ୍ରୀ ଥିବାବେଳେ ଓଡ଼ିଶାକୁ ଏକ ଶିଳ୍ପୋନ୍ନତ ରାଜ୍ୟରୂପେ ଗଢ଼ି ତୋଳିବା ପାଇଁ ଅହରହ ଉଦ୍ୟମ କରିଥିଲେ ଓ ଅନେକାଂଶରେ ସଫଳ ହୋଇଥିଲେ । ଦ୍ୱିତୀୟବାର ତାଙ୍କ ଶାସନ କାଳରେ ଓଡ଼ିଶାକୁ ବିଭିନ୍ନ କ୍ଷେତ୍ରରେ ଆଗେଇ ନେବା ପାଇଁ ସେ ଉଦ୍ୟମ ଜାରି ରଖିଥିଲେ । ପ୍ରଶାସନକୁ ଲୋକଙ୍କର ନିକଟତର କରିବା ପାଇଁ ୧୩ଟି ଜିଲ୍ଲାରୁ ୩୦ଟି ଜିଲ୍ଲାରେ ପରିଣତ କରିଥିଲେ ।

ଅତୀତର ସମସ୍ତ ଗୌରବ, ଓଡ଼ିଶାର ସମସ୍ତ କଳା, ସଂସ୍କୃତି, ଭାସ୍କର୍ଯ୍ୟର ବିଭବ ସତ୍ତ୍ୱେ ଓଡ଼ିଆ ଜାତି ଦାରିଦ୍ର୍ୟର ଅଭିଶାପରେ ଅଭିଶପ୍ତ । ଏ କଳଙ୍କ ଆମକୁ ଦୂର କରିବାକୁ ପଡ଼ିବ । ଓଡ଼ିଶାରେ ସବୁକିଛି ଅଛି । ଆମର ଯେଉଁ ପ୍ରାକୃତିକ ସମ୍ପଦ ଅଛି ତାହାର କିପରି ବିକାଶ କରାଯାଇପାରିବ, ତାହା ହିଁ ଆମର ଲକ୍ଷ୍ୟ ହେବା ଉଚିତ । ରାଜନୈତିକ କ୍ଷେତ୍ରରେ ତଥା ଅନ୍ୟାନ୍ୟ କ୍ଷେତ୍ରରେ ଆମର ଯେତେ ମତଭେଦ ଥାଉନା କାହିଁକି ଓଡ଼ିଶାର ଉନ୍ନତି କ୍ଷେତ୍ରରେ ସମସ୍ତଙ୍କର ସମାନ ଧାରଣା ନ ରହିଲେ, ସମସ୍ତେ ଏକମତ ନହେଲେ ଓଡ଼ିଶା କେବେହେଲେ ଉଠିପାରିବ ନାହିଁ । ଏ ହେଉଛି ଆଜିର ବାର୍ତ୍ତା । ଆମେ ଯେଉଁ କ୍ଷେତ୍ରରେ ରହୁନା କାହିଁକି ଓଡ଼ିଶାର ଉନ୍ନତି ଆମର ଧ୍ୟେୟ ହେବା ଉଚିତ ।

ତେଣୁ ଓଡ଼ିଶାକୁ ଉନ୍ନତି ପଥରେ ଆଗେଇ ନେବାକୁ ହେଲେ ଓଡ଼ିଶାର ସମସ୍ତ ସମ୍ପଦକୁ ଆଜି କାର୍ଯ୍ୟକାରୀ କରିବା ପାଇଁ ଯେଉଁ ଉଦ୍ୟମ ଆରମ୍ଭ ହୋଇଛି ଶିଳ୍ପରେ, କୃଷିରେ, ଶିକ୍ଷାରେ, ସ୍ୱାସ୍ଥ୍ୟରେ, ପର୍ଯ୍ୟଟନରେ, କଳାରେ, ସଂସ୍କୃତିରେ ଏବଂ ବିଭିନ୍ନ କ୍ଷେତ୍ରରେ ଆମେ ତାକୁ ପୂର୍ଣ୍ଣାଙ୍ଗ କରି ତୋଳିବା । ଏସବୁ କ୍ଷେତ୍ରରେ ବର୍ତ୍ତମାନ କାର୍ଯ୍ୟ ଆରମ୍ଭ ହୋଇଯାଇଛି । ଏଗୁଡ଼ିକ ସାକାର ହେଲେ ଓଡ଼ିଶାର ମାନଚିତ୍ର ବଦଳିଯିବ, ଆମକୁ ଏକ ଦରିଦ୍ର ପ୍ରଦେଶ ରୂପେ କେହି ତାଚ୍ଛଲ୍ୟ କରିବେ ନାହିଁ । ବର୍ତ୍ତମାନ ଓଡ଼ିଶା ଆଜି ଶିଳ୍ପ ବିପ୍ଳବର ଦ୍ୱାର ଦେଶରେ । ବିଭିନ୍ନ ଶିଳ୍ପ କ୍ଷେତ୍ରରେ ବର୍ତ୍ତମାନ ବହୁକୋଟି ଟଙ୍କା ବିନିଯୋଗ ହେବାକୁ ଯାଉଛି । ପ୍ରଗତିର ଏହି ଚକକୁ ଟାଣି ନେବା ପାଇଁ ସମସ୍ତେ ଏକମନ ଏକପ୍ରାଣରେ ଆଗେଇ ଆସିବା ଉଚିତ । ନିଜ ଗୋଡ଼ରେ ନିଜେ ଠିଆ ହେବାର ଦିନ ଆଜି ଆସିଛି । ଭିକ୍ଷାବୃତ୍ତି କରିବାର ପ୍ରଶ୍ନ ଉଠୁନାହିଁ । ବର୍ତ୍ତମାନ ଆମର କର୍ତ୍ତବ୍ୟ ହେଉଛି ନିଜ ଗୋଡ଼ରେ ଠିଆ ହୋଇ, ନିଜର ନ୍ୟାଯ୍ୟ ଅଧିକାର ଆଦାୟ କରି ଏବଂ ଓଡ଼ିଶାର ଯେଉଁ ସମ୍ପଦ ଅଛି ସେ ସମ୍ପଦକୁ ବିକାଶ କରି ଓଡ଼ିଶାକୁ ପୁଣି ଉଠାଇ ଭାରତବର୍ଷରେ ଏକ ଶ୍ରେଷ୍ଠ ରାଜ୍ୟ ରୂପେ ପରିଣତ କରିବା ।

ଉତ୍କଳ ଦିବସର ବାର୍ତ୍ତା ହେଉଛି ଅତୀତର ଚିନ୍ତନ ଏବଂ ଏଥିସହିତ ବର୍ତ୍ତମାନ ଯେଉଁ ସୁଯୋଗ ଆସିଛି, ସେ ସୁଯୋଗର ସଦୁପଯୋଗ କରି ଏକ ଉନ୍ନତ ଭବିଷ୍ୟତ ଗଠନ କରିବା ।

ଜୟ ଜଗନ୍ନାଥ

ବନ୍ଦେ ଉତ୍କଳ ଜନନୀ

ମୋହନ ଚନ୍ଦ୍ର ମାଝୀ

# ଉତ୍କଳ ପ୍ରସଙ୍ଗ

**The Utkal Prasanga**

୬୨ ଭାଗ | ୯ମ ସଂଖ୍ୟା | ଚୈତ୍ର-ବୈଶାଖ | ଅପ୍ରେଲ - ୨୦୦୬

**ଦିଗମ୍ବର ମହାନ୍ତି**
କମିଶନର ତଥା ଶାସନ ସଚିବ

**ବୈଷ୍ଣବ ପ୍ରସାଦ ମହାନ୍ତି**
ନିର୍ଦ୍ଦେଶକ

**ଶରତଚନ୍ଦ୍ର ସାମନ୍ତରାୟ**
କାର୍ଯ୍ୟ ନିର୍ବାହୀ ସମ୍ପାଦକ

ସମ୍ପାଦନା ସହଯୋଗୀ
**ଗୋବିନ୍ଦଚନ୍ଦ୍ର ମଲ୍ଲିକ**
**ସଚ୍ଚିଦାନନ୍ଦ ବାରିକ**

ପ୍ରଚ୍ଛଦପଟ ଓ ଲେ-ଆଉଟ ଡ଼ିଜାଇନିଂ
**ମାନସ ନାୟକ**
ଫଟୋ :
**ରାଜୁ ସିଂ**
**ମାନସ ରଂଜନ ମହାନ୍ତି**

କମ୍ପ୍ୟୁଟର ସେଟିଂ ଓ ଡ଼ିଜାଇନିଂ
**ମନୋଜ କୁମାର ପାତ୍ର**
**ହେମନ୍ତ କୁମାର ସାହୁ**

***ବାର୍ଷିକ ଦେୟ : ଟ.୫୦.୦୦***
***ପ୍ରତିଖଣ୍ଡ : ଟ.୫.୦୦***



ଓଡ଼ିଶା ସରକାରଙ୍କର ସୂଚନା ଓ ଲୋକ ସମ୍ପର୍କ ବିଭାଗଦ୍ୱାରା ପ୍ରକାଶିତ ଏବଂ ଓଡ଼ିଶା ସରକାରୀ ମୁଦ୍ରଣାଳୟ, କଟକ - ୧୦ରେ ମୁଦ୍ରିତ ।

ଠିକଣା : 'ଉତ୍କଳ ପ୍ରସଙ୍ଗ', ରାଜ୍ୟ ସୂଚନା ଓ ଲୋକ ସଂପର୍କ ବିଭାଗ, ଲୋକ ସଂପର୍କ ଭବନ, ଭୁବନେଶ୍ୱର - ୭୫୧୦୦୧
ଫୋନ : ୨୩୯୪୫୧୩, ଇ-ମେଲ୍ : iprsec@rediffmail.com, ୱେବ୍‌ସାଇଟ୍ : www.orissagov.nic.in

# ସୂଚୀ






# ଉତ୍କଳ ଦିବସ -୨୦୦୬ ପାଳନ ଅବସରରେ
# ମହାମହିମ ରାଷ୍ଟ୍ରପତି
# ଶ୍ରୀ ଏ.ପି.ଜେ ଅବଦୁଲ କାଲାମଙ୍କ
# ବାର୍ତ୍ତା

ଅପ୍ରେଲ ପହିଲା ଦିନ ଓଡ଼ିଶା ସରକାର ଓଡ଼ିଶା ଦିବସ ପାଳନ କରୁଥିବା ଜାଣି ମୁଁ ଅତ୍ୟନ୍ତ ଆନନ୍ଦିତ ।

ମହାନ୍ ସାଂସ୍କୃତିକ ଐତିହ୍ୟର ଅଧିକାରୀ ଓଡ଼ିଶା ହେଉଛି ଚିତ୍ରକଳା, ନୃତ୍ୟ, ସ୍ଥାପତ୍ୟ, ମୂର୍ତ୍ତିକଳାର ପରମ୍ପରାରେ ପରିପୂର୍ଣ୍ଣ ଏକ ବୈଚିତ୍ର୍ୟମୟ ରାଜ୍ୟ । ଏହି ମହତ୍ୱପୂର୍ଣ୍ଣ ଦିବସରେ ରାଜ୍ୟବାସୀମାନେ ସେମାନଙ୍କର ରାଜ୍ୟର ସାମଗ୍ରିକ ପ୍ରଗତି ଓ ସମୃଦ୍ଧି ପାଇଁ କଠୋର ପରିଶ୍ରମ କରି ପ୍ରଗତିର ଏକ ଆଦର୍ଶ ରାଜ୍ୟ ରୂପେ ଗଢ଼ି ତୋଳିବା ଲାଗି ସଂକଳ୍ପବଦ୍ଧ ହେବା ଉଚିତ ।

ଏହି ଅବସରରେ ଓଡ଼ିଶାବାସୀଙ୍କ ଉତ୍ତରୋତ୍ତର ଉନ୍ନତି ତଥା ପ୍ରଗତି ପାଇଁ ମୁଁ ଶୁଭେଚ୍ଛା ଜ୍ଞାପନ କରିବା ସଂଗେ ସଂଗେ ଉତ୍ସବର ସଫଳତା କାମନା କରୁଛି ।

ନୂଆଦିଲ୍ଲୀ
୨୪ ମାର୍ଚ୍ଚ, ୨୦୦୬

(ଏ.ପି.ଜେ. ଅବଦୁଲ କାଲାମ)






## ଉତ୍କଳ ଦିବସ -୨୦୦୬ ପାଳନ ଅବସରରେ

## ମହାମାନ୍ୟ ଉପରାଷ୍ଟ୍ରପତି

## ଶ୍ରୀ ଭୈରୋଁ ସିଂ ଶେଖାୱତଙ୍କ

## ବାର୍ତ୍ତା

ଅପ୍ରେଲ ପହିଲା ଦିନ 'ଓଡ଼ିଶା ଦିବସ' ପାଳନ ହେଉଥିବା ଜାଣି ମୁଁ ବିଶେଷ ଆନନ୍ଦିତ । ଏହି ଐତିହାସିକ ଦିବସ ଅବସରରେ ମୁଁ ଓଡ଼ିଶାବାସୀଙ୍କୁ ମୋର ଶୁଭେଚ୍ଛା ଓ ହାର୍ଦ୍ଦିକ ଅଭିନନ୍ଦନ ଜ୍ଞାପନ କରୁଛି ।

ମହାନ୍ ତଥା ବିପୁଳ ପ୍ରାକୃତିକ ସଂପଦ, ଖଣି ଓ ଖଣିଜ ପଦାର୍ଥ, କଳା ଓ ହସ୍ତଶିଳ୍ପ, ଧର୍ମ ନିରପେକ୍ଷ ସାମାଜିକ ପରମ୍ପରା ଏବଂ ଶାନ୍ତିପ୍ରିୟ ଜନସାଧାରଣଙ୍କୁ ନେଇ ଓଡ଼ିଶା ଜାଜ୍ଜ୍ୱଲ୍ୟମାନ ଭାରତୀୟ ସାଂସ୍କୃତିକ ପରମ୍ପରାକୁ ଅନେକାଂଶରେ ବଜାୟ ରଖିପାରିଛି । ରାଜ୍ୟର ଦ୍ରୁତ ଓ ନିରନ୍ତର ପ୍ରଗତି ନିମନ୍ତେ ଏହି ସମ୍ବଳଗୁଡ଼ିକୁ ସଂପୂର୍ଣ୍ଣ ଭାବରେ ସଦୁପଯୋଗ କରାଯାଇପାରିବ ।

ଓଡ଼ିଶା ସଂପ୍ରତି ଅର୍ଥନୈତିକ ପୁନରୁତ୍ଥାନ ପଥରେ ଅଗ୍ରସର । ରାଜ୍ୟରେ କ୍ରମବର୍ଦ୍ଧିଷ୍ଣୁ ପୁଂଜି ବିନିଯୋଗ ହିଁ ଏହି ପ୍ରଗତିର ସୂଚକାଙ୍କ । ମୁଁ ଆଶା କରେ, ଅର୍ଥନୀତିର କେତେକ ଗୁରୁତ୍ୱପୂର୍ଣ୍ଣ କ୍ଷେତ୍ରରେ ଜାରି ରହିଥିବା ଆର୍ଥିକ ସଂସ୍କାର ହିଁ ଦାରିଦ୍ର୍ୟ ଓ ଅନଗ୍ରସରତାକୁ ଦୂର କରିବାର ସ୍ୱତନ୍ତ୍ର ଦାୟିତ୍ୱକୁ ନିର୍ବାହ କରିବା ଦିଗରେ ରାଜ୍ୟକୁ ସମର୍ଥ କରାଇବ । ମୋର ଦୃଢ଼ ବିଶ୍ୱାସ ରାଜ୍ୟର ଏହି ସଫଳତା ହିଁ ଆସନ୍ତାକାଲିର ଭାରତକୁ ଶକ୍ତିଶାଳୀ କରାଇବ ।

ମୁଁ ଉତ୍ସବର ସଫଳତା କାମନା କରୁଛି ।

ନୂଆଦିଲ୍ଲୀ

୨୦ ମାର୍ଚ୍ଚ, ୨୦୦୬

(ଭୈରୋଁ ସିଂ ଶେଖାୱତ)






## ଉତ୍କଳ ଦିବସ -୨୦୦୬ ପାଳନ ଅବସରରେ

## ମାନ୍ୟବର ପ୍ରଧାନମନ୍ତ୍ରୀ

## **ଡକ୍ଟର ମନମୋହନ ସିଂହଙ୍କ**

## **ବାର୍ତ୍ତା**

ରାଜ୍ୟଗୁଡ଼ିକର ଭାଷାଭିତ୍ତିକ ପୁନର୍ଗଠନ ନିମନ୍ତେ ଆମର ଐତିହାସିକ ପ୍ରଚେଷ୍ଟାର ଫଳସ୍ୱରୂପ ୧୯୩୬ ମସିହା ଏପ୍ରିଲ ୧ ତାରିଖରେ ଭାଷା ଆଧାରରେ ଆମ ଦେଶର ପ୍ରଥମ ରାଜ୍ୟ ରୂପେ ଓଡ଼ିଶା ପ୍ରଦେଶର ଗଠନ ଏକ ଉଲ୍ଲେଖନୀୟ ଘଟଣା । ସ୍ୱତନ୍ତ୍ର ଉତ୍କଳ ଗଠନ ଆନ୍ଦୋଳନର କର୍ଣ୍ଣଧାର ଭାବେ ଉତ୍କଳମଣି ଗୋପବନ୍ଧୁ ଦାସ, ମଧୁସୂଦନ ଦାସ, ମହାରାଜା କୃଷ୍ଣଚନ୍ଦ୍ର ଗଜପତି ଏବଂ ଆହୁରି ଅନେକ ଅଗ୍ରଗଣ୍ୟ ନେତାଙ୍କ ଦୂରଦୃଷ୍ଟି ତଥା ଜାତିର ପିତା ମହାତ୍ମା ଗାନ୍ଧୀଙ୍କର ଏଥିପ୍ରତି ଦୃଢ଼ ସମର୍ଥନ ଯୋଗୁଁ ଓଡ଼ିଶା ଏକ ସ୍ୱତନ୍ତ୍ର ପ୍ରଦେଶ ରୂପେ ପରିଚିତ ହୋଇଥିଲା । ଏଥିପାଇଁ ଓଡ଼ିଶାର ଜନସାଧାରଣ ଏବଂ ସର୍ବୋପରି ସମଗ୍ର ଜାତି ସେମାନଙ୍କ ପାଖରେ ଚିର ଋଣୀ । ଓଡ଼ିଶାର ସମୃଦ୍ଧ ଇତିହାସ, ଏହାର ଅନୁପମ ସାହିତ୍ୟ ଏବଂ ସାଂସ୍କୃତିକ ଐତିହ୍ୟ ଏବଂ ଉତ୍କର୍ଷ ହସ୍ତଶିଳ୍ପ ସମଗ୍ର ବିଶ୍ୱକୁ ଆକୃଷ୍ଟ କରିଛି । ଭିନ୍ନ ଭିନ୍ନ କ୍ଷେତ୍ରରେ ଓଡ଼ିଶାର ପ୍ରଗତି ଓ ସମୃଦ୍ଧି ଏହି ରାଜ୍ୟର ଲୋକମାନଙ୍କର କଠିନ ପରିଶ୍ରମ ଓ ନିଷ୍ଠା ଏ ରାଜ୍ୟକୁ ଅଧିକ ଉନ୍ନତ ଏବଂ ସମୃଦ୍ଧିଶାଳୀ କରିବାର ପ୍ରତିଶ୍ରୁତିବଦ୍ଧତା ଯୋଗୁଁ ସମ୍ଭବ ହୋଇପାରିଛି । ମୁଁ ନିଶ୍ଚିତ ଯେ ଓଡ଼ିଶା ଦିବସ ପାଳନ ସରକାର ତଥା ରାଜ୍ୟର ଅଧିବାସୀମାନଙ୍କୁ ରାଜ୍ୟକୁ ପ୍ରଗତି ପଥରେ ଆଗେଇ ନେବା ପାଇଁ ପ୍ରେରଣା ଯୋଗାଇବ ।

ଓଡ଼ିଶା ଦିବସ ପାଳନର ସଫଳତା ପାଇଁ ସମ୍ପୃକ୍ତ ସମସ୍ତଙ୍କୁ ଅଭିନନ୍ଦନ ଓ ଶୁଭେଚ୍ଛା ଜଣାଇବା ଅବସରରେ ମୁଁ ବିଶେଷ ଆନନ୍ଦିତ ।

Manmohan Singh

**(ମନମୋହନ ସିଂହ)**

ନୂଆଦିଲ୍ଲୀ

ମାର୍ଚ୍ଚ ୨୨, ୨୦୦୬



# ଉତ୍କଳ ଦିବସ -୨୦୦୬ ପାଳନ ଅବସରରେ
# ମହାମାନ୍ୟ ରାଜ୍ୟପାଳ
# ଶ୍ରୀ ରାମେଶ୍ୱର ଠାକୁରଙ୍କ
# ବାର୍ତ୍ତା

**ପ୍ରିୟ ଭାଇ ଓ ଭଉଣୀମାନେ,**

ଆଜି ପବିତ୍ର ଉତ୍କଳ ଦିବସ ପାଳନ ଅବସରରେ ଆପଣମାନଙ୍କୁ ସମ୍ବୋଧିତ କରିବା ମୋ' ପାଇଁ ଗର୍ବ ଓ ସୌଭାଗ୍ୟର ବିଷୟ ।

ଓଡ଼ିଶାର ଜନସାଧାରଣ ତଥା ସମସ୍ତ ଓଡ଼ିଆ ଭାଷାଭାଷୀ ଜନତାଙ୍କ ପାଇଁ ଏପ୍ରିଲ୍ ପହିଲା ଏକ ସ୍ମରଣୀୟ ଦିବସ । ୭୦ ବର୍ଷ ତଳେ ନିଜ ପାଇଁ ଏକ ସ୍ୱତନ୍ତ୍ର ରାଜ୍ୟ ଗଠନ ନିମନ୍ତେ ଓଡ଼ିଆମାନଙ୍କର ବହୁଦିନର ସ୍ୱପ୍ନ ଆଜିର ଦିନରେ ଏକ ସ୍ୱତନ୍ତ୍ର ପ୍ରଦେଶ ଗଠନ ହେବା ଦ୍ୱାରା ସାକାର ହୋଇଥିଲା । ଭାଷାକୁ ଭିତ୍ତିକରି ଏକ ରାଜ୍ୟ ଗଠିତ ହେବାରେ ଓଡ଼ିଶା ହିଁ ସମଗ୍ର ଦେଶରେ ପ୍ରଥମ ।

ଏହି ପବିତ୍ର ଅବସରରେ, ଓଡ଼ିଆମାନଙ୍କ ପାଇଁ ଏକ ସ୍ୱତନ୍ତ୍ର ରାଜ୍ୟ ଗଠନରେ ଯେଉଁମାନଙ୍କର ବିଶେଷ ଭୂମିକା ଥିଲା ତଥା ଯେଉଁ ବରପୁତ୍ରମାନଙ୍କର ନିରବଚ୍ଛିନ୍ନ ପ୍ରୟାସ ଫଳରେ ଏହା ସମ୍ଭବ ହୋଇଥିଲା, ଆମେ ସେମାନଙ୍କୁ ଗର୍ବର ସହ ସ୍ମରଣ କରୁଛୁ । ଉତ୍କଳଗୌରବ ମଧୁସୂଦନ ଦାସ, ଉତ୍କଳମଣି ଗୋପବନ୍ଧୁ ଦାସ, ମହାରାଜା କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବ, ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜଦେଓ, ବ୍ୟାସକବି ଫକୀର ମୋହନ ସେନାପତି, ସ୍ୱଭାବ କବି ଗଙ୍ଗାଧର ମେହେର ଏବଂ ଆହୁରି ଅନେକଙ୍କୁ ବିନମ୍ର ଶ୍ରଦ୍ଧାଞ୍ଜଳି ଜଣାଇ ଆମେ ସେହିମାନଙ୍କର ନିଃସ୍ୱାର୍ଥପର ତ୍ୟାଗକୁ ସ୍ମରଣ କରୁଛୁ ଏବଂ ସେମାନଙ୍କର ମହାନ୍ ଆଦର୍ଶ ଦ୍ୱାରା ଅନୁପ୍ରାଣିତ ହେଉଛୁ ।

ପ୍ରାଚୀନ ଓଡ଼ିଶା ତା'ର ସମୃଦ୍ଧ ସାମରିକ ପରମ୍ପରା ତଥା ନୌବାଣିଜ୍ୟ, ସାଂସ୍କୃତିକ ଏବଂ ସ୍ଥାପତ୍ୟର ଐତିହ୍ୟ ପାଇଁ ପ୍ରସିଦ୍ଧ ଥିଲା । ଏକ ଜାଜ୍ୱଲ୍ୟମାନ ସାହିତ୍ୟିକ ପରମ୍ପରା ଦ୍ୱାରା ଓଡ଼ିଆମାନଙ୍କର ସୃଷ୍ଟି ସେମାନଙ୍କର ଦୃଢ଼ ସାଂସ୍କୃତିକ ପରିଚୟକୁ ପ୍ରତିଫଳିତ କରିଆସିଛି । ବୟନ ଓ ଚିତ୍ରକଳା ଏବଂ ପଥର-ଶିଙ୍ଘ-ତାରକସି କାମ ଉତ୍କଳୀୟ କଳାର ନୈପୁଣ୍ୟ ଓ ଓଡ଼ିଆ କାରୀଗରର ସୌନ୍ଦର୍ଯ୍ୟବୋଧକୁ ପ୍ରକାଶ କରେ ।

ଶାନ୍ତିର ବାର୍ତ୍ତାବହ ଭାବେ ଓଡ଼ିଶାର ସୁନାମ ସୁପ୍ରତିଷ୍ଠିତ । ଏହା ହେଉଛି ସେହି ପବିତ୍ର ଭୂମି ଯେଉଁଠାରୁ ଐତିହାସିକ କଳିଙ୍ଗ ଯୁଦ୍ଧ ପରେ ଶାନ୍ତିର ବାର୍ତ୍ତା ପୃଥିବୀର ବିଭିନ୍ନ କୋଣରେ ପ୍ରଚାରିତ ହୋଇଥିଲା । ଏକ ଗୌରବମୟ ଜାତି ହିସାବରେ ଓଡ଼ିଆମାନେ ସର୍ବଦା ସମ୍ମାନିତ ହୋଇଆସିଛନ୍ତି ।

ଓଡ଼ିଶାର ବିପୁଳ ପ୍ରାକୃତିକ ସମ୍ପଦର ପୂର୍ଣ୍ଣ ବିନିଯୋଗ କରିବାକୁ ପଡ଼ିବ । ସୁତରାଂ ମୋ' ସରକାର ଖଣି ଓ ଖଣିଜକୁ ଆଧାର କରି ନୂତନ ଶିଳ୍ପ ପ୍ରତିଷ୍ଠା କରିବା କ୍ଷେତ୍ରରେ ଏକ ଗଠନମୂଳକ ଆଭିମୁଖ୍ୟ ଗ୍ରହଣ କରିଛନ୍ତି । ଆନ୍ତର୍ଜାତିକ ସ୍ତରରେ ଶିଳ୍ପ ଓ ବାଣିଜ୍ୟ କ୍ଷେତ୍ରରେ ସୁନାମ ଅର୍ଜନ କରିଥିବା ଅନେକ ଇସ୍ପାତ କମ୍ପାନୀଙ୍କ ସହ ବୁଝାମଣାପତ୍ର ସ୍ୱାକ୍ଷରିତ ହୋଇପାରିଛି । ରାଜ୍ୟର ପ୍ରାକୃତିକ ସମ୍ପଦର ସୁବିନିଯୋଗ ହିଁ ଏହି ରାଜ୍ୟ ପାଇଁ ଏକ ସମୃଦ୍ଧମୟ ଯୁଗର ସୂତ୍ରପାତ କରାଇବ ।

ବିକାଶର ଧାରାରେ ସାଧାରଣତଃ ଶିଳ୍ପାୟନ ଓ ପୁନର୍ବାସ ମଧ୍ୟରେ ଏକ ବିରୋଧାଭାଷ ପରିଲକ୍ଷିତ ହୋଇଥାଏ । ଯାହା ହେଉ, ଶିଳ୍ପାୟନ ପ୍ରକ୍ରିୟାରେ ଆକ୍ରାନ୍ତ ହୋଇଥିବା ଜନସାଧାରଣଙ୍କର ଉପଯୁକ୍ତ ପୁନର୍ବାସ ଓ ଥଇଥାନ ନିଶ୍ଚିତ କରାଇବା ପାଇଁ ମୋ' ସରକାରଙ୍କ ଦୃଢ଼ ସଂକଳ୍ପ ଓ ଅବିଚଳ ପ୍ରତିଶ୍ରୁତିବଦ୍ଧତା ରହିଛି । ନୂତନ ଶିଳ୍ପ ଗଢ଼ି ଉଠୁଥିବା ଅଞ୍ଚଳମାନଙ୍କରେ ବିସ୍ଥାପିତ ଲୋକମାନଙ୍କର ପୁନର୍ବାସ ଓ ଥଇଥାନ କ୍ଷେତ୍ରରେ ରାଜ୍ୟ ସରକାର ଗ୍ରହଣ କରୁଥିବା ନୀତି ନିଶ୍ଚିତ ଭାବରେ ସମଗ୍ର ଦେଶରେ ଦୀର୍ଘ ଦିନରୁ ଲାଗି ରହିଥିବା ଏହି ସମସ୍ୟାର ଅର୍ଥପୂର୍ଣ୍ଣ ସମାଧାନ ଦିଗରେ ଏକ ଅନନ୍ୟ ଉଦାହରଣ ହୋଇ ରହିବ ।

କୃଷି କ୍ଷେତ୍ରର ବିକାଶକୁ ମୋ' ସରକାର ଅଗ୍ରାଧିକାର ଦେଉଛନ୍ତି । କାରଣ ରାଜ୍ୟର ମୋଟ ଜନସାଧାରଣଙ୍କର ଶତକଡ଼ା ୭୦ ଭାଗରୁ ଊର୍ଦ୍ଧ୍ୱ ଲୋକ ନିଜର ଜୀବିକା ନିର୍ବାହ ପାଇଁ କୃଷି ଉପରେ ହିଁ ନିର୍ଭର କରିଥାନ୍ତି । କୃଷି ନୀତିର ପୁନଃପୁନଃ ତର୍ଜମା ଓ ନିରୀକ୍ଷଣ ମାଧ୍ୟମରେ କୃଷି ଓ ତା'ର ଆନୁଷଙ୍ଗିକ କ୍ଷେତ୍ରରେ ମୋଟ ଆଭ୍ୟନ୍ତରୀଣ ଉତ୍ପାଦନ (ଜି.ଡି.ପି.) ବୃଦ୍ଧି କରାଇବା, ଜଳସେଚନ ବିଶେଷତଃ କ୍ଷୁଦ୍ର ଜଳସେଚନ ପ୍ରକଳ୍ପର ବିକାଶ, ଜୈବିକ ସମ୍ପଦର ସଂରକ୍ଷଣ ଓ ବିନିଯୋଗ, ଅଧିକ ଅମଳକ୍ଷମ ବିଭିନ୍ନ ଅର୍ଥକରୀ ଫସଲ ଚାଷ ଏବଂ ସ୍ୱଳ୍ପ ବ୍ୟୟରେ ଅଧିକ ଉତ୍ପାଦନ ଇତ୍ୟାଦି କେତେକ ବିଷୟକୁ ଅଗ୍ରାଧିକାର ଭିତ୍ତିରେ କାର୍ଯ୍ୟକାରୀ କରିବାକୁ ସରକାର ଚିହ୍ନଟ କରିଛନ୍ତି ।

ସ୍ୱୟଂ ସହାୟକ ଗୋଷ୍ଠୀ ଜରିଆରେ ମହିଳାମାନଙ୍କ ଆର୍ଥିକ କ୍ଷମତା ବୃଦ୍ଧି କରାଇବା, ସମନ୍ୱିତ ଶିଶୁ ବିକାଶ ଯୋଜନାକୁ ସାର୍ବଜନୀନ କରାଇବା, ଓଡ଼ିଶାର ଗ୍ରାମାଞ୍ଚଳର ବିକାଶ ପାଇଁ ବହୁମୁଖୀ ପଦକ୍ଷେପ ଗ୍ରହଣ କରିବା ଏବଂ ସାଧାରଣ ମଣିଷର ଜୀବନଧାରଣର ମାନ ବୃଦ୍ଧି କରିବା ଇତ୍ୟାଦି କ୍ଷେତ୍ରରେ ଉଲ୍ଲେଖନୀୟ ପ୍ରଗତି ହାସଲ କରାଯାଇପାରିଛି । ଲୋକମାନଙ୍କର ସ୍ୱାସ୍ଥ୍ୟର ଉନ୍ନତିକଳ୍ପେ ତୃଣମୂଳ ସ୍ତରରେ ସ୍ୱାସ୍ଥ୍ୟସେବା ପ୍ରଦାନ  ବ୍ୟବସ୍ଥାକୁ ସୁଦୃଢ଼ କରିବା ପାଇଁ ମୋ' ସରକାର ଆପ୍ରାଣ ଉଦ୍ୟମ ଜାରି ରଖିଛନ୍ତି । ଗ୍ରାମାଞ୍ଚଳର ମୂଳିଆ ଶ୍ରେଣୀ ପାଇଁ ନିଯୁକ୍ତି ନିଶ୍ଚିତ କରାଇବାକୁ ବିଭିନ୍ନ ଯୋଜନା କାର୍ଯ୍ୟକାରୀ କରାଯାଉଛି ।

ଆମେ ଏବେ ସୂଚନା ଯୁଗରେ ବାସ କରୁଛେ । ପୃଥିବୀ କ୍ରମଶଃ ଜ୍ଞାନର ଏକ ମିଳନ କେନ୍ଦ୍ରରେ ପରିଣତ ହେବାରେ ଲାଗିଛି, କାରଣ ସୂଚନା ବିଜ୍ଞାନ ଓ ଯୋଗାଯୋଗ ଜ୍ଞାନ କୌଶଳର ଗୁରୁତ୍ୱ ଦିନକୁ ଦିନ ବଢ଼ିବାରେ ଲାଗିଛି ତଥା ଏହାର ପ୍ରଭାବ ଅନ୍ୟାନ୍ୟ କ୍ଷେତ୍ର ଉପରେ ଅନୁଭୂତ ହେବାରେ ଲାଗିଛି । ନିରନ୍ତର ବିକାଶ ଏବଂ ସୂଚନା ପ୍ରଯୁକ୍ତି ବିଜ୍ଞାନର ବ୍ୟାପକ ବ୍ୟବହାର ହିଁ ଦ୍ରୁତ ଅଭିବୃଦ୍ଧିର ଚାବିକାଠି ଏବଂ ଏହା ହିଁ ଜଗତୀକରଣ ଅର୍ଥନୀତିରେ ଏକ ପ୍ରତିଦ୍ୱନ୍ଦ୍ୱିତାମୂଳକ ସାମର୍ଥ୍ୟ ହାସଲ କରିବା ପାଇଁ ରାଜ୍ୟକୁ ପ୍ରସ୍ତୁତ କରାଇବ । ମୋ' ସରକାର ସେଥିନିମନ୍ତେ ସାଧାରଣ ମଣିଷ ପାଇଁ ସୂଚନା ପ୍ରଯୁକ୍ତି ବିଜ୍ଞାନ କ୍ଷେତ୍ରଗୁଡ଼ିକୁ ଉପଲବ୍ଧ କରାଇବାକୁ ପ୍ରୟାସ କରୁଛନ୍ତି ।

ଉତ୍ତମ ପ୍ରଶାସନ ଆଜିର ଆବଶ୍ୟକତା । ସ୍ୱଚ୍ଛ, ଉତ୍ତରଦାୟୀ, ଲୋକାଭିମୁଖୀ ପ୍ରଶାସନ ଯୋଗାଇ ଦେବାକୁ ପ୍ରତିଶ୍ରୁତିବଦ୍ଧ ମୋ' ସରକାର ଅତ୍ୟନ୍ତ ନିଷ୍ଠାର ସହିତ ରାଜ୍ୟରେ ସୂଚନା ଅଧିକାର ଆଇନ-୨୦୦୫ କାର୍ଯ୍ୟକାରୀ କରିଛନ୍ତି । ଏହି ଆଇନ କାର୍ଯ୍ୟକାରୀ ହେବା ଫଳରେ ସମସ୍ତ ପ୍ରଶାସନିକ ବ୍ୟବସ୍ଥା ଏବେ କ୍ରମଶଃ ସ୍ୱଚ୍ଛ ପ୍ରଶାସନରେ ରୂପାନ୍ତରିତ ହେବାକୁ ଯାଉଛି । ସରକାରୀ ବିଭାଗ ଏବଂ ଅନ୍ୟାନ୍ୟ ସରକାରୀ ସଂସ୍ଥାଗୁଡ଼ିକର କାର୍ଯ୍ୟକଳାପ ସମ୍ପର୍କରେ ସାଧାରଣ ନାଗରିକର ସୂଚନା ହାସଲ କରିବା ପ୍ରକ୍ରିୟା ଦ୍ରୁତ ଗତିରେ ବୃଦ୍ଧି ପାଇଛି ଏବଂ ପୂର୍ବାପେକ୍ଷା ସରକାର ଅଧିକରୁ ଅଧିକ ଲୋକଙ୍କର ନିକଟବର୍ତ୍ତୀ ହେବାରେ ଲାଗିଛନ୍ତି ।

ଆଜିର ଓଡ଼ିଶା ଅଜସ୍ର ସମ୍ଭାବନାରେ ପରିପୂର୍ଣ୍ଣ । ଅର୍ଥନୈତିକ ପ୍ରଗତିର ଦ୍ୱାରଦେଶରେ ପହଞ୍ଚି ଆଜି ଆମ ରାଜ୍ୟ ଅଭୂତପୂର୍ବ ଅଭିବୃଦ୍ଧି ଓ ସମୃଦ୍ଧି ପାଇଁ ପ୍ରସ୍ତୁତ । ଆଜିର ଏହି ପବିତ୍ର ଦିବସରେ ଆସନ୍ତୁ, ସମସ୍ତେ ମିଳିମିଶି ପ୍ରଗତିର ଏହି ବେଗକୁ ତ୍ୱରାନ୍ୱିତ କରାଇବା ।

**ବନ୍ଦେ ଉତ୍କଳ ଜନନୀ**

**ଜୟହିନ୍ଦ**



# ଉତ୍କଳ ଦିବସ -୨୦୦୬ ପାଳନ ଅବସରରେ
## ମାନ୍ୟବର ମୁଖ୍ୟମନ୍ତ୍ରୀ
## **ଶ୍ରୀ ନବୀନ ପଟ୍ଟନାୟକଙ୍କ**
## **ବାର୍ତ୍ତା**

**ପ୍ରିୟ ଭାଇ ଓ ଭଉଣୀମାନେ,**

ପବିତ୍ର ଉତ୍କଳ ଦିବସ ପାଳନର ଶୁଭ ଅବସରରେ ମୁଁ ଆପଣମାନଙ୍କୁ ମୋର ଶୁଭେଚ୍ଛା ଓ ଅଭିନନ୍ଦନ ଜଣାଉଛି ।

ଉତ୍କଳ ଦିବସ ଆମ ସମସ୍ତଙ୍କ ପାଇଁ ଏକ ମହାନ୍ ଓ ପବିତ୍ର ଦିବସ । ଏହି ଦିନ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠିତ ହୋଇଥିଲା । ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନରେ ଉତ୍କଳ ଜନନୀର ଯେଉଁ ବରପୁତ୍ରମାନଙ୍କର ବିଶେଷ ଅବଦାନ ରହିଛି ମୁଁ ସେମାନଙ୍କ ପ୍ରତି ମୋର ଗଭୀର ଶ୍ରଦ୍ଧାଞ୍ଜଳି ଜଣାଉଛି । ଯେଉଁମାନେ ଓଡ଼ିଶାର ସାହିତ୍ୟ ଓ ସଂସ୍କୃତିକୁ ସମୃଦ୍ଧ କରିଛନ୍ତି, ସେମାନଙ୍କୁ ମଧ୍ୟ ମୋର ସମ୍ମାନ ଜଣାଉଛି ।

ଓଡ଼ିଶାର ଇତିହାସ ଓ ପରମ୍ପରା ଅତି ମହାନ୍ । ଓଡ଼ିଆ ଜାତି ଦିନେ ବିଶ୍ୱ ଦରବାରରେ ସୁନାମ ଲାଭ କରିଥିଲା । ଓଡ଼ିଶାର ରାଜାମାନେ ରାଜ୍ୟ ଜୟ କରି ଏହାର ସୀମାକୁ ବଢ଼ାଇଥିଲେ । ଓଡ଼ିଆ ଶିଳ୍ପୀ ଓ କାରିଗରମାନେ ସୁନ୍ଦର ସୁନ୍ଦର ମନ୍ଦିରମାନ ତିଆରି କରିଥିଲେ । ଶିଳ୍ପ, ବାଣିଜ୍ୟ, ନୃତ୍ୟ, ସଂଗୀତ ସବୁଥିରେ ଓଡ଼ିଆ ଜାତି ଥିଲା ଆଗୁଆ ।

ଆଜି ଓଡ଼ିଶାର ପୂର୍ବ ଗୌରବ ଫେରାଇ ଆଣି ଏକ ସମୃଦ୍ଧ ଓଡ଼ିଶା ଗଠନ ପାଇଁ କାମ ଆରମ୍ଭ ହୋଇଛି । ଓଡ଼ିଶାର ପ୍ରଚୁର ସଂପଦକୁ ବିନିଯୋଗ କରି ନୂଆ ଶିଳ୍ପ ଗଢ଼ିବା ପାଇଁ ଯୋଜନା ହୋଇଛି । ବିଶେଷ କରି, ଇସ୍ପାତ ଓ ଆଲୁମିନିୟମ କ୍ଷେତ୍ରରେ ଅନେକଗୁଡ଼ିଏ ନୂଆ କାରଖାନା ପ୍ରତିଷ୍ଠା ହେବାକୁ ଯାଉଛି । ଏହାଦ୍ୱାରା ଆମର ଯୁବକ ଯୁବତୀମାନଙ୍କ ପାଇଁ ନିଯୁକ୍ତି ସୁଯୋଗ ସୃଷ୍ଟି ହେବ ଓ ରାଜ୍ୟର ରାଜସ୍ୱ ବଢ଼ିବ । ରାଜ୍ୟରେ ଇସ୍ପାତ ଓ ଆଲୁମିନିୟମ ଶିଳ୍ପ ପ୍ରତିଷ୍ଠା ପାଇଁ ରାଜ୍ୟ ସରକାର ତେୟାଳିଶଟି କମ୍ପାନୀ ସହିତ MoU କରିଛନ୍ତି । ଏହିସବୁ ଶିଳ୍ପ ଦ୍ୱାରା ୫୮ ମିଲିଅନ ଟନ୍ ଇସ୍ପାତ ଉତ୍ପାଦିତ ହେବ । ବର୍ତ୍ତମାନ ସୁଦ୍ଧା ତେରଟି କମ୍ପାନୀରୁ Partial Production ଆରମ୍ଭ ହେଲାଣି । ଏଥିରେ ସାତ ହଜାର ଲୋକଙ୍କୁ Direct employment ଦିଆଯାଇପାରିଛି । କାରଖାନା ପ୍ରତିଷ୍ଠା ସମୟରେ ପରିବେଶ ପ୍ରତି ଧ୍ୟାନ ଦିଆଯିବ ଏବଂ ଏହାଦ୍ୱାରା ଯେଉଁମାନେ ଜମି ଓ ଘର ହରାଇବେ, ସେମାନଙ୍କ ପାଇଁ ଏକ ଭଲ ଥଇଥାନ ନୀତି ଘୋଷଣା କରାଯିବ ।

ଚାଷ ଆମ ଅର୍ଥନୀତିର ମେରୁଦଣ୍ଡ । ଚାଷର ସୁବିଧା ପାଇଁ କୃଷି, ଶିଳ୍ପ ପ୍ରତିଷ୍ଠା ଉପରେ ଆମ ସରକାର ଜୋର ଦେଉଛି । ଫୁଲ, ଫଳ, ପରିବା ଓ ମସଲା ଚାଷ ଉପରେ ଆମେ ଗୁରୁତ୍ୱ ଦେଉଛୁ । ଚାଷୀ ପାଇଁ ଉପଯୁକ୍ତ ବଜାର ସୃଷ୍ଟି କରିବାକୁ ମଧ୍ୟ ଆମ କାର୍ଯ୍ୟକ୍ରମରେ ଗୁରୁତ୍ୱ ଦିଆଯାଇଛି ।

ଆମ ରାଜ୍ୟରେ ୨୫ ଭାଗ ଆଦିବାସୀ ବାସ କରନ୍ତି । ଆମର ଆଦିବାସୀ ସଂସ୍କୃତି ଓ ଓଡ଼ିଶାର ସଂସ୍କୃତିକୁ ସମୃଦ୍ଧ କରିଛି । ଆଦିବାସୀ ଅଞ୍ଚଳର ଉନ୍ନତି ଓ ଆଦିବାସୀମାନଙ୍କର ରୋଜଗାର ବଢ଼ାଇବା ପାଇଁ ମୋ ସରକାର ଅନେକ କାର୍ଯ୍ୟକ୍ରମ ହାତକୁ ନେଇଛି । ଚାଷୀ, ମୂଲିଆ, ଗରିବ ଲୋକ ଓ ଆଦିବାସୀ, ହରିଜନଙ୍କ ଉନ୍ନତି ଦ୍ୱାରା ହିଁ ଆମ ରାଜ୍ୟର ଉନ୍ନତି ହୋଇପାରିବ । ସେଥିପାଇଁ ଏହା ଉପରେ ମୁଁ ସବୁବେଳେ ଗୁରୁତ୍ୱ ଦେଇଆସିଛି ।

ମହିଳାମାନଙ୍କ ବିକାଶ ପାଇଁ ମିଶନ ଶକ୍ତି କାର୍ଯ୍ୟକ୍ରମ ଆମ ରାଜ୍ୟରେ ଜୋରସୋରରେ ଚାଲିଛି । ଏହି କାର୍ଯ୍ୟକ୍ରମ ମହିଳାମାନଙ୍କ ଭିତରେ ନୂଆ ଚେତନା ଆଣିଛି ଏବଂ ଏହି କାର୍ଯ୍ୟକ୍ରମ ଏକ ଗଣ ଆନ୍ଦୋଳନରେ ପରିଣତ ହୋଇଛି । ଆଗାମୀ ଦିନରେ ଏହାକୁ ଆଗେଇ ନେବା ପାଇଁ ଆମେ ଯୋଜନା ରଖିଛୁ ।

ମୋ ସରକାର Tourism, IT ଓ Infrastructureର ବିକାଶ ଉପରେ ଗୁରୁତ୍ୱ ଦେଉଛି । ଗ୍ରାମାଞ୍ଚଳର ଉନ୍ନତି ମୋର ଲକ୍ଷ୍ୟ । ଗାଁକୁ ଭଲ ରାସ୍ତା, ପିଇବା ପାଣି, ଶିକ୍ଷା, ସ୍ୱାସ୍ଥ୍ୟ ସୁବିଧା ଯୋଗାଇ ଦେବାପାଇଁ କାମ ଜୋରସୋରରେ ଚାଲିଛି । ରାଜ୍ୟର ଏକ ହଜାର ଜନସଂଖ୍ୟା ବିଶିଷ୍ଟ ଆଦିବାସୀ ଅଞ୍ଚଳରେ ପାଞ୍ଚଶହ ଜନସଂଖ୍ୟା ବିଶିଷ୍ଟ ସବୁ ଗାଁକୁ ସବୁଦିନିଆ ରାସ୍ତା ଦ୍ୱାରା ସଂଯୋଗ କରିବା ପାଇଁ ସରକାର ସ୍ଥିର କରିଛନ୍ତି । ଏଥିପାଇଁ ଏକ masterplan ତିଆରି କରାଯାଉଛି । ରାଜ୍ୟର ପ୍ରତ୍ୟେକ ବ୍ଲକ୍‌ରେ ୩୫ ଭାଗ ଜମିକୁ ପାଣି ଯୋଗାଇ ଦେବା ପାଇଁ ଏକ masterplan ପ୍ରସ୍ତୁତ କରାଯାଉଛି । ଗୋପାଳପୁର ବନ୍ଦର ଓ ଧାମରା ବନ୍ଦରର ବିକାଶ ପାଇଁ ପଦକ୍ଷେପ ନିଆଯାଇଛି ।

ଏକ ସମୃଦ୍ଧ ଓଡ଼ିଶା ଗଠନ କରିବା ମୋର ଲକ୍ଷ୍ୟ । ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ଆଶୀର୍ବାଦରେ ଓ ଆପଣମାନଙ୍କ ଶୁଭେଚ୍ଛା ଦ୍ୱାରା ଏହି ଲକ୍ଷ୍ୟ ପୂରଣ ହୋଇପାରିବ । ଆସନ୍ତୁ, ଏକ ସମୃଦ୍ଧ ଓଡ଼ିଶା ଗଠନ କରିବା ପାଇଁ ଆଜିର ପବିତ୍ର ଉତ୍କଳ ଦିବସରେ ଆମେ ସମସ୍ତେ ଶପଥ ନେବା ।

**ବନ୍ଦେ ଉତ୍କଳ ଜନନୀ**



# ଉତ୍କଳ ଦିବସ - ୨୦୦୬ ପାଳନ ଅବସରରେ

## ମାନ୍ୟବର ସୂଚନା ଓ ଲୋକ ସଂପର୍କ ଏବଂ କ୍ରୀଡ଼ା ତଥା ଯୁବସେବା ମନ୍ତ୍ରୀ

## ଶ୍ରୀ ଦେବାଶିଷ ନାୟକଙ୍କ

## ବାର୍ତ୍ତା

ପବିତ୍ର ୭୧ତମ ଉତ୍କଳ ଦିବସ ପାଳନର ଶୁଭ ଅବସରରେ ମୁଁ ରାଜ୍ୟର ସମସ୍ତ ଭାଇଭଉଣୀମାନଙ୍କୁ ମୋର ଆନ୍ତରିକ ଅଭିନନ୍ଦନ ଓ ହାର୍ଦ୍ଦିକ ଶୁଭେଚ୍ଛା ଜଣାଉଛି ।

ଜନନୀ ଓ ଜନ୍ମଭୂମି ଚିର ନମସ୍ୟା । ଯୁଗେ ଯୁଗେ ଓଡ଼ିଆ ଜାତି ତା'ର ନିଜସ୍ୱ ଓ ସ୍ୱାଭିମାନ ବଜାୟ ରଖି ଆସିଛି । ଏ ଜାତିର ଇତିହାସ ଗୌରବରେ ଗୌରବାନ୍ୱିତ । ଏ ଜାତିର କଳା, ସ୍ଥାପତ୍ୟର ପଟାନ୍ତର ନାହିଁ । ଓଡ଼ିଶୀ ନୃତ୍ୟ, ଓଡ଼ିଶୀ ସଙ୍ଗୀତ ଏହାର ସମ୍ପୂର୍ଣ୍ଣ ନିଜସ୍ୱ । ଆଜିର ଓଡ଼ିଶା ଅତୀତରେ କଳିଙ୍ଗ, ଉତ୍କଳ, କଙ୍ଗୋଦ ଓ କୋଶଳ ନାମରେ ପରିଚିତ ଥିଲା । ମହାନ୍ ଐତିହ୍ୟ ସମୃଦ୍ଧ ସଂସ୍କୃତିର ଅଧିକାରୀ ଏହି ଉତ୍କଳ ଏକଦା ଭାରତବର୍ଷରେ ନୁହେଁ, ସମଗ୍ର ପ୍ରାଚ୍ୟ ଭୂଖଣ୍ଡରେ ମହାଭାରତୀୟ ସଂସ୍କୃତିର ଭାବଧାରା ପ୍ରଚାର ଓ ପ୍ରସାର କରିଥିଲା । ଓଡ଼ିଆ ସାଧବପୁଅର ବୋଇତଯାତ୍ରା ଜାଭା, ସୁମାତ୍ରା, ଇଣ୍ଡୋନେସିଆ, ବାଲି ପ୍ରଭୃତି ସୁଦୂର ପ୍ରାଚ୍ୟ ଭୂଖଣ୍ଡରେ ଓଡ଼ିଶାର ନୌ-ବାଣିଜ୍ୟର ଗୌରବମୟ ସ୍ମୃତି ଏବେ ମଧ୍ୟ ଉଜ୍ଜୀବିତ ।

ଆଜିକୁ ଠିକ୍ ୭୦ ବର୍ଷ ପୂର୍ବେ ୧୯୩୬ ମସିହା ଅପ୍ରେଲ ପହିଲା ଦିନ ଓଡ଼ିଶା ଏକ ସ୍ୱତନ୍ତ୍ର ପ୍ରଦେଶ ରୂପେ ଜନ୍ମ ନେଇଥିଲା । ଏହା ଏକ ଐତିହାସିକ ଘଟଣା । ବହୁ ବାଧାବିଘ୍ନ ସତ୍ତ୍ୱେ ମହାନ୍ ଓଡ଼ିଆ ଜାତିପ୍ରେମୀ ଉତ୍କଳଗୌରବ ମଧୁସୂଦନ ଦାସ, ଉତ୍କଳମଣି ଗୋପବନ୍ଧୁ ଦାସ, ପାରଳା ମହାରାଜା କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବ, ମୟୂରଭଞ୍ଜ ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜଦେଓ, ପଣ୍ଡିତ ନୀଳକଣ୍ଠ ଦାସ, ଡଃ ହରେକୃଷ୍ଣ ମହତାବ, ବ୍ୟାସକବି ଫକୀର ମୋହନ ସେନାପତି, ଗଙ୍ଗାଧର ମେହେର ଓ ଗୋଦାବରୀଶ ମିଶ୍ରଙ୍କ ସମେତ ଅନେକ ବରପୁତ୍ରମାନଙ୍କ ଅକ୍ଲାନ୍ତ ଏବଂ ନିଷ୍ଠାପର ଉଦ୍ୟମ ଫଳରେ ଓଡ଼ିଆ ଭାଷାଭାଷୀ ଅଞ୍ଚଳଗୁଡ଼ିକୁ ଏକତ୍ରୀକରଣ କରିବାର ସ୍ୱପ୍ନ ଏହି ଦିନରେ ବାସ୍ତବତାରେ ରୂପାୟିତ ହୋଇଥିଲା । ଏହାଥିଲା ଆମମାନଙ୍କ ପାଇଁ ଏକ ଚିରସ୍ମରଣୀୟ ଏବଂ ପବିତ୍ର ଦିବସ । ଯେଉଁ ମହାନ ଦେଶଭକ୍ତମାନଙ୍କ ଉତ୍ସର୍ଗୀକୃତ ଉଦ୍ୟମ ଫଳରେ ଓଡ଼ିଶାକୁ ଏକ ସ୍ୱତନ୍ତ୍ର ପ୍ରଦେଶ ରୂପେ ଗଠନ କରିବା ସମ୍ଭବପର ହୋଇପାରିଛି, ସେହି ସମସ୍ତ ଜାତିପ୍ରେମୀମାନଙ୍କ ପ୍ରତି ମୋର ଗଭୀର ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛି । ଆମର ପୂର୍ବଜମାନେ ଆମ ପାଇଁ ପ୍ରସ୍ତର ବୁକୁରେ ଅମର କବିତାମାନ ରଚନା କରିଯାଇଛନ୍ତି । ଓଡ଼ିଶାର କଳା, ସଂସ୍କୃତି, ନୃତ୍ୟ, ସଙ୍ଗୀତ ଓ ଭାସ୍କର୍ଯ୍ୟର ଏକ ସ୍ୱାତନ୍ତ୍ର୍ୟତା ରହିଛି । ଏହି ଭୂମିର ପରମ ଆରାଧ୍ୟ ଦେବତା ଜଗତରନାଥ ପ୍ରଭୁ ଶ୍ରୀଜଗନ୍ନାଥ ହେଉଛନ୍ତି ସର୍ବଧର୍ମ ସମନ୍ୱୟର ପ୍ରତୀକ । ଉତ୍କଳ ବା ଓଡ଼ିଶା ହେଉଛି ଶୌର୍ଯ୍ୟଭୂମି ଏବଂ ଉତ୍କୃଷ୍ଟ କଳାର ଭୂମି । ସୁବିସ୍ତୃତ ବେଳାଭୂମି, ଚିରସ୍ରୋତା ନଦନଦୀ, ମାଇଲ ମାଇଲ ବ୍ୟାପୀ ଜଙ୍ଗଲ ଓ ତା' ମଧ୍ୟରେ ରଙ୍ଗଭରା ଆଦିବାସୀ ପଲ୍ଲୀ, ଗିରିରାଜି, ଚିର ସବୁଜିମା ଭରା ପର୍ଯ୍ୟଟନସ୍ଥଳୀ ସବୁକିଛି ଭରି ରହିଛି ଆମର ଏହି ରାଜ୍ୟରେ । ବର୍ତ୍ତମାନ ଏହି ବିପୁଳ ପ୍ରାକୃତିକ

ସମ୍ପଦର ସୁବିନିଯୋଗ ନିମନ୍ତେ ଆମ ସମ୍ମୁଖରେ ଏକ ବିରାଟ ଆହ୍ୱାନ । ଏହି ବିରାଟ ଆହ୍ୱାନର ସମ୍ମୁଖୀନ ହୋଇ ରାଜ୍ୟର ଦ୍ରୁତ ପ୍ରଗତି, ବୈପ୍ଳବିକ ପରିବର୍ତ୍ତନ ଓ ସମୃଦ୍ଧି ପାଇଁ ନୂତନ ପନ୍ଥା ନିର୍ଦ୍ଧାରଣ ସହିତ ନିଷ୍ଠାପର ଓ ଉତ୍ସର୍ଗୀକୃତ ଉଦ୍ୟମ ଆରମ୍ଭ ହୋଇଛି ।

ଭାରତର ରାଜନୈତିକ ଏବଂ ଭୌଗୋଳିକ ମାନଚିତ୍ରରେ ଏକ ସ୍ୱତନ୍ତ୍ର ଆସନର ମର୍ଯ୍ୟାଦାଲାଭ କରି ସମୃଦ୍ଧି ପଥରେ ଦ୍ରୁତ ଗତିରେ ଆଗେଇ ଚାଲିଥିବା ଓଡ଼ିଶା ଓ ତା'ର ଅଧିବାସୀବୃନ୍ଦ ସେହି ବରପୁତ୍ରମାନଙ୍କର ସ୍ମୃତିଚାରଣ କରିବା ସଙ୍ଗେ ସଙ୍ଗେ ଅର୍ଥନୈତିକ, ସାଂସ୍କୃତିକ କ୍ଷେତ୍ରରେ ଅତୀତ ଉତ୍କଳର ମହାନ୍ ଗୌରବମୟ ପରମ୍ପରାକୁ ଅଧିକ ସମୃଦ୍ଧ କରିବା ପାଇଁ ଆଜି ଏହି ପବିତ୍ର ଦିବସରେ ଦୃଢ଼ ପ୍ରତିଜ୍ଞ ଓ ସଂକଳ୍ପବଦ୍ଧ ।

ଆଜିର ଏହି ପବିତ୍ର ଦିବସରେ ମୁଁ ପୁଣି ଥରେ ରାଜ୍ୟବାସୀ ଭାଇଭଉଣୀମାନଙ୍କୁ ନିବେଦନ କରୁଛି ଯେ ସମସ୍ତେ ଏକମନ ଏକପ୍ରାଣ ହୋଇ ପ୍ରାଚୀନ ଓଡ଼ିଶାର ଗର୍ବ ଓ ଗୌରବ ତଥା ସ୍ୱାଭିମାନ ଫେରାଇ ଆଣିବା ନିମନ୍ତେ ଶପଥ ନିଅନ୍ତୁ ଓ ଏକ ସମୃଦ୍ଧିଶାଳୀ ଉନ୍ନତ ଓଡ଼ିଶା ରାଜ୍ୟ ନିର୍ମାଣ ପାଇଁ ସଂକଳ୍ପବଦ୍ଧ ଭାବେ ଉଦ୍ୟମ ଅବ୍ୟାହତ ରଖନ୍ତୁ ।

**ବନ୍ଦେ ଉତ୍କଳ ଜନନୀ**

# ବନ୍ଦେ ଉତ୍କଳ ଜନନୀ



ବନ୍ଦେ ଉତ୍କଳ ଜନନୀ
ଚାରୁହାସମୟୀ ଚାରୁ ଭାଷମୟୀ, ଜନନୀ, ଜନନୀ, ଜନନୀ ।

ପୂତ-ପୟୋଧି-ବିଧୌତ-ଶରୀରା,
ତାଳତମାଳ-ସୁଶୋଭିତ-ତୀରା,
ଶୁଭ୍ରତଟିନୀକୂଳ-ଶୀକର-ସମୀରା
ଜନନୀ, ଜନନୀ, ଜନନୀ ॥

ଘନ ବନଭୂମି ରାଜିତ ଅଙ୍ଗେ,
ନୀଳ ଭୂଧରମାଳା ସାଜେ ତରଙ୍ଗେ,
କଳ କଳ ମୁଖରିତ ଚାରୁ ବିହଙ୍ଗେ
ଜନନୀ, ଜନନୀ, ଜନନୀ ॥

ସୁନ୍ଦରଶାଳି-ସୁଶୋଭିତ-କ୍ଷେତ୍ରା,
ଜ୍ଞାନବିଜ୍ଞାନ-ପ୍ରଦର୍ଶିତ-ନେତ୍ରା,
ଯୋଗୀଋଷିଗଣ-ଉଟଜ-ପବିତ୍ରା
ଜନନୀ, ଜନନୀ, ଜନନୀ ॥

ସୁନ୍ଦର ମନ୍ଦିର ମଣ୍ଡିତ-ଦେଶା,
ଚାରୁକଳାବଳି-ଶୋଭିତ-ବେଶା,
ପୁଣ୍ୟ ତୀର୍ଥଚୟ-ପୂର୍ଣ୍ଣ-ପ୍ରଦେଶା
ଜନନୀ, ଜନନୀ, ଜନନୀ ॥

ଉତ୍କଳ ସୁରବର-ଦର୍ପିତ-ଗେହା,
ଅରିକୁଳ-ଶୋଣିତ-ଚର୍ଚ୍ଚିତ-ଦେହା,
ବିଶ୍ୱଭୂମଣ୍ଡଳ-କୃତବର-ସ୍ନେହା
ଜନନୀ, ଜନନୀ, ଜନନୀ ॥

କବିକୁଳମୌଳି ସୁନନ୍ଦନ-ବନ୍ଦ୍ୟା,
ଭୁବନବିଘୋଷିତ-କୀର୍ତ୍ତିଅନିନ୍ଦ୍ୟା,
ଧନ୍ୟେ, ପୁଣ୍ୟେ, ଚିରଶରଣ୍ୟେ
ଜନନୀ, ଜନନୀ, ଜନନୀ ॥

(କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ର)

